# ଆଲୋଚନାମାଳା

ଅଧ୍ୟାପକ:
ଡକ୍ଟର କାହ୍ନୁଚରଣ ମିଶ୍ର

# ଆଲୋଚନାମାଳା


ଲେଖକ

**ଡକ୍ଟର କାହ୍ନୁଚରଣ ମିଶ୍ର**

ଅବସରପ୍ରାପ୍ତ ମୁଖ୍ୟ ଅଧ୍ୟାପକ ସ୍ନାତକୋତ୍ତର ଓଡ଼ିଆ ବିଭାଗ

ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ





ଫ୍ରେଣ୍ଡସ୍ ପବ୍ଲିଶର୍ସ

ଆଲୋଚନାମାଳା   ଲେଖକ-ଅଧ୍ୟାପକ ଡକ୍ଟର କାହ୍ନୁଚରଣ ମିଶ୍ର, ପ୍ରକାଶକ ସହଦେବ ପ୍ରଧାନ, ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ, ବିନୋଦବିହାରୀ, କଟକ-୭୫୩୦୦୨, ପରିବର୍ଦ୍ଧିତ ତୃତୀୟ ସଂସ୍କରଣ ୧୯୮୩, ମୁଦ୍ରାକର – ଶିବଶଙ୍କର ପ୍ରେସ, ଦରଜୀ ସାହି, ଚାନ୍ଦନୀଚୌକ, କଟକ-୭୫୩୦୦୨

ALOCHANAMALA   Author Prof Dr. Kanhu Charan Mishra, Publisher : Sahadev Pradhan Friend's Publishers, Binodbehari, Cuttack 753002, Orissa (India), Enlarged Third Edition 1983, Printer : Sibasankar Press, Darajisahi Chandnichauk, Cuttack-2, Price Rs. 25-00

## ଉତ୍ସର୍ଗ ପତ୍ର

ପୂଜ୍ୟାସ୍ପଦ ମୋର ପିତୃଦେବ ସ୍ୱର୍ଗତ ପଣ୍ଡିତ ଶ୍ରୀ ବଳରାମ ମିଶ୍ର କାବ୍ୟତୀର୍ଥଙ୍କ ପଦପଙ୍କଜ ଯୁଗଳରେ ଭକ୍ତିର ସହିତ ଅର୍ପଣ କରୁଅଛୁ ।

—କାହ୍ନୁଚରଣ ମିଶ୍ର

## ନିଜ କଥା

ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ କି ରତ୍ନରାଜି ନିହିତ ଓ କି ମୂଲ୍ୟବାନ୍ ବିଭବ ରହିଛି, ତାହା ସାଧାରଣ ପାଠକଙ୍କୁ ପରିବେଷଣ କରିବାପାଇଁ ମୋର ବହୁଦିନରୁ ବାସନା ଥିଲା । ସେହି ବାସନାର ବଶବର୍ତ୍ତୀ ହୋଇ ମୁଁ ଆଲୋଚନାମୂଳକ କେତେକ ପ୍ରବନ୍ଧ ଲେଖିଥିଲି ଓ ସେଗୁଡ଼ିକ ବହୁ ପୂର୍ବେ ବୀଣା, ଶଙ୍ଖ, ଚତୁରଙ୍ଗ, ସତ୍ୟବାଦୀ ଓ ଝଙ୍କାର ପ୍ରଭୃତି ସାହିତ୍ୟପତ୍ରିକାରେ ଏବଂ 'ସମାଜ'ର ଗତ ଗୋପବନ୍ଧୁ ଶ୍ରାଦ୍ଧ ସଂଖ୍ୟାରେ ପ୍ରକାଶିତ ହୋଇଥିଲା । ପ୍ରାଚୀନ ଓଡ଼ିଆ ସାହିତ୍ୟର ସ୍ୱରୂପ ଓ ତାହାର ରସମୂଲ୍ୟ ନେଇ ଯେ କେତେଜଣ ଉଚ୍ଚକୋଟୀର ପଣ୍ଡିତ, ଭାବୁକ, ଗବେଷକ ଓ ସମାଲୋଚକ ନାନା ମତ ପୋଷଣ କରି ସେମାନଙ୍କ ଚିନ୍ତାଧାରାକୁ ରୂପାୟିତ କରିଅଛନ୍ତି, ସ୍ୱର୍ଗତଃ ପଣ୍ଡିତ ଗୋପୀନାଥ ନନ୍ଦ, ଶ୍ୟାମସୁନ୍ଦର ରାଜଗୁରୁ, ପଣ୍ଡିତ ମୃତ୍ୟୁଞ୍ଜୟ ରଥ, କୁଳମଣି ଦାଶ, ପଣ୍ଡିତ କରୁଣାକର କର ପ୍ରମୁଖ ସୁସାହିତ୍ୟିକଗଣ ସେମାନଙ୍କ ମଧ୍ୟରୁ ଅନ୍ୟତମ । ପୁନଶ୍ଚ ଆଧୁନିକଯୁଗରେ ଯେଉଁ ବିଶିଷ୍ଟ ସାହିତ୍ୟିକମାନେ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟ ସମ୍ବନ୍ଧରେ ଆଲୋଚନା କରୁଅଛନ୍ତି, ସେମାନଙ୍କ ମଧ୍ୟରୁ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା, ৺ ପ୍ରହ୍ଲାଦ ପ୍ରଧାନ, ৺ ଜୟକୃଷ୍ଣ ମିଶ୍ର, ନଟବର ସାମନ୍ତରାୟ, ସ୍ୱର୍ଗତ ଗଗନବିହାରୀ ମହାନ୍ତି ଓ ଜାନକୀବଲ୍ଲଭ ମହାନ୍ତି ପ୍ରମୁଖଙ୍କ ନାମ ଉଲ୍ଲେଖଯୋଗ୍ୟ । ଉପରୋକ୍ତ ଲେଖକମାନଙ୍କର ଆଲୋଚନାଧାରାକୁ ମୁଁ ବିସ୍ତୃତରେ ଆଣି ସଂକ୍ଷିପ୍ତ ଭାବରେ ମୋର ମତାମତ ପ୍ରଦାନ କରିଛି । ଅଧିକନ୍ତୁ ବୈଷ୍ଣବ-ଧର୍ମ ସାହିତ୍ୟ ଓ ବୈଷ୍ଣବ କବିମାନଙ୍କ ସମ୍ବନ୍ଧରେ ଆଲୋଚନା କଲାବେଳେ ମୁଁ ପ୍ରାଚୀନ କବି କୃଷ୍ଣଦାସ କବିରାଜଙ୍କ କୃତ ଶ୍ରୀ ଚୈତନ୍ୟଚରିତାମୃତର ମଧ୍ୟଲୀଳା ଓ ଅନ୍ୟାନ୍ୟ ଗ୍ରନ୍ଥରୁ ବହୁ ବିଷୟ ଗ୍ରହଣ କରିଛି । ମୋର ଆଶା, ସୁଧୀ ପାଠକବୃନ୍ଦ ଶ୍ରଦ୍ଧା'ର ସହିତ ମୋର ପ୍ରବନ୍ଧଗୁଡ଼ିକୁ ପାଠ କଲେ । ମୋର ଶ୍ରମ ସାର୍ଥକ ହେବ । ଗଭୀର ତତ୍ତ୍ୱସମ୍ବଳିତ ବିଷୟକୁ ଆଲୋଚନା କଲାବେଳେ ମୋ ମନରେ ଯେଉଁ ସନ୍ଦେହ ଜାତ ହୋଇଥିଲା, ସେଗୁଡ଼ିକର ଦୂରୀକରଣରେ ମୋର ପୂଜ୍ୟ ପଣ୍ଡିତପ୍ରବର ସ୍ୱର୍ଗତ ଆର୍ତ୍ତବଲ୍ଲଭ ମହାନ୍ତି ଓ ପ୍ରଧାନାଚାର୍ଯ୍ୟ ପଣ୍ଡିତ ଅନନ୍ତ ମିଶ୍ର ଯଥେଷ୍ଟ ଆଲୋକପାତ କରିଅଛନ୍ତି । ଏମାନଙ୍କ ନିକଟରେ ମୁଁ କୃତଜ୍ଞ । ସର୍ବୋପରି ମୋର ଅନ୍ତରଙ୍ଗ ବନ୍ଧୁ ଗବେଷକ ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ଓ ମୋର ପିଉସା ପଣ୍ଡିତ ଦାଶରଥି ଷଡ଼ଙ୍ଗୀ ଆଲୋଚନାମାଳାର ସଙ୍କଳନରେ ଓ ସଂଶୋଧନ କାର୍ଯ୍ୟରେ ଯଥାକ୍ରମେ ସେମାନଙ୍କର ଅମୂଲ୍ୟ ସମୟ ବ୍ୟୟ କରିଥିବାରୁ ମୁଁ ସେମାନଙ୍କ ନିକଟରେ ଚିରକୃତଜ୍ଞ ।

---

# ଟିପ୍ପଣୀ

ଗୌଡ଼ୀୟ ବୈଷ୍ଣବ ଧର୍ମ ସାହିତ୍ୟ ଓ ସହଜିଆ ତତ୍ତ୍ୱ ପଞ୍ଚସଖା ପ୍ରବନ୍ଧରେ ଥିବା **ଜଗତ**, ଶୂନ୍ୟ ଓ ପ୍ରକୃତି ଓ ଅବଧୂତାଂ ରୂପ ଦାର୍ଶନିକ ଶବ୍ଦର କେତେକ ଟିପ୍ପଣୀ ।

୧ । **ଜଗତ**—ସମଗ୍ର ପୃଥିବୀ ତଥା ଚତୁର୍ଦ୍ଦଶ ବ୍ରହ୍ମାଣ୍ଡକୁ ବୁଝାଏ । କିନ୍ତୁ ଏଠାରେ ପୃଥିବୀକୁ ଜଗତ **ଅର୍ଥରେ** ନିଆଯାଇଛି ।

୨ । ଶୂନ୍ୟ—ସାଂଖ୍ୟ ଦର୍ଶନରେ ପ୍ରକୃତିକୁ ସତ୍ ବୋଲି ସ୍ୱୀକାର କରାଯାଇଛି । ଏହି ପ୍ରକୃତିକୁ କେହି କେହି ଶୂନ୍ୟବୋଲି କହିଛନ୍ତି । ଏଥିରେ ମତଦ୍ୱୈଧ ଅଛି । ଅଦ୍ୱୈତବାଦର ଏହି ପ୍ରକୃତି ବା ମହାଶୂନ୍ୟ ଅବିଦ୍ୟାପ୍ରସୂତ । ଦ୍ୱୈତବାଦରେ ଏହା ସତ୍ ଓ ବ୍ରହ୍ମର ଏକାନ୍ତ ଅଧୀନ ।

ବେଦାନ୍ତର ଶୂନ୍ୟ ନାହିଁ ବୋଲି କେତେକ ଦାର୍ଶନିକଙ୍କ ମତ, କିନ୍ତୁ ବେଦାନ୍ତର ଅପ୍ରାକୃତ ଆକାଶ ବା ପ୍ରପଞ୍ଚ ପ୍ରକୃତି ଆକାଶକୁ କେହି କେହି ମହାଶୂନ୍ୟ ବୋଲି କହନ୍ତି ।

୩ । ପ୍ରକୃତି—ଅଦ୍ୱୈତ ବେଦାନ୍ତ ମତରେ ପ୍ରକୃତି ମିଥ୍ୟା (କଳ୍ପିତ), ଦ୍ୱୈତ ବେଦାନ୍ତ ମତରେ ପ୍ରକୃତି ସତ୍ ଓ ଈଶ୍ୱରାଧୀନ । ସାଂଖ୍ୟ ମତରେ ପ୍ରକୃତି ସ୍ୱାଧୀନ ଓ ଅଜ (ନିତ୍ୟ) ସାଂଖ୍ୟ ବା ବେଦାନ୍ତର ପ୍ରକୃତି ସ୍ୱାଧୀନ ଓ ସ୍ୱତନ୍ତ୍ର, ତାହା ଈଶ୍ୱରାଧୀନ ନୁହେଁ । ପ୍ରକୃତି ଅବ୍ୟକ୍ତ ବୋଲି କେହି କେହି ବୌଦ୍ଧ ଶୂନ୍ୟ ସାଂଖ୍ୟରେ ଏହାର ସାମ୍ୟ କଳ୍ପନା କରିଅଛନ୍ତି ।

୪ । ଅବଧୂତାଂ—ଅବ୍ରହ୍ମଜ୍ଞ ବା ମୁମୁକ୍ଷୁ ବ୍ୟକ୍ତି— ସାଧାରଣ **ଅର୍ଥରେ** ଜନସାଧାରଣ ବା ମୂର୍ଖ ବ୍ୟକ୍ତିଙ୍କ ମଧ୍ୟ ଏହା ଉଦ୍ଦିଷ୍ଟ ବୋଲି କେହି କେହି ଅନୁମାନ କରନ୍ତି ।

———

# ସୂଚୀ

ପ୍ରଥମ ଖଣ୍ଡ

# ଧର୍ମ ଓ ଦର୍ଶନ

- ବୌଦ୍ଧ ଧର୍ମ ଓ ଦର୍ଶନ
- ଗୌଡ଼ୀୟ ବୈଷ୍ଣବ ଧର୍ମ ଓ ସାହିତ୍ୟ
- ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଆଗମର ପ୍ରଭାବ
- ସହଜିଆ ତନ୍ତ୍ର ଓ ପଞ୍ଚସଖା
- ଭକ୍ତି ସାହିତ୍ୟ

# ବୌଦ୍ଧଧର୍ମ ଓ ଦର୍ଶନ

ଅକ୍ଲାନ୍ତ ପରିଶ୍ରମ, ଅବିଚଳିତ ମନୋଯୋଗ ଓ ଅବିରାମ ଚେଷ୍ଟା ଏବଂ ସାଧନା ପରେ ବୈଶାଖର ସେହି ଚିରସ୍ମରଣୀୟ ପୂର୍ଣ୍ଣିମା ରାତ୍ରିରେ ଶାକ୍ୟ ରାଜପୁତ୍ର ବୋଧିସତ୍ତ୍ୱ ସିଦ୍ଧାର୍ଥ ତାଙ୍କର ଅନନ୍ତ ଜ୍ଞାନାଲୋକ ଦ୍ୱାରା ନିଖିଳ ଭୁବନ ଆଲୋକିତ କରି ପରମ ବୋଧିପଦ ଲାଭ କରିଥିଲେ । ପରମ ବୋଧିପଦ ଲାଭ କରିବା ପରେ ବୁଦ୍ଧ ବୋଧିଦ୍ରୁମ ତଳେ ଅତୁଳନୀୟ ନିର୍ବାଣ ସୁଖଭୋଗ ଓ ତତ୍ପର ଅବସ୍ଥାରେ ସାତ ଦିନ ରହି ଦ୍ୱିତୀୟ ସପ୍ତାହରେ ସେ ଯେଉଁ ପରମ ସତ୍ୟ ଉପଲବ୍ଧି କଲେ, ତାହାର ପ୍ରତ୍ୟକ୍ଷ ପ୍ରତିରୂପ ବୋଧିଦ୍ରୁମ ଆଡ଼କୁ ସଶ୍ରଦ୍ଧ ଭାବରେ ଦୃଷ୍ଟିପାତ କରି ଦଣ୍ଡାୟମାନ ଅବସ୍ଥାରେ ରହିଥିଲେ । ତୃତୀୟ ସପ୍ତାହରେ ନିର୍ବାଣ ସୁଖ ଲାଭ କରି ଧ୍ୟାନସ୍ଥ ଅବସ୍ଥାରେ ଏକ ନିଭୃତ ସ୍ଥାନରେ ପଦଚାରଣ କରିବାକୁ ଲାଗିଲେ । ଚତୁର୍ଥ ସପ୍ତାହରେ ବୁଦ୍ଧ ଗୋଟିଏ ଅଶ୍ୱତ୍ଥ ତରୁ ତଳରେ ଉପବେଶନ କରୁଥିବା ସମୟରେ ଜଣେ ବ୍ରାହ୍ମଣ ବୁଦ୍ଧଙ୍କୁ ବ୍ରାହ୍ମଣର କର୍ତ୍ତବ୍ୟ ସମ୍ବନ୍ଧରେ କେତେକ ପ୍ରଶ୍ନ ପଚାରିଥିଲେ । ପଞ୍ଚମ ସପ୍ତାହରେ ମୈତ୍ରୀ ଓ ପବିତ୍ରତା ସହକାରେ ନିର୍ଜନ ଜୀବନ ଧନ୍ୟ କରି ସେ ମୁଚଳିନ୍ଦବୃକ୍ଷ ନିକଟରେ ରହିଲେ ଓ ଷଷ୍ଠ ସପ୍ତାହରେ ବୁଦ୍ଧ ରାଜାୟତନ ବୃକ୍ଷ ତଳେ ଜୀବନ ଅତିବାହିତ କରୁଥିବା ସମୟରେ ଓଡ଼ିଶାର ତପସ୍ସୁ ଓ ଭଲ୍ଲୁକ ନାମକ ଦୁଇ ଓଡ଼ିଆ ବଣିକ ତାଙ୍କ ସାକ୍ଷାତ କାମନା କରିଥିଲେ । ସପ୍ତମ ସପ୍ତାହରେ ଅଜପାଳ ବୃକ୍ଷ ସନ୍ନିଧାନରେ ଅଧିଷ୍ଠାନ କରୁଥିବାବେଳେ ବ୍ରହ୍ମାଙ୍କ ଅନୁରୋଧାନୁଯାୟୀ ସେ ବୌଦ୍ଧଧର୍ମ ପ୍ରଚାର କରିବାକୁ ସ୍ଥିର ସଂକଳ୍ପ ହେଲେ । ଏହି ପ୍ରଥମ ସପ୍ତାହରେ ହିଁ ବୁଦ୍ଧ ଆପେକ୍ଷିକ କାରଣବାଦର ତତ୍ତ୍ୱ ଆବିଷ୍କାର କଲେ । ଏହାର ଅନ୍ୟ ନାମ ହେଉଛି ପ୍ରତୀତ୍ୟ ସମୁତ୍ପାଦ । ଏହାକୁ ବୁଦ୍ଧ ଦ୍ୱାଦଶ ନିଦାନ ସାହାଯ୍ୟରେ ଅତି ସୁନ୍ଦର ଭାବରେ ବୁଝାଇବାକୁ ଚେଷ୍ଟା କରିଅଛନ୍ତି । ସେହି ଦ୍ୱାଦଶ ନିଦାନ ନିମ୍ନରୂପେ ଯଥା:—

ଅବିଦ୍ୟା, ସଂସ୍କାର, ବିଜ୍ଞାନ, ନାମରୂପ, ଷଡ଼ାୟତନ, ସ୍ପର୍ଶ, ବେଦନା, ତୃଷ୍ଣା, ଉପାଦାନ, ଭବ, ଜାତି, ଜରାମରଣ ।

୧ । ଅବିଦ୍ୟା—ଚତୁର୍ମହାସତ୍ୟ ( ଦୁଃଖମସ୍ତି , ଦୁଃଖକାରଣମସ୍ତି , ଦୁଃଖନିବୃତ୍ତିରସ୍ତି ଦୁଃଖନିରୋଧଗାମିନୀ ପ୍ରତିପଦସ୍ତି ) ଓ ସୌରଜଗତରେ ଚତୁର୍ବିଂଶତି ବିଧାନ ଏବଂ ତତ୍ତ୍ୱଜ୍ଞାନ ସମ୍ବନ୍ଧରେ ଅଜ୍ଞାନ ।

୨ । ସଂସ୍କାର— ସଦସତ୍ ସମ୍ବନ୍ଧରେ ଅବଧାରଣା ଏବଂ ବାକ୍ୟ, କର୍ମ ଓ ଚିନ୍ତା ପ୍ରସୂତ କର୍ମଫଳ ।

୩ । ବିଜ୍ଞାନ—ଚକ୍ଷୁ, ନାସିକା, କର୍ଣ୍ଣ, ଜିହ୍ୱା, ଶରୀର ଓ ମନର କାର୍ଯ୍ୟକାରୀ ସମ୍ୟକ୍ ଜ୍ଞାନ ।

୪ । ନାମରୂପ—ରୂପ ଶରୀର ସମ୍ବନ୍ଧୀୟ ଓ ନାମ ଇନ୍ଦ୍ରିୟାନୁଭୂତ ସଂଜ୍ଞା ସଂସ୍କାର ସମ୍ବନ୍ଧୀୟ ।

୫ । ଷଡ଼ାୟତନ—ଚକ୍ଷୁ, କର୍ଣ୍ଣ, ନାସିକା, ଜିହ୍ୱା, ସ୍ପର୍ଶ ଓ ମନ ।

୬ । ସ୍ପର୍ଶ—ପ୍ରତ୍ୟେକଟି ଇନ୍ଦ୍ରିୟ ସହିତ ଇନ୍ଦ୍ରିୟଗ୍ରାହ୍ୟ ପଦାର୍ଥର ଅର୍ଥାତ୍ ଶବ୍ଦ, ଗନ୍ଧ, ସ୍ୱାଦ, ସ୍ପର୍ଶ ଓ ଅନ୍ତର୍ମୁଖୀନ ସ୍ମୃତିର ସଂଯୋଗ ।

୭ । ବେଦନା—ଷଡ଼ାୟତନ ସହିତ ମିଳିତ ବିଜ୍ଞାନ ସମ୍ଭୂତ ଓ ସୁଖକର ଅସୁଖକର ଏବଂ ନାତିସୁଖ ଦୁଃଖହୀନ ଏହି ତ୍ରିବିଧ ଅନୁଭୂତି ।

୮ । ତୃଷ୍ଣା—କାମ, ଭବ ଓ ବିଭବ ଏହି ତିନୋଟି ଇନ୍ଦ୍ରିୟଂ ସୁଖହେତୁ ତ୍ରିବିଧ ବାସନା ।

୯ । ଉପାଦାନ— ଇନ୍ଦ୍ରିୟ ସୁଖରେ ଆସକ୍ତି, କୃଚ୍ଛ୍ର ସାଧନ ପ୍ରତି ଆସକ୍ତି, ଅନ୍ଧବିଶ୍ୱାସ ପ୍ରତି ଆସକ୍ତି, ଅହଂ ପ୍ରତି ଆସକ୍ତି ।

୧୦ । ଭବ—(୧) କାମ, (୨) ରୂପ (୩) ଅରୂପ ଜଗତର ନ୍ଶ୍ୱର ଭୂମି ।

କାମ—ସ୍ୱର୍ଗୀୟ ଓ ମାନବୀୟ ଇନ୍ଦ୍ରିୟ ସୁଖର ଜଗତ ।

ରୂପ— ସୂକ୍ଷ୍ମ ଧ୍ୟାନର ଦ୍ୱାରା ଲବ୍ଧ ଦେବଲୋକ ।

ଅରୂପ—ନିରାକାର ଜଗତ, ଯେଉଁଠି ଅନ୍ତର୍ଦୃଷ୍ଟି ଲବ୍ଧ ଉପଲବ୍ଧି ପ୍ରଚ୍ଛନ୍ନ ଅବସ୍ଥାରେ ବିଦ୍ୟମାନ ରହେ, ଏ ସକଳର ସମଷ୍ଟିକୁ ଭବ କୁହାଯାଏ ।

୧୧ । ଜାତି—ମୁକ୍ତ ଅବସ୍ଥାରେ ଜନ୍ମ ଯେଉଁଠି ବ୍ୟକ୍ତିତ୍ୱବାପନ୍ନ ଚୈତନ୍ୟ ଉତ୍ପନ୍ନ ହୁଏ ।

୧୨ । ଜରାମରଣ—ବିନାଶ, ବାର୍ଦ୍ଧକ୍ୟ ।

ବୁଦ୍ଧଙ୍କ ମତରେ ପରିଦୃଶ୍ୟମାନ ଜଗତର ଯାହା କିଛି ଘଟେ, ତାହା ସମସ୍ତ କାର୍ଯ୍ୟ-କାରଣ ଦ୍ୱାରା ସଂପୃକ୍ତ ଓ ସମ୍ବନ୍ଧିତ । କୌଣସି କାର୍ଯ୍ୟ ହେଲେ ବୁଝିବାକୁ ହେବ ତା ପୂର୍ବରୁ କିଛି ଘଟିଅଛି, ଯାହା ସକାଶେ ଏ କାର୍ଯ୍ୟ ଘଟୁଅଛି । ଉଦାହରଣ ସ୍ୱରୂପ କୁହାଯାଇପାରେ ଯେ—ଘଟର ଉତ୍ପତ୍ତି ପୂର୍ବରୁ ଆମକୁ ଦେଖିବାକୁ ହେବ ଯେ କେତେଗୁଡ଼ିଏ ଜିନିଷ ( ଯଥା—ମୃତ୍ତିକା, ଚକ୍ର, ଚୀବର ଇତ୍ୟାଦି )ର ସମାବେଶ ହୋଇଅଛି ଯାହା ଫଳରେ ଘଟର ଉତ୍ପତ୍ତି ।

"ଅସ୍ମିନ୍ ସତି ଇଦଂ ଭବତି" ଏହାର ଉପସ୍ଥିତିରେ ଏହାର ଉତ୍ପତ୍ତି, ଏହା ଥିଲେ ଏହା ହୁଏ । ଏହା ହିଁ ପ୍ରତୀତ୍ୟ ସମୁତ୍ପାଦର ମୂଳ କଥା । ବୁଦ୍ଧଙ୍କ ମତରେ ସମସ୍ତ ଅନିତ୍ୟ ଓ କ୍ଷଣିକ । ଯାହାକୁ ଆମେ ଆତ୍ମା ବୋଲି କହୁ ତାହା ମଧ୍ୟ ଅନିତ୍ୟ । ଯାହା ହେଉ, ବୁଦ୍ଧ ଏହି କାର୍ଯ୍ୟ-କାରଣବାଦ ( କାରଣ ବିଜ୍ଞାନ ପୂର୍ବକ କାର୍ଯ୍ୟର ଉତ୍ପତ୍ତି ) ଉପରେ ବିଶେଷ ଜୋର ଦେଇଛନ୍ତି । ତାଙ୍କ ମତରେ ଯେଉଁ ବ୍ୟକ୍ତି ପ୍ରତୀତ୍ୟ ସମୁତ୍ପାଦ ବୁଝିପାରେ, ସେ ବୁଦ୍ଧଙ୍କୁ ବୁଝିପାରେ । ଆମେ ଏହି ଜଗତରେ ନାନାବିଧ ଦୁଃଖ ଅନୁଭବ କରୁଅଛୁଁ । ଏହି ଦୁଃଖଗୁଡ଼ିକ ଆକସ୍ମିକ ନୁହେଁ, ଏହାର କାରଣ ଅଛି । ସେହି କାରଣର ନିବୃତ୍ତି ହେଲେ ଦୁଃଖର ନିବୃତ୍ତି ହେବ । ବୁଦ୍ଧଦେବ ମାନବ ଜୀବନର ପୁନଃ ପୁନଃ ଜନ୍ମ ଓ ଦୁଃଖଭୋଗ ଉପରୋକ୍ତ ପ୍ରତୀତ୍ୟ ସମୁତ୍ପାଦ ଦ୍ୱାରା ବିଶେଷ ଭାବରେ ବ୍ୟାଖ୍ୟାନ କରି-ଅଛନ୍ତି । ଆମ୍ଭମାନଙ୍କର ବର୍ତ୍ତମାନ ଜନ୍ମର କାରଣ ପୂର୍ବଜନ୍ମ ଏବଂ ବର୍ତ୍ତମାନ ଜନ୍ମର ଫଳ ଭବିଷ୍ୟତ ଜନ୍ମ । ଉପରୋକ୍ତ ଦ୍ୱାଦଶ ନିଦାନକୁ ଅତୀତ, ବର୍ତ୍ତମାନ, ଭବିଷ୍ୟତ ଦୃଷ୍ଟିରେ ବ୍ୟାଖ୍ୟା କରିଯାଇପାରେ । ଆମ୍ଭମାନଙ୍କ ପୂର୍ବଜନ୍ମର ଅବିଦ୍ୟା ( ବିପରୀତ ବୁଦ୍ଧି ) ବା ଅଜ୍ଞାନ କେତେଗୁଡ଼ିଏ ସଂସ୍କାର ସୃଷ୍ଟି କରିଥିଲି, ଯାହା ଫଳରେ ଆମ୍ଭମାନଙ୍କର ମାତୃଗର୍ଭରେ ପ୍ରଥମ ଜ୍ଞାନର ଉତ୍ପତ୍ତି ହୁଏ । ସେହି ଜ୍ଞାନକୁ ବୁଦ୍ଧ ବିଜ୍ଞାନ ବୋଲି କହନ୍ତି । ସେହି ବିଜ୍ଞାନରୁ ନାମ ରୂପ ସୃଷ୍ଟି ହୁଏ । ନାମ କହିଲେ ମାନସିକ କ୍ରିୟା ବୁଝାଏ, ଅଥବା ନାମ କହିଲେ ନାମଧାରୀ ପଦାର୍ଥକୁ ବୁଝାଏ । ରୂପ କହିଲେ ଶରୀର ବୁଝାଏ । ପ୍ରଥମ ବିଜ୍ଞାନ ଗର୍ଭରେ ଉତ୍ପନ୍ନ ହେଲେ ସଙ୍ଗେ ସଙ୍ଗେ ନାମ ରୂପର ଉତ୍ପତ୍ତି ହୁଏ । ଏହି ନାମ ରୂପର ମନ ଓ ପାଞ୍ଚଟି ବାହ୍ୟ ଇନ୍ଦ୍ରିୟ ନେଇ ଷଡ଼ ଇନ୍ଦ୍ରିୟ ଉତ୍ପନ୍ନ ହୁଏ । ଏହି ଇନ୍ଦ୍ରିୟର ସ୍ପର୍ଶ ( ଏଠାରେ ସ୍ପର୍ଶ, ବିଷୟ ସହିତ ସ୍ପର୍ଶ ); ତେଣୁ ବିଷୟ ସହିତ ସ୍ପର୍ଶ ହେଲେ ସୁଖଦୁଃଖର ଅନୁଭୂତି ଆସେ । ଏହି ସୁଖଦୁଃଖର ଅନୁଭୂତି ହିଁ ବେଦନା ନାମରେ ନାମିତ । ବେଦନାରୁ ତୃଷ୍ଣା, ତୃଷ୍ଣାରୁ ଉପାଦାନ ବା ( ବିଷୟ ପ୍ରବୃତ୍ତି ) ଆସକ୍ତି, ଉପାଦାନରୁ ଭବ ଜନ୍ମକାରଣ ଧର୍ମାଧର୍ମ, ଭବରୁ (କର୍ମ ସଂସ୍କାରରୁ) ପୁନର୍ଜନ୍ମ ବା ଜାତି ( ପଞ୍ଚସ୍କନ୍ଧର ସଂଘ ) ଜାତିରୁ ଜରାମରଣ । ବୁଦ୍ଧଙ୍କ ମତାନୁଯାୟୀ ଦୁଃଖ ନିବୃତ୍ତି ପରମ ପୁରୁଷାର୍ଥ । ଜଗତରେ ଯାହା କିଛି ପରିଦୃଷ୍ଟ ହୁଏ, ତାହା ସମସ୍ତ ଦୁଃଖପୂର୍ଣ୍ଣ । "ଆବ୍ରହ୍ମ ସ୍ତମ୍ଭ" ପର୍ଯ୍ୟନ୍ତ ସମସ୍ତେ ଦୁଃଖ ଦ୍ୱାରା ପୀଡ଼ିତ । ଜଗତରେ ଏ ଦୁଃଖରୁ ମୁକ୍ତିଲାଭ କରିବାକୁ

ହେଲେ ଯେ ସାଧନା ଆବଶ୍ୟକ, ତାର ଉପାୟ ବୁଦ୍ଧଦେବ ନିର୍ଦ୍ଦେଶ କରିଦେଇ ଯାଇ-ଅଛନ୍ତି । ପୂର୍ବରୁ କୁହାଯାଇଛି ଯେ, ବୁଦ୍ଧ ଚାରୋଟି ଆର୍ଯ୍ୟସତ୍ୟ ଆବିଷ୍କାର କରିଥିଲେ ।

୧ । ଦୁଃଖର ଅସ୍ତିତ୍ୱ, ୨ । ଦୁଃଖର କାରଣ, ୩ । ଦୁଃଖର ନିବୃତ୍ତି, ୪ । ଦୁଃଖ ନିବୃତ୍ତିର ଉପାୟ ।

ଜଗତରେ ଯେ କେବଳ ଦୁଃଖ ଅଛି ତାହା ନୁହେଁ, ପରନ୍ତୁ ତାର ନିବୃତ୍ତି ବି ଅଛି । ଯେଉଁ କାରଣରୁ ଦୁଃଖର ଉତ୍ପତ୍ତି ହୁଏ, ସେହି କାରଣର ନାଶ ହେଲେ ଦୁଃଖ ନିବୃତ୍ତ ହେବ । ଏହା ହିଁ ବୁଦ୍ଧଙ୍କର ବକ୍ତବ୍ୟ । ତାଙ୍କ ମତରେ ଜଗତ ଅନିତ୍ୟ । ପ୍ରତିକ୍ଷଣରେ ତାର ପରିଣାମ ହେଉଛି, ଏହି ପରିଣାମ ସକାଶେ ସମସ୍ତ ଜିନିଷ ଦୁଃଖପୂର୍ଣ୍ଣ । ଜଗତରେ ଏପରି କିଛି ପଦାର୍ଥ ନାହିଁ, ଯାହା ଏହି ପରିଣାମରୁ ମୁକ୍ତ । ଯାହାକୁ ଲୋକେ ସାଧାରଣତଃ ଆତ୍ମା ବୋଲି ଜାଣନ୍ତି, ସେ ମଧ୍ୟ ବୁଦ୍ଧଙ୍କ ମତରେ କ୍ଷଣବିନାଶୀ । ଜଗତରେ ସ୍ଥାୟୀ ହୋଇ କୌଣସି ପଦାର୍ଥ ନାହିଁ । ଯାହା କିଛି ଜ୍ଞାନଗମ୍ୟ, ତାହା ସକଳ ପରିଣାମର ଅଧୀନ । ଜୀବ କୋଟି କୋଟି ଜନ୍ମଗ୍ରହଣ କରୁଛି ଓ ଦୁଃଖାନୁଭବ କରୁଛି । ଏହାର ମୂଳ କାରଣ ତୃଷ୍ଣା । ଆମ୍ଭେମାନେ ନାନାବିଧ ବାସନାଯୁକ୍ତ । ଏହି ବାସନାରୁ ଆମ୍ଭମାନଙ୍କର ତୃଷ୍ଣା ଜନ୍ମଲଭ କରେ । ଏହି ବାସନାର ତୃପ୍ତି ସକାଶେ ଜୀବକୁ ପୁନଃ ପୁନଃ ଜନ୍ମଗ୍ରହଣ କରିବାକୁ ପଡ଼େ । ବାସନାର ମୂଳ କାରଣ ଅବିଦ୍ୟା । ଅବିଦ୍ୟାଦ୍ୱାରା ଆମ୍ଭମାନଙ୍କର ଜ୍ଞାନ ଆଚ୍ଛନ୍ନ ଥାଏ ଏବଂ ସକଳ ବସ୍ତୁର ଯଥାର୍ଥ ସ୍ୱରୂପ ଉପଲବ୍ଧି ହୁଏ ନାହିଁ । ତେଣୁ ମିଥ୍ୟା ଦୃଷ୍ଟି ହିଁ ଅବିଦ୍ୟାର ମୂଳ କାରଣ । ଏହି ମିଥ୍ୟାଦୃଷ୍ଟି ଦୂର କରି ସମ୍ୟକ୍ ଦୃଷ୍ଟି ଲଭ କରିବାକୁ ହେବ । ସମ୍ୟକ୍ ଦୃଷ୍ଟି ଲଭ ହେଲେ ମିଥ୍ୟାଦୃଷ୍ଟି ଦୂର ହେବ । ଅବିଦ୍ୟା ସମୂଳେ ଧ୍ୱଂସପ୍ରାପ୍ତ ହେବ । ଅବିଦ୍ୟା ଧ୍ୱଂସପ୍ରାପ୍ତ ହେଲେ ଆଉ ବାସନା ରହିବ ନାହିଁ ଏବଂ ବାସନା ନ ହେଲେ ଆଉ ଜନ୍ମ ଗ୍ରହଣ କରିବାକୁ ପଡ଼ିବ ନାହିଁ । ଜନ୍ମଗ୍ରହଣ ନ କଲେ ଆଉ ଦୁଃଖଭୋଗ କରିବାକୁ ପଡ଼ିବ ନାହିଁ । ଏହି ପୁନର୍ଜନ୍ମ ନିରୋଧ ହିଁ ଦୁଃଖ ନିବୃତ୍ତି । ଏହାର ଅପର ନାମ ନିର୍ବାଣ ।

ବୁଦ୍ଧଦେବ କହିଛନ୍ତି, ଏହି ନିର୍ବାଣ ହିଁ ପରମ ଶାନ୍ତ ଅବସ୍ଥା । ଏହି ନିର୍ବାଣ ଲଭ କରିବାକୁ ହେବ । ଏହା ହିଁ ବୁଦ୍ଧଙ୍କର ସାର କଥା, ମାନବଜାତିକୁ ଶ୍ରେଷ୍ଠ ଉପଦେଶ । ବୁଦ୍ଧଦେବ ଏହିପରି ନିର୍ବାଣ ଲଭ କରିଥିଲେ । ଏହି ନିର୍ବାଣ ଲଭ କରିବା ସକାଶେ ବୁଦ୍ଧଦେବ ଆଠୋଟି ପନ୍ଥା ନିର୍ଦ୍ଦେଶ କରିଦେଇ ଯାଇଅଛନ୍ତି । ତାହା ହିଁ ପ୍ରଧାନତଃ ଅଷ୍ଟାଙ୍ଗ ମାର୍ଗ ରୂପେ ଗୃହୀତବା କଥିତ ।

ଏହି ଅଷ୍ଟାଙ୍ଗ ମାର୍ଗ ନିମ୍ନ ପ୍ରକାରର; ଯଥା— (୧) ସମ୍ୟକ୍‌ବାକ୍ (୨) ସମ୍ୟକ୍ ଦୃଷ୍ଟି, (୩) ସମ୍ୟକ୍ ସଂକଳ୍ପ, (୪) ସମ୍ୟକ୍ ଆଜୀବ, (୫) ସମ୍ୟକ୍ କର୍ମାନ୍ତ, (୬) ସମ୍ୟକ୍ ବ୍ୟାୟାମ, (୭) ସମ୍ୟକ୍ ସ୍ମୃତି, (୮) ସମ୍ୟକ୍ ସମାଧି ।

ଆମ୍ଭମାନଙ୍କର ବାକ୍ୟଦ୍ୱାରା ନାନାବିଧ ପାପ ଉତ୍ପନ୍ନ ହୁଏ । ଏହି ନିକାଶେ ପ୍ରାରମ୍ଭରୁ ବାକ୍ୟର ପରିଶୁଦ୍ଧି ହେବା ସର୍ବାଦୌ ଦରକାର । ବାକ୍ ପରିଶୁଦ୍ଧି କରିବାକୁ ହେଲେ ମିଥ୍ୟାଭାଷଣ, ପିଶୁନ ବାକ୍ୟ, ପରନିନ୍ଦା, କଠୋର ବାକ୍ୟ ଇତ୍ୟାଦିରୁ ନିବୃତ୍ତ ହେବାକୁ ହେବ । ବାକ୍ୟ ପରିଶୁଦ୍ଧି କରିବାକୁ ହେଲେ ସତ୍ୟମିଥ୍ୟାର ଜ୍ଞାନ ଥିବା ପ୍ରୟୋଜନ । ସମ୍ୟକ୍ ଦୃଷ୍ଟି ଥିବା ଉଚିତ ଓ ସମ୍ୟକ ଜ୍ଞାନ ଦରକାର । ଜଗତର ମୂଳ ସତ୍ୟ ଏବଂ ଜୀବନର ଆଦର୍ଶ ସମ୍ବନ୍ଧରେ ଜ୍ଞାନ ଥିଲେ ଆଉ ମିଥ୍ୟା ବାକ୍ୟ କହିବାର ପ୍ରବୃତ୍ତି ରହିବ ନାହିଁ । ଏହି ନିକାଶେ ବୁଦ୍ଧଙ୍କର ଉପଦେଶାନୁଯାୟୀ ଜଗତର ଅନିତ୍ୟତା ସମ୍ବନ୍ଧରେ ପୁନଃ ପୁନଃ ଧ୍ୟାନ କରିବାକୁ ହେବ । କେବଳ ଜ୍ଞାନ ଥିଲେ ବି ଚଳିବ ନାହିଁ । ଶ୍ରେୟଃ ଲାଭର ସଂକଳ୍ପ ଏବଂ ଅଶୁଭ କର୍ମର ନାଶ ସଂକଳ୍ପ କରିବାକୁ ହେବ । ଏହି ନିକାଶେ ସମ୍ୟକ୍ ସଂକଳ୍ପର ପ୍ରୟୋଜନ । ଜୀବିକା ଦ୍ୱାରା ନାନାପ୍ରକାର ପାପ ଆମ୍ଭମାନଙ୍କର ଉତ୍ପନ୍ନ ହୁଏ । ଏଥିଲାଗି ଏପରି ଜୀବିକା ଗ୍ରହଣ କରିବାକୁ ହେବ, ଯେଉଁ ଜୀବିକାରେ ଅଧର୍ମର ଉତ୍ପତ୍ତି ନ ହୁଏ; ଏହାକୁ ସମ୍ୟକ୍ ଆଜୀବ କୁହାଯାଏ । ଆମ୍ଭମାନଙ୍କର ଦୈନନ୍ଦିନ କର୍ମ ବିଷୟରେ ମଧ୍ୟ ସଜାଗ ହେବାକୁ ପଡ଼ିବ । ଏପରି କର୍ମ କରିବା ଉଚିତ, ଯାହାଦ୍ୱାରା ଅଶୁଭର ନାଶ ଏବଂ ଶୁଭର ଉତ୍ପତ୍ତି ହେବ । ଏହା ହିଁ ସମ୍ୟକ୍ କର୍ମାନ୍ତ ନାମରେ ଖ୍ୟାତ । ଆମ୍ଭମାନଙ୍କର ଜ୍ଞାନ ଥିଲେ ମଧ୍ୟ ଆମ୍ଭେମାନେ ସର୍ବଦା ସେହି ଜ୍ଞାନ ସମ୍ବନ୍ଧରେ ଜାଗରୂକ ନ ଥିବାରୁ ଆମ୍ଭମାନଙ୍କର ପାପ କରିବାର ପ୍ରବୃତ୍ତି ଜାଗିଉଠେ । ସୁତରାଂ ଆମ୍ଭମାନଙ୍କର ସର୍ବଦା ଏହି ନିକାଶେ ସ୍ମୃତିର ଅଭ୍ୟାସ କରିବାକୁ ପଡ଼ିବ । ବୌଦ୍ଧଧର୍ମରେ ଛଅଟି ସ୍ମୃତିର ପରିଚୟ ମିଳେ । ସେହି ସ୍ମୃତି ଛଅଟି ଅନୁଧ୍ୟାନ କଲେ ଆମ୍ଭମାନଙ୍କର ଜ୍ଞାନ ସମ୍ୟକ୍ ପରିପୁଷ୍ଟ ହେବ । ସେ ହେଉଛି ବୁଦ୍ଧାନୁସ୍ମୃତି, ସଂଘାନୁସ୍ମୃତି, ଧର୍ମାନୁସ୍ମୃତି, ଆନାପାନୁସ୍ମୃତି, ଦେବାନୁସ୍ମୃତି ଓ ମରଣାନୁସ୍ମୃତି ।

ଏହି ଛଅଟି ସ୍ମୃତିର ଅନୁଧ୍ୟାନ କରିବାକୁ ହେବ । ବୁଦ୍ଧଙ୍କର ଶେଷ କଥା ହେଉଛି ଧ୍ୟାନ । ଧ୍ୟାନ ଦ୍ୱାରା ହିଁ ଚିତ୍ତର ପରିଶୁଦ୍ଧି ହୁଏ । କିପରି ଧ୍ୟାନ କରିବାକୁ ହେବ, ବୁଦ୍ଧଦେବ ସମ୍ୟକ୍ ଭାବରେ ଉପଦେଶ ଦେଇ ଯାଇଅଛନ୍ତି । ଉପରୋକ୍ତ ଅଷ୍ଟାଙ୍ଗ ମାର୍ଗକୁ ସେ ତିନି ଭାଗରେ ବିଭକ୍ତ କରିଅଛନ୍ତି । (୧) ଶୀଳ, (୨) ସମାଧି, (୩) ପ୍ରଜ୍ଞା । ପ୍ରଥମତଃ ଆମ୍ଭମାନଙ୍କୁ ଶୀଳ ବିଶୁଦ୍ଧି କରିବାକୁ ହେବ । ଶୀଳ ବିଶୁଦ୍ଧି କହିଲେ ଦଶଟି ଶୀଳ ବୁଝିବାକୁ ହେବ । ପାଞ୍ଚଟି ଗୃହସ୍ଥ ନିକାଶେ ଅଭିପ୍ରେତ, ମାତ୍ର ଦଶଟି ଭିକ୍ଷୁକ ପକ୍ଷରେ ପାଳନୀୟ ।

ସେହିଗୁଡ଼ିକ ନିମ୍ନ ପ୍ରକାର:—

୧ । ପାଣାତିପାତ ବିରମଣୀ — ପ୍ରାଣୀ ହତ୍ୟାରୁ ନିବୃତ୍ତି ।

୨ । ମୁସାବାଦ ବିରମଣୀ — ମିଥ୍ୟା କଥାରୁ ନିବୃତ୍ତି ।

୩ । କାମେଷୁ ମିଥ୍ୟାଚ୍ଚର ବରମଣି — ବ୍ରହ୍ମଚର୍ଯ୍ୟ ପାଳନ ।
୪ । ଅଦତ୍ତ ଦାନ ବରମଣି — ଯାହା ଦିଆଯାଇ ନାହିଁ, ତାହା ଗ୍ରହଣ କରିବ ନାହିଁ ।
୫ । ମଦ୍ୟପାନା ବରମଣି — ମଦ୍ୟପାନରୁ ବିରତ ହେବ ।

ଏହି ପାଞ୍ଚଟି ଗୃହସ୍ଥ ପକ୍ଷରେ ବର୍ଜନୀୟ । ମାତ୍ର ଭିକ୍ଷୁକ ପକ୍ଷରେ ଏ ପାଞ୍ଚଟି ତ ପାଳନୀୟ, ଅଧିକନ୍ତୁ ମାଲ୍ୟଧାରଣ, ବୈକାଳ ଭୋଜନ, ଉଚ୍ଚାଙ୍ଗଶୟନ, ସ୍ୱର୍ଣ୍ଣାଦି ଗ୍ରହଣ ଇତ୍ୟାଦି ଭିକ୍ଷୁକ ପକ୍ଷରେ ଅବଶ୍ୟ ପାଳନୀୟ ।

ଏହି ଶୀଳ ସାଧନା କଲେ ଚିତ୍ତସମାଧି ପକ୍ଷରେ ଉପଯୁକ୍ତ ହେବ । ସମାଧି ସକାଶେ ଆମ୍ଭମାନଙ୍କୁ ସମ୍ୟକ୍ ସଂକଳ୍ପ କରି ସେହି ଇଚ୍ଛାକୁ କାର୍ଯ୍ୟରେ ପରିଣତ କରିବାକୁ ପଡ଼ିବ । ବୁଦ୍ଧ ଚାରୋଟି ଧ୍ୟାନର ପରିଚୟ ଦେଇଯାଇଅଛନ୍ତି । ପ୍ରଥମ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥ । ଏହି ଚତୁର୍ଥ ଧ୍ୟାନର ଅବସ୍ଥା ଲାଭ କରିବାକୁ ହେଲେ ଚିତ୍ତ କ୍ଲେଶାଦିରୁ ନିବୃତ୍ତ ହୁଏ । ତେତେବେଳେ ପ୍ରଜ୍ଞା ଉତ୍ପନ୍ନ ହୁଏ । ପ୍ରଜ୍ଞା ଉତ୍ପନ୍ନ ହେଲେ ଜଗତର ଅନିତ୍ୟତା ଏବଂ ଚାରୋଟି ଆର୍ଯ୍ୟସତ୍ୟ ସମ୍ବନ୍ଧରେ ଜ୍ଞାନଲାଭ ହୁଏ । ଆଉ ଚିତ୍ତ ଅବିଦ୍ୟାର ବଶବର୍ତ୍ତୀ ହୁଏ ନା । ଅବିଦ୍ୟାର ବଶବର୍ତ୍ତୀ ନ ହେଲେ ଚିତ୍ତ ମୁକ୍ତ ହୁଏ । ଏହି ଚିତ୍ତମୁକ୍ତି ହିଁ ବୁଦ୍ଧଙ୍କର ଆଦର୍ଶ ଅବସ୍ଥା । ଏହା ହିଁ ନିର୍ବାଣ । ଯେ ନିର୍ବାଣ ଲାଭ କରେ, ସେ ଅର୍ହତ । ପୁଣି ଏହି ଅର୍ହତର ନାନା ଅବସ୍ଥାଭେଦ ଅଛି । ଯଥା:—ସ୍ରୋତାପନ୍ନ, ସକୃଦାଗାମୀ, ଅନାଗାମୀ, ଶେଷରେ ଅର୍ହତ ।

ଏପରି ସାଧନ କରିବାକୁ ହେଲେ କଲ୍ୟାଣ ମିତ୍ରର ପ୍ରୟୋଜନ । ଏହି କଲ୍ୟାଣ ମିତ୍ର ଗୁରୁବାଦସ୍ୱରୂପ । ଗୁରୁର ପ୍ରୟୋଜନ ଅତ୍ୟାବଶ୍ୟକ ।

### ବୁଦ୍ଧଙ୍କର ମନସ୍ତତ୍ତ୍ୱ—

ବୁଦ୍ଧଙ୍କ ମତରେ ଚିତ୍ତ ବା ବିଜ୍ଞାନ କ୍ଷଣିକ । ସେ ନିତ୍ୟ ବିଜ୍ଞାନ ସ୍ୱୀକାର କରନ୍ତି ନାହିଁ । ପ୍ରତ୍ୟେକ କ୍ଷଣେ କ୍ଷଣେ ଜ୍ଞାନ ଉତ୍ପନ୍ନ ହୁଏ । ଜ୍ଞାନ ହେଲେ ଇନ୍ଦ୍ରିୟର ବିଷୟ ସଙ୍ଗରେ ସଂସ୍ପର୍ଶ ଦରକାର । ବୁଦ୍ଧଙ୍କ ମତରେ ଛ'ଟି ଇନ୍ଦ୍ରିୟ ଅଛି । ତନ୍ମଧ୍ୟରେ ମନ ଗୋଟିଏ ଇନ୍ଦ୍ରିୟ । ପ୍ରତ୍ୟେକ ଇନ୍ଦ୍ରିୟ ମନ ସଙ୍ଗରେ ମିଳିତ ହୋଇ ବିଷୟ ଗ୍ରହଣ କଲେ ଜ୍ଞାନ ଉତ୍ପନ୍ନ ହୁଏ, ଯେପରି ଦୁଇଟି କାଷ୍ଠ ଘର୍ଷଣ କଲେ ଅଗ୍ନି ଉତ୍ପନ୍ନ ହୁଏ । ପ୍ରତ୍ୟେକ ଇନ୍ଦ୍ରିୟ ନିର୍ଦ୍ଦିଷ୍ଟ ବସ୍ତୁକୁ ଗ୍ରହଣ କରେ । ଚକ୍ଷୁ ରୂପ, କର୍ଣ୍ଣ ଶବ୍ଦ, ଘ୍ରାଣ ଗନ୍ଧ, ଜିହ୍ୱା ରସ ଏବଂ ସ୍ପର୍ଶ ଦ୍ରଷ୍ଟବ୍ୟ ଓ ସ୍ପର୍ଶଯୋଗ୍ୟ ବିଷୟକୁ ଗ୍ରହଣ କରେ । କିନ୍ତୁ ମନ ପ୍ରତ୍ୟେକ ଇନ୍ଦ୍ରିୟ ସଙ୍ଗରେ କାର୍ଯ୍ୟ କରିପାରେ । ପ୍ରତ୍ୟେକ ଇନ୍ଦ୍ରିୟରୁ ଜାତ ଜ୍ଞାନ ,ମନ ସଂଯୋଗରେ ଉତ୍ପନ୍ନ ହୁଏ ଏବଂ ଏହି ଜ୍ଞାନ ମନଦ୍ୱାରା ଜ୍ଞାନ ହୁଏ । ପ୍ରାଚୀନ ବୌଦ୍ଧମାନେ

ମତରେ ଜ୍ଞାନ କ୍ଷଣିକ ହେଲେ ମଧ୍ୟ ତାର ଧାରାବାହିକ ସନ୍ତାନ କ ଭାବରେ ସମ୍ଭବ ହୁଏ, ତାହା ବ୍ୟାଖ୍ୟାତ ହୋଇ ନାହିଁ । କିନ୍ତୁ ନିକାୟ ଗ୍ରନ୍ଥରେ ଓ ବୁଦ୍ଧଘୋଷ ପ୍ରଭୃତିଙ୍କ ଲିଖିତ ଗ୍ରନ୍ଥରେ ଜ୍ଞାନଧାରାର ବିଶେଷ ବ୍ୟାଖ୍ୟାନ ମିଳେ । ଜ୍ଞାନ ଉତ୍ପନ୍ନ ହେଲେ ତାର କିଛି ଅଂଶ ସଂସ୍କାର ରୂପରେ ରହେ । ଏହି ସଂସ୍କାର ହିଁ ଜ୍ଞାନର ଧାରା ରକ୍ଷା କରି ଚାଲିଥାଏ । ଇନ୍ଦ୍ରିୟ କର୍ମ ନ କରିଲେ ମଧ୍ୟ ମନ ଇନ୍ଦ୍ରିୟ ସଂସ୍କାରକୁ ନେଇ ଜ୍ଞାନଧାରାକୁ ରକ୍ଷାକରେ । ଏହି ଜ୍ଞାନଧାରା ଯେ ପର୍ଯ୍ୟନ୍ତ ଥାଏ, ସେ ପର୍ଯ୍ୟନ୍ତ ଜନ୍ମାନ୍ତର ସମ୍ଭବ, ମାତ୍ର ଏହି ଜ୍ଞାନଧାରାର ବିଚ୍ଛେଦରେ ନିର୍ବାଣପ୍ରାପ୍ତ ହୁଏ । ଏହିପରି ଜ୍ଞାନକୁ "ଭବାଙ୍ଗ ଚିତ୍ତ" କୁହାଯାଏ । ଇଂରାଜିରେ ଯାହାକୁ Sub conscience ବା ଅବଚେତନ ବୋଲି କୁହାଯାଏ, ତାହା ଏହି ଭବାଙ୍ଗ ଚିତ୍ତସ୍ଥାନୀୟ । ଏହି ଭବାଙ୍ଗ ଚିତ୍ତ ମୃତ୍ୟୁକାଳରେ ଯେ ଅବସ୍ଥାକୁ ପ୍ରାପ୍ତ ହୁଏ, ତାହାର ଶେଷ ଅବସ୍ଥାର ନାମ ଚ୍ୟୁତି ବିଜ୍ଞାନ । ତତ୍ପରେ ପୁନର୍ବାର ଯେତେବେଳେ ଜନ୍ମଗ୍ରହଣ କରେ, ସେ ବିଜ୍ଞାନର ପ୍ରଥମ ଅବସ୍ଥାର ନାମ ପ୍ରତିସନ୍ଧି ବିଜ୍ଞାନ । ଏହି ପ୍ରତି-ସନ୍ଧିବିଜ୍ଞାନ ନେଇ ପୁନର୍ବାର ବିଜ୍ଞାନର ଧାରା ଉତ୍ପନ୍ନ ହୁଏ । ବୌଦ୍ଧ ମତରେ ସ୍ଥାୟୀ ଆତ୍ମା ନାହିଁ । ଏହି ବିଜ୍ଞାନର ଧାରାକୁ ସେ ଆତ୍ମା ବୋଲି କହନ୍ତି । ତାଙ୍କ ମତରେ ଆତ୍ମା ଗୋଟିଏ ସମୂହବାଚକ ଶବ୍ଦ ( Collective terms ) । ଏହି ଜ୍ଞାନ ବା ବିଜ୍ଞାନ ସନ୍ତାନଧାରା ଚାରୋଟି ସ୍ତରରେ ବିଭକ୍ତ । (୧) କାମସ୍ତର ବିଜ୍ଞାନ, (୨) ରୂପସ୍ତର ବିଜ୍ଞାନ, (୩) ଅରୂପସ୍ତର ବିଜ୍ଞାନ, (୪) ଲୋକୋତ୍ତର ବିଜ୍ଞାନ । ବିଜ୍ଞାନ ଶୁଦ୍ଧ ହୋଇ ଯେତେବେଳେ କ୍ଲେଶ ବା ମଳବିମୁକ୍ତ ହୁଏ, ଜ୍ଞାନ ଯେ ଅବସ୍ଥାକୁ ଲାଭ କରେ, ତାକୁ ଲୋକୋତ୍ତର ବିଜ୍ଞାନ ବୋଲିଯାଏ । ଲୋକୋତ୍ତର ବିଜ୍ଞାନକୁ ଆହୁରି ଚାରି ଭାଗରେ ବିଭକ୍ତ କରାଯାଇଛି । ଲୋକୋତ୍ତର ଲାଭ କଲେ ସାଧକ ଚାରୋଟି ଅବସ୍ଥାକୁ ପ୍ରାପ୍ତ ହୋଇଥାଏ ।

(୧) ସ୍ରୋତାପନ୍ନ, (୨) ସକୃଦାଗାମୀ, (୩) ଅନାଗାମୀ, (୪) ଅର୍ହତ । ଏହା ପୁଣି ମାର୍ଗ ଓ ଫଳ ଭେଦରେ ଆଠଟି ଅବସ୍ଥାକୁ ପାଏ । (୧) ସ୍ରୋତାପନ୍ନ ମାର୍ଗ ଓ ଫଳ (୨) ସକୃଦାଗାମୀ ମାର୍ଗ ଓ ଫଳ; (୩) ଅନାଗାମୀ ମାର୍ଗ ଓ ଫଳ, (୪) ଅର୍ହତମାର୍ଗ ଓ ଫଳ । ଯେତେବେଳେ ଚିତ୍ତ ସମସ୍ତ ସଂସ୍କାରମୁକ୍ତ ହୋଇ "ସଞ୍ଜ୍ଞା ବେଦୟିତ" ଅବସ୍ଥା ଲାଭ କରେ, ସେହି ଅବସ୍ଥାକୁ ନିର୍ବାଣ କୁହାଯାଏ । ତାହା ପୁଣି ପୂର୍ବୋକ୍ତ ଦୁଇଭାଗରେ ବିଭକ୍ତ "ନିର୍ବାଣ ଓ ମହାପରିନିର୍ବାଣ ।" ନିର୍ବାଣ ଅସ୍ୱାଦନ କଲେ ମଧ୍ୟ ଚିତ୍ତ ପୁନର୍ବାର ଲୋକ-ଭୂମିରେ ଆସି ପହଞ୍ଚେ ଏବଂ ଦେହ ଥିବା ପର୍ଯ୍ୟନ୍ତ ମହାପରିନିର୍ବାଣ ଲାଭ ହୁଏ ନାହିଁ । ମୃତ୍ୟୁ ପରେ ହିଁ ମହାପରିନିର୍ବାଣ ଲାଭ ହୁଏ । ଜୀବନ୍ମୁକ୍ତ ଅବସ୍ଥାରେ ଯେ ନିର୍ବାଣ ତାକୁ ସୋପାଧି-ଶେଷ ନିର୍ବାଣ ବୋଲି କୁହାଯାଏ ।

**ବୁଦ୍ଧଙ୍କର ଆତ୍ମା** — ବୁଦ୍ଧଙ୍କର ଆତ୍ମା ପଞ୍ଚସ୍କନ୍ଧାତ୍ମକ ଆତ୍ମା ରୂପରେ କଥିତ । ରୂପ, ବେଦନା, ସଞ୍ଜ୍ଞା, ସଂସ୍କାର, ବିଜ୍ଞାନ — ଏହି ସମସ୍ତର ସମ୍ମିଶ୍ରଣରେ ଆତ୍ମାର ଉତ୍ପତ୍ତି ।

ସାଂଖ୍ୟର ଆତ୍ମାପରି ଜ୍ଞାନ ସ୍ୱରୂପ ସେଠାରେ ଇଚ୍ଛା ନାହିଁ । ଇଚ୍ଛାଦବୃତ୍ତି ଅବିଦ୍ୟା ସ୍ୱରୂପ ଯୋଗ ଆତ୍ମାରେ ମଧ୍ୟ ଇଚ୍ଛା ନାହିଁ । କେଉଁ ବୃତ୍ତି ଦ୍ୱାରା ଆତ୍ମା ପୂର୍ଣ୍ଣତ୍ୱପ୍ରାପ୍ତ ହୁଏ । ଅତଃ ପତଞ୍ଜଳିଙ୍କ ମତରେ ପ୍ରକୃତି ଶୁଦ୍ଧ ହୋଇ ପ୍ରକୃଷ୍ଟ ତତ୍ତ୍ୱ ରୂପ ଲାଭ କରେ । ତାହା ମଧ୍ୟରେ ରଜ ତମ ଭାବ ରହେ ନାହିଁ । ସାଂଖ୍ୟମୁକ୍ତ ଆତ୍ମା ପ୍ରକୃତି ସଙ୍ଗରେ କୌଣସି ସମ୍ପର୍କ ରଖେ ନାହିଁ । କିନ୍ତୁ ଯୋଗଦର୍ଶନରେ ମୁକ୍ତ ଆତ୍ମା ପ୍ରକୃତି ଉପରେ ଐଶ୍ୱର୍ଯ୍ୟ ଲାଭ କରେ । ଦରକାର ହେଲେ ଏହା ଈଶ୍ୱରଙ୍କ ପରି ଶୁଦ୍ଧସତ୍ତ୍ୱ ପ୍ରକୃତିକୁ ନେଇ ଚିତ୍ତ ନିର୍ମାଣ କରେ ଓ ପ୍ରକୃତି ପରେ ଐଶ୍ୱର୍ଯ୍ୟ ଲାଭ କରେ । ବୁଦ୍ଧଙ୍କ ମତରେ ସ୍ଥାୟୀ ଆତ୍ମା ନାହିଁ ବା ବିଜ୍ଞାନ ନାହିଁ; କେବଳ ବିଜ୍ଞାନର ଧାରା ଅଛି । ଏହା ପୂର୍ବରୁ କୁହାଯାଇଛି, ବୁଦ୍ଧ ବିଜ୍ଞାନର ଧାରାକୁ ହିଁ ଆତ୍ମା କହନ୍ତି । ସାଂଖ୍ୟ ମତରେ ସ୍ଥାୟୀ ଆତ୍ମା ଅଛି । ସାଂଖ୍ୟ ଆତ୍ମାର ପରିଣାମ ହୁଏ ନାହିଁ, ମାତ୍ର ଜୈନ ଆତ୍ମାର ପରିଣାମ ହୁଏ । ସାଂଖ୍ୟ ମତରେ ବହୁ ଆତ୍ମା ଅଛି । ଜୈନ ଓ ବେଦାନ୍ତ ସାଧାରଣତଃ ଗୋଟିଏ ଆତ୍ମା ସ୍ୱୀକାର କରନ୍ତି ।

ଉପସଂହାରରେ ଜଣେ ବିଶିଷ୍ଟ ଦାର୍ଶନିକଙ୍କର ମତ ଉଲ୍ଲେଖ କରି କୁହାଯାଇପାରେ ଯେ—

**ବୁଦ୍ଧଙ୍କର ଧର୍ମ**—ଜୀବନର ଧର୍ମ, ଜ୍ଞାନର ଧର୍ମ, । ଏହାକୁ ହିନ୍ଦୁ ଧର୍ମର ସନ୍ତାନ କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଧର୍ମରେ କର୍ମ ସାଧନା ପ୍ରାଧାନ୍ୟ ଲାଭ କରିଛି । ଏ ଧର୍ମ ଜଡ଼ବାଦୀଙ୍କର ନୈତିକତା ଉତ୍କର୍ଷ ସାଧନର ପ୍ରଣାଳୀ ନୁହେଁ କିମ୍ବା "ସର୍ବଂ ଖଳ୍ୱିଦଂ ବ୍ରହ୍ମ" ବାଦ ବି ନୁହେଁ । ଏହା ଅଦ୍ୱୈତବାଦ ବି ନୁହେଁ । ଏହା ବହୁଦେବବାଦ ବି ନୁହେଁ । ଏହା ଈଶ୍ୱରବାଦର ଅଜ୍ଞାତ ଏକ ଦୁର୍ବୋଧ୍ୟ ତତ୍ତ୍ୱ । ଏହା ଅନନ୍ତ ଜ୍ଞାନ ଓ ସର୍ବବ୍ୟାପୀ ପ୍ରେମର ପଥପ୍ରଦର୍ଶକ । ପୂର୍ଣ୍ଣ ଚୈତନ୍ୟ ମଧ୍ୟରେ ଏହାର ଉପଲବ୍ଧି । ଏହା କେବଳ ସେହି ବ୍ରହ୍ମଚର୍ଯ୍ୟର କରସ୍ପର୍ଶ ଓ ସାଧିମାନ । ଯେ ପରିଶ୍ରମୀ, ଅନୁରାଗୀ ଏବଂ ପରମ ପବିତ୍ରତାର ପୂର୍ଣ୍ଣଜ୍ଞାନର ସୁପ୍ତ ଅବସ୍ଥାର ସାହାଯ୍ୟରେ ଦଶବିଧ ଶୃଙ୍ଖଳର ବିନାଶ ସାଧନ କରିଅଛନ୍ତି ଏବଂ ଶୀଳ ବିଶୁଦ୍ଧି, ଚିତ୍ତ ବିଶୁଦ୍ଧି, ଦୃଷ୍ଟି ବିଶୁଦ୍ଧି, କାଂକ୍ଷା ବିତରଣ ବିଶୁଦ୍ଧି, ମାର୍ଗାମାର୍ଗ ଦର୍ଶନ ବିଶୁଦ୍ଧି, ପ୍ରତିପଦଜ୍ଞାନ ଦର୍ଶନ ବିଶୁଦ୍ଧି, ଜ୍ଞାନ ଦର୍ଶନ ବିଶୁଦ୍ଧି ପ୍ରଭୃତି ବିଶୁଦ୍ଧି ମାର୍ଗରେ ଯେ ନିଜକୁ ପରିଚାଳିତ କରିବ, ସେ ଏକମାତ୍ର ଏ ଧର୍ମର ସାରତତ୍ତ୍ୱ ଉପଲବ୍ଧି କରିପାରିବ । ଏହି ଧର୍ମରେ ସର୍ବ ଦର୍ଶନର ସାର ସଂଗ୍ରହ କରି ସେମାନଙ୍କର ଉଦାର ନୀତିର ବ୍ୟାଖ୍ୟା କରାଯାଇଛି । ଏହା ମାନବକୁ ଦୟାର ସଦ୍‌ଗୁଣ, ନ୍ୟାୟପରାୟଣ, ଜୀବନର ପବିତ୍ରତା, ସତ୍ୟପ୍ରିୟତା, ମିଷ୍ଟବାକ୍ୟ, ହିଂସାଶୂନ୍ୟତା, ସଂଯମ, ନିର୍ଲୋଭତା, ବିଶ୍ୱପ୍ରେମିକତା ଏବଂ ମାନବ ଉନ୍ନତିର ଏକମାତ୍ର ଆବଶ୍ୟକ ବିବେକବୁଦ୍ଧିଯୁକ୍ତ ଚିନ୍ତାଲବ୍ଧ ଶିକ୍ଷା ଦିଏ । ପ୍ରେମ ହିଁ ବୌଦ୍ଧ ଧର୍ମର ବୈଶିଷ୍ଟ୍ୟ । ଏହା ସତ୍ୟାନୁସନ୍ଧାନରେ ମାନବର

ବିଚାର ବୁଦ୍ଧିକୁ ଜାଗ୍ରତ କରେ ଏବଂ ମାନବକୁ ପୀଡ଼ାଦାୟକ ସକଳ ପ୍ରକାର କର୍ମରୁ ବିରତ କରେ । ବୁଦ୍ଧ ସର୍ବଦା ମଧ୍ୟମ ପନ୍ଥା ଅବଲମ୍ବନ କରିବାକୁ ଉପଦେଶ ଦେଇଯାଇଅଛନ୍ତି । ଅପରିଦୃଷ୍ଟତା ଓ ପରନିରଗ୍ରହ ଭାବ ବୌଦ୍ଧଧର୍ମର ବହିର୍ଭୂତ । ବୁଦ୍ଧ କହିଯାଇଅଛନ୍ତି "ଆତ୍ମା ଦୀପୋଭବ" "ଅନନ୍ୟ ଶରଣୋଭବ" । ନିଜେ ନିଜର ଦୀପସ୍ୱରୂପ ହୁଅ, ଅନ୍ୟର ଶରଣ ଭିକ୍ଷା କର ନାହିଁ । ନିଜେ ନିଜ ଉପରେ ବିଶ୍ୱାସ ରଖ । ଏହିପରି ଉଦାର ଧର୍ମ ବୁଦ୍ଧ ପ୍ରଚାର କରି ଜଗତରେ ଯଶସ୍ୱୀ ହୋଇଯାଇଅଛନ୍ତି ।









# ଗୌଡ଼ୀୟ ବୈଷ୍ଣବଧର୍ମ ସାହିତ୍ୟ

ବୈଷ୍ଣବ ସାହିତ୍ୟ ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ବୈଷ୍ଣବଧର୍ମ ଅତି ପ୍ରାଚୀନ । ପ୍ରାଚୀନ ବୈଦିକ ସମାଜରେ ବିଷ୍ଣୁ ପୂଜା ପ୍ରଚଳିତ ଥିଲା । ଋକ୍‌ବେଦର ପୁରୁଷସୂକ୍ତ ତାର ପ୍ରମାଣ । ଋକ୍‌ବେଦରେ ବିଷ୍ଣୁ ସମ୍ବନ୍ଧରେ ଅନେକଗୁଡ଼ିଏ ସ୍ତୁତି ମିଳେ । କିନ୍ତୁ ଏହି ବୈଦିକ ବିଷ୍ଣୁ ଉପାସନା ପରବର୍ତ୍ତୀ କାଳର ପାଞ୍ଚରାତ୍ର ଓ ଭାଗବତ ସଂପ୍ରଦାୟ ମଧ୍ୟରେ ବିଭିନ୍ନ ରୂପ ଧାରଣ କରେ । ପାଞ୍ଚରାତ୍ର ଉପାସନା ବୈଦିକ ଉପାସନାଠାରୁ ଆକାରଗତ ପୃଥକ୍ । ଏହା ମଧ୍ୟରେ ଭକ୍ତି ଓ ବିଭିନ୍ନ ବୀଜମନ୍ତ୍ରାତ୍ମକ ମନ୍ତ୍ରର ଜପ ଏବଂ ଅର୍ଚ୍ଚାବତାର ଉପାସନା ପ୍ରାଧାନ୍ୟ ଲାଭ କରେ । ବୈଦିକ ଉପାସନାରେ ବାହ୍ୟତଃ ଭକ୍ତି ନାହିଁ କହିଲେ ଚଳେ । ବୈଦିକ ଉପାସନା କର୍ମପ୍ରାଧାନ୍ୟ । କିନ୍ତୁ ପାଞ୍ଚରାତ୍ର ଉପାସନା ଭକ୍ତିପ୍ରଧାନ୍ୟ । ପାଞ୍ଚରାତ୍ର ଉପାସନାରେ ମୂର୍ତ୍ତିପୂଜାର ନିଦର୍ଶନ ମିଳେ । ପାଞ୍ଚରାତ୍ର ସଂହିତାରେ ବିଷ୍ଣୁଙ୍କ ବିଭିନ୍ନ ରୂପର ମୂର୍ତ୍ତି, ନିର୍ମାଣ ପ୍ରଣାଳୀ, ପ୍ରତିଷ୍ଠା ପ୍ରଣାଳୀ, ମନ୍ଦିର ନିର୍ମାଣ ପ୍ରଣାଳୀ ଏବଂ ବିଭିନ୍ନ ପୂଜାପଦ୍ଧତି ଲିପିବଦ୍ଧ ହୋଇଛି । ପାଞ୍ଚରାତ୍ର ସଂପ୍ରଦାୟର ମୂଳକଥା ଜ୍ଞାନମିଶ୍ରାଭକ୍ତି । ଏହି ସଂପ୍ରଦାୟର ଲକ୍ଷ୍ମୀନାରାୟଣ ଉପାସନା ବିଶେଷ ଦ୍ରଷ୍ଟବ୍ୟ । ଉକ୍ତ ପାଞ୍ଚରାତ୍ର ସଂପ୍ରଦାୟର ଆଲୱାର ଗାଥା ବୋଲି ଦ୍ରାବିଡ଼ ଭାଷାରେ ଲିପିବଦ୍ଧ କେତେଗୁଡ଼ିଏ ଶିବ ବିଷ୍ଣୁ ସ୍ତୋତ୍ର ଅଛି । ଏହି ସ୍ତୋତ୍ରଗୁଡିକ ବିଷ୍ଣୁଭକ୍ତିର ସହାୟକ । ଆମେ ଯେପରି ବେଦକୁ ଭକ୍ତି କରୁ, ସେମାନେ ସେହିପରି ଆଲୱାର ଗାଥାକୁ ଭକ୍ତି କରନ୍ତି । ଏହି ଗାଥା ଅତୀବ ପ୍ରାଚୀନ । ଅନେକ ପଣ୍ଡିତ ମନେକରନ୍ତି ଯେ, ଆଲୱାର ଗାଥାର ମୂଳକଥା ଭକ୍ତି ଭାବରେ ଭଗବଦୁପାସନା । ବେଦର ବିଷ୍ଣୁ ଉପାସନା ଓ ଆଲୱାର ଗାଥାର ଭକ୍ତି ଉପାସନା ଉଭୟ ମିଶ୍ରିତ ହୋଇ ପାଞ୍ଚରାତ୍ର ଉପାସନାର ସୃଷ୍ଟି ହୁଏ । ଏହି ପାଞ୍ଚରାତ୍ର ସଂପ୍ରଦାୟର ମୂଳ ଗ୍ରନ୍ଥ ୧୦୮ । ଏଗୁଡ଼ିକ ସଂହିତା ନାମରେ ପରିଚିତ ଯଥା :— ଅହିର୍ବୁଧ୍ନ୍ୟ ସଂହିତା, ସତ୍ୱାଖ୍ୟା ସଂହିତା ଇତ୍ୟାଦି । ଏହି ସଂହିତାର ନାମ ସହିତ ବୈଦିକ ସଂହିତାର ସାମଞ୍ଜସ୍ୟ ଅଛି । ପାଞ୍ଚରାତ୍ର ଉପାସନା ଯେ ଅବୈଦିକ ନୁହେ, ଏହା ପ୍ରମାଣ କରିବା ସକାଶେ ଏହି ଶାସ୍ତ୍ରର ନାମ ସଂହିତା ଦିଆଯାଇଛି । ବ୍ରହ୍ମସୂତ୍ରର ଦ୍ୱିତୀୟ ଅଧ୍ୟାୟର ଦ୍ୱିତୀୟ ପାଦରେ ପାଞ୍ଚରାତ୍ର ଉପାସନା ଅବୈଦିକ ନୁହେଁ ବୋଲି ବ୍ରହ୍ମସୂତ୍ରକାର ଖଣ୍ଡନ କରିଅଛନ୍ତି । ମାତ୍ର ଶ୍ରୀମତ୍ ଶଙ୍କରାଚାର୍ଯ୍ୟ ସୁଯୁକ୍ତିର ସହିତ ଏହି ପାଞ୍ଚରାତ୍ରର ଦାର୍ଶନିକ

ମତବାଦକୁ ଖଣ୍ଡନ କରି କହିଛନ୍ତି ଯେ, ଏହା ଭଗବଦୁପାସନା ହେଲେ ମଧ୍ୟ ତାହା ଅବୈଦିକ ଭଗବଦୁପାସନା । ଏହି ମତକୁ ଉପଲକ୍ଷ୍ୟ କରି ଯାମୁନାଚାର୍ଯ୍ୟ "ଆଗମ ପ୍ରାମାଣ୍ୟ" ବୋଲି ଖଣ୍ଡିଏ ଗ୍ରନ୍ଥ ଲେଖି ଏହାକୁ ବୈଦିକ ବୋଲି ପ୍ରମାଣିତ କରିଅଛନ୍ତି । ପାଞ୍ଚରାତ୍ର ଆଗମର ୪ଟି ପାଦ ଅଛି । (୧) ଚର୍ଯ୍ୟାପାଦ (୨) ଯୋଗପାଦ (୩) ବିଦ୍ୟା-ପାଦ (୪) ପ୍ରତିଷ୍ଠାପାଦ । ଯାହାହେଉ, ବୈଷ୍ଣବଧର୍ମର ମୂଳଗ୍ରନ୍ଥ ଖୋଜିବାକୁ ଗଲେ ଆମକୁ ଏହି ପାଞ୍ଚରାତ୍ର ଆଗମ ଅତି ଉତ୍ତମରୂପେ ଅଧ୍ୟୟନ କରିବାକୁ ହେବ ।

ବୈଦିକ ଯୁଗରେ ଧର୍ମର ପ୍ରାଥମିକ ସ୍ୱରୂପ ଥିଲା କର୍ମପ୍ରଧାନ । ଉପନିଷଦ ଯୁଗରେ ଏହା ଜ୍ଞାନପ୍ରଧାନ । ପୁନଶ୍ଚ ପୌରାଣିକ ଯୁଗରେ ଏହା ଭକ୍ତିରୂପ ଧାରଣ କଲା । ତେଣୁ ଭାଗବତକୁ ଭଗବତ ପୁରାଣ ବୋଲି କୁହାଯାଇଛି । ଏହି ଭାଗବତରେ ଅନ୍ୟାନ୍ୟ ପୁରାଣରେ ବିଷ୍ଣୁଙ୍କର ସ୍ୱରୂପ ଉପାସନା ଓ ବୈଷ୍ଣବ ଭକ୍ତିର ନିଦର୍ଶନ ମିଳେ । ଭାରତୀୟ-ମାନଙ୍କର ଚିନ୍ତାଜଗତରେ ଭାରତୀୟ ଦର୍ଶନ ଏକ ବିପ୍ଳବ ସୃଷ୍ଟି କରିଛି । ଜୀବ, ଈଶ୍ୱର ଓ ଜଗତ—ଏହି ତିନିଟିର ସମ୍ବନ୍ଧ ନେଇ ନାନାପ୍ରକାର ବାଦ ବିସମ୍ବାଦ ଗଢ଼ିଉଠିଛି । ବିଶେଷତଃ ଜୀବ ଓ ଈଶ୍ୱରର ସମ୍ବନ୍ଧ ନେଇ ଭାରତୀୟ ଦର୍ଶନରେ ନାନାବିଧ ମତ ଆଲୋଚିତ ହୋଇଛି । ଏହି ମତଗୁଡ଼ିକ ଆଲୋଚନା କଲେ ଆମେ ୨ଟି ପ୍ରଧାନ ମତ ବା ଦୁଇ ପ୍ରଧାନ ବାଦ ଦେଖିବାକୁ ପାଉଁ । (୧) ଈଶ୍ୱର ଅସ୍ତିତ୍ୱ ସ୍ୱୀକାରବାଦୀ, (୨) ଈଶ୍ୱର ଅନସ୍ତିତ୍ୱ ସ୍ୱୀକାରବାଦୀ । ଭାରତୀୟ ଦର୍ଶନର ଜୈନ; ବୌଦ୍ଧ, ଚାର୍ବାକ ଓ ନିରୀଶ୍ୱର ସାଂଖ୍ୟ— ଏମାନ୍ତେ ଈଶ୍ୱର ସ୍ୱୀକାର କରନ୍ତି ନାହିଁ ।

ଈଶ୍ୱର ସ୍ୱୀକାର କରିବା ଦଳରେ ମଧ୍ୟ ନାନାପ୍ରକାର ଉପଦଳ ସୃଷ୍ଟି ହୋଇ-ଅଛନ୍ତି । (୧) ଭେଦବାଦୀ (୨) ଅଭେଦବାଦୀ (୩) ଭେଦାଭେଦବାଦୀ ।

ଭେଦବାଦୀ-ନ୍ୟାୟ, ବୈଶେଷିକ, ପାତଞ୍ଜଳ, ମାଧ୍ୱ, ବୈଷ୍ଣବ, ଶୈବ ସଂପ୍ରଦାୟ ।

ଅଭେଦବାଦୀ ଶଙ୍କର ବେଦାନ୍ତ ଓ କାଶ୍ମୀରୀ ଶୈବ ଇତ୍ୟାଦି ।

ଭେଦାଭେଦବାଦୀ—ରାମାନୁଜ, ନିମ୍ବାର୍କ, ବଲ୍ଲଭାଚାର୍ଯ୍ୟ, ତାନ୍ତ୍ରିକ ଶାକ୍ତ ସଂପ୍ରଦାୟ, ଶୈବ ରୌଦ୍ର ସମ୍ପ୍ରଦାୟ, ବୀରଶୈବ ସଂପ୍ରଦାୟ । ଭେଦାଭେଦବାଦୀ ଗଣ ମଧ୍ୟରେ ପୁଣି ପ୍ରାର୍ଥକ୍ୟ ଦୃଷ୍ଟ ହୁଏ । କେହି ଭେଦ ଉପରେ ପୁଣି କେହି ଅଭେଦ ଉପରେ ପ୍ରାଧାନ୍ୟ ଦେଇଅଛନ୍ତି । ଏମାନଙ୍କ ମଧ୍ୟରୁ କାହାକୁ ଶୁଦ୍ଧାଦ୍ୱୈତ ଓ ଅଧ୍ୟାତ୍ମବାଦୀ ଇତ୍ୟାଦି ରୂପରେ ବିଭକ୍ତ କରାଯାଇଛି । ମାତ୍ର ସମସ୍ତଙ୍କର ମୂଳକଥା ଏହି ଯେ ଏକର ବହୁ ହେବାର ଶକ୍ତି ମିଥ୍ୟାପ୍ରସୂତ ନୁହେଁ । ଏହା ସ୍ୱରୂପତଃ ସତ୍ୟ । କେତେବେଳେ ଏ ଶକ୍ତି ଅନ୍ତର୍ଲୀନ ରହେ ଏବଂ ଆଉ କେତେବେଳେ ଏ ଶକ୍ତି ବିକଶିତ ହୁଏ । ଯେତେବେଳେ ଏ ଶକ୍ତି ଅନ୍ତର୍ଲୀନ ଅବସ୍ଥାକୁ ପ୍ରାପ୍ତ ହୁଏ ବା ଅବସ୍ଥାରେ ଉପନୀତ ହୁଏ, ସେତେବେଳେ

ତାହାକୁ ପ୍ରଳୟ ବା ମହାପ୍ରଳୟ ବୋଲି କଳନା କରାଯାଏ । ଆଉ ଯେତେବେଳେ ଶକ୍ତିର ବିକାଶ ପରିଦୃଷ୍ଟ ହୁଏ, ସେତେବେଳେ ତାହା ସୃଷ୍ଟି ରୂପରେ ପରିଗଣିତ ହୁଏ । ବ୍ରହ୍ମ, ଜୀବ, ଜଗତ– ଏହି ତିନୋଟିର ସମ୍ବନ୍ଧ ନେଇ ସମସ୍ତ ବାଦ ଗଢ଼ିଉଠିଛି । ଅଦ୍ୱୈତବାଦୀ ଶଙ୍କରଙ୍କ ମତରେ ଏକମାତ୍ର ବ୍ରହ୍ମ ହିଁ ସତ୍ୟ । ଜୀବ ଓ ଜଗତ ସମ୍ବନ୍ଧରେ ଆମ୍ଭମାନଙ୍କର ଜ୍ଞାନ ଅଧ୍ୟାସ ବା ଭ୍ରମଜାତ । ବିଶିଷ୍ଟାଦ୍ୱୈତବାଦୀ ରାମାନୁଜଙ୍କ ମତରେ ବ୍ରହ୍ମ ଓ ଜୀବରେ ଭେଦ ଅଛି । ସେହି ଭେଦ ୩ ପ୍ରକାର । ସଜାତୀୟ, ବିଜାତୀୟ ଓ ସ୍ୱଗତ । ବ୍ରହ୍ମର ଭେଦ ସଜାତୀୟ ବା ବିଜାତୀୟ ନୁହେଁ; କିନ୍ତୁ ସ୍ୱଗତ ।

ସଜାତୀୟ ଭେଦ—ଆମ୍ବଗଛ ଓ ଜାମୁଗଛ ।
ବିଜାତୀୟ ଭେଦ—ବୃକ୍ଷ ଓ ପର୍ବତ ।

ସ୍ୱଗତ ଭେଦ ବୃକ୍ଷ ଓ ତାର କାଣ୍ଡ, ପତ୍ର, ପୁଷ୍ପ ଓ ଫଳ । ଜୀବଜଗତ ବ୍ରହ୍ମର ଅନ୍ତର୍ବର୍ତ୍ତୀ କିନ୍ତୁ ଜୀବଜଗତ ବ୍ରହ୍ମ ନୁହେଁ । ବୃକ୍ଷ ଯେପରି ତାର ପତ୍ର ପୁଷ୍ପ ନେଇ ପୂର୍ଣ୍ଣ, ସେହିପରି ବ୍ରହ୍ମ ଜୀବ ଓ ଜଗତକୁ ନେଇ ପୂର୍ଣ୍ଣ । ବ୍ରହ୍ମର ଦୁଇଟି ଶକ୍ତି ଚିତ୍ ଓ ଅଚିତ୍ (ଜୀବ ଓ ଜଗତ) । ଦ୍ୱୈତାଦ୍ୱୈତବାଦୀ ନିମ୍ବାର୍କାଚାର୍ଯ୍ୟଙ୍କ ମତରେ ଜୀବ ଏବଂ ବ୍ରହ୍ମ ମଧ୍ୟରେ ଯେ ଭେଦ, ତାହା ଜଳ ସଙ୍ଗରେ ମୀନର ଭେଦ ସଦୃଶ । ସୁତରାଂ ବ୍ରହ୍ମ ମଧ୍ୟରେ ଜୀବର ଅସ୍ତିତ୍ୱ ବରାବର ରହିଛି । ଜୀବଜଗତ ସକାଶେ ବ୍ରହ୍ମର ପ୍ରୟୋଜନ, ମାତ୍ର ବ୍ରହ୍ମ ସକାଶେ ଜୀବ ଜଗତ ନୁହନ୍ତି ।

ଦ୍ୱୈତବାଦୀ ମଧ୍ୱାଚାର୍ଯ୍ୟଙ୍କ ମତରେ ଜୀବ ଜଗତ ଓ ବ୍ରହ୍ମରେ ପାଞ୍ଚ ପ୍ରକାର ଭେଦ ଅଛି । ବ୍ରହ୍ମ ଓ ଜୀବ, ବ୍ରହ୍ମ ଓ ଜଗତ, ଜୀବ ଓ ଜଗତ, ଜଡ଼ ଓ ଜଡ଼, ଜୀବ । ଓ ଜୀବ ବ୍ରହ୍ମ ଯେପରି ସତ୍ୟ, ଜୀବ ସେହିପରି ସତ୍ୟ ଓ ଜଗତ ମଧ୍ୟ ସେହିପରି ସତ୍ୟ । ଗୌଡ଼ୀୟ ବୈଷ୍ଣବବାଦୀ ବ୍ରହ୍ମର ତିନୋଟି ରୂପର ଅବତାରଣା କରିଅଛନ୍ତି । (୧) ବ୍ରହ୍ମ (୨) ପରମାତ୍ମା (୩) ଭଗବାନ । ନିର୍ବିଶେଷ ଅବସ୍ଥାରେ ବ୍ରହ୍ମ, ସବିଶେଷ ବା ସକ୍ରିୟ ଅବସ୍ଥାରେ ଭଗବାନ । ଆଉ ପ୍ରତ୍ୟେକ ଜୀବ ମଧ୍ୟରେ ତାର ବିଶେଷ ପ୍ରକାଶ ହେଉଛି ପରମାତ୍ମା । ଭଗବାନଙ୍କର ଆଉ ତିନୋଟି ଶକ୍ତି ସତ୍, ଚିତ୍ ଓ ଆନନ୍ଦ । ଅପର ନାମରେ ସ୍ୱରୂପ, ଜୀବ, ମାୟାଦି । ତଦ୍‌ବିଦ୍‌ମାନ ଏହି ସ୍ୱରୂପ, ଜୀବ ଓ ମାୟାଶକ୍ତିର ତାରତମ୍ୟ ଦେଖାଇବାକୁ ଯାଇ ସୂର୍ଯ୍ୟ ଏବଂ ତାଙ୍କର ରଶ୍ମିପୁଞ୍ଜକର ଦର୍ପଣବୈଚିତ୍ର୍ୟର ଉଦାହରଣ ଦେଖାଇଅଛନ୍ତି ।

ସୂର୍ଯ୍ୟଙ୍କର ନିଜ ସତ୍ତା—ସ୍ୱରୂପଶକ୍ତି
ତାଙ୍କର ରଶ୍ମି—ଜୀବଶକ୍ତି

ଯେ ଶକ୍ତି ଦ୍ୱାରା ରଶ୍ମିଗୁଡ଼ିକର ବର୍ଣ୍ଣବୈଚିତ୍ର୍ୟର ପ୍ରକାଶ ପାଏ, ତାହା ମାୟା ଶକ୍ତି । ଯେପରି ସୂର୍ଯ୍ୟଙ୍କ ସଙ୍ଗରେ ବର୍ଣ୍ଣ ବୈଚିତ୍ର୍ୟର କୌଣସି ସମ୍ବନ୍ଧ ନାହିଁ, ଯଦିଚ ବର୍ଣ୍ଣବୈଚିତ୍ର ସୂର୍ଯ୍ୟରଶ୍ମିରୁ ହିଁ ପ୍ରକାଶିତ ହେଉଅଛି । ସେହିପରି ବ୍ରହ୍ମ ଓ ଜୀବ । ଯାହା-ହେଉ ଜୀବ ଈଶ୍ୱରର ଭେଦ ନେଇ ଦୁଇଟି ପ୍ରଧାନ ମତ ଦେଖିବାକୁ ମିଳେ । ଗୋଟିଏ ଜୀବ ଈଶ୍ୱରର ନିତ୍ୟ ଭେଦ, ଅନ୍ୟଟି ଜୀବ ଈଶ୍ୱର ମଧ୍ୟରେ ଭେଦଜ୍ଞାନ । ଭେଦବାଦର ମୂଳକଥା ଏହି ଯେ ଈଶ୍ୱର ସର୍ବଜ୍ଞ, ସର୍ବନିୟନ୍ତା, ପରମ କଲ୍ୟାଣ ଗୁଣଯୁକ୍ତ । ଜୀବ କ୍ଷୁଦ୍ର, ସେ ସୃଷ୍ଟ ପଦାର୍ଥ । ତେଣୁ ଜୀବ ଈଶ୍ୱର ସଙ୍ଗରେ କୌଣସି ଅଭେଦ କଳ୍ପନା କରିବା ଅସଙ୍ଗତ । କାର୍ଯ୍ୟ ଓ କାରଣ କେତେବେଳେ ଏକ ହୁଏ ନାହିଁ । ସର୍ବଦା ସେଥିରେ ଭେଦ ଥାଏ । ଯେପରି ଦୁଧ ଓ ଦଧିର ଭେଦ, ସେହିପରି କାର୍ଯ୍ୟ ଓ କାରଣରେ ଭେଦ । ଈଶ୍ୱର— କାରଣ । ଜୀବ—କାର୍ଯ୍ୟ । ଈଶ୍ୱର କର୍ମଫଳଦାତା – ଜୀବ ଭୋକ୍ତା । ଈଶ୍ୱର ସର୍ବଦା ମୁକ୍ତ— ଜୀବ ନାନାବିଧ ବାସନାଯୁକ୍ତ । ଜୀବ ଶକ୍ତି—ଈଶ୍ୱର ଶକ୍ତିମାନ୍ । ଜୀବ ସାଧନା ଦ୍ୱାରା ଭଗବତ୍ ଅନୁଗ୍ରହ ଲାଭ କରେ । ଭଗବାନ ମାୟାର ଅଧୀଶ୍ୱର, ଜୀବ ମାୟାର ଅଧୀନ । ତେଣୁ ମାୟାର ଅଧୀନ ଜୀବ ମାୟାର ଅଧୀଶ୍ୱର ଯେ ଈଶ୍ୱର, ତାଙ୍କ ସମ୍ବନ୍ଧରେ ଭେଦ ଅଛି କି ନା ତାହା ଅବଧାରଣା କରାଯାଇ ପାରିବ ନାହିଁ । ତାହା ଚିନ୍ତା କରାଯାଇ ପାରିବ ନାହିଁ । ଏଣୁ ଏହା ଅଚିନ୍ତ୍ୟ । ଏହା ହିଁ ଅଚିନ୍ତ୍ୟଭେଦାଭେଦ ବାଦ । ପଣ୍ଡିତ ଶ୍ରୀ ସୁନ୍ଦରାନନ୍ଦ ବିଦ୍ୟାବିନୋଦ ତାଙ୍କ "ଅଚିନ୍ତ୍ୟଭେଦାଭେଦବାଦ" ଗ୍ରନ୍ଥରେ ଏହି ଅଚିନ୍ତ୍ୟଭେଦାଭେଦବାଦର ସାରମର୍ମ ସଂକ୍ଷିପ୍ତ ଭାବରେ ଲିପିବଦ୍ଧ କରିଅଛନ୍ତି । ସେ ବିଭିନ୍ନ ଗୌଡ଼ୀୟ ଦାର୍ଶନିକମାନଙ୍କର ମତ ଉଲ୍ଲେଖ କରି ବ୍ରହ୍ମର ସଜାତୀୟ, ବିଜାତୀୟ ଓ ସ୍ୱଗତ ଭେଦର ଅସମୀଚୀନତା ପ୍ରତିପାଦନ କରିଅଛନ୍ତି । ସେ ଉଲ୍ଲେଖ କରିଛନ୍ତି, ବ୍ରହ୍ମ ଅନ୍ୟ ନିରପେକ୍ଷ ସ୍ୱୟଂସିଦ୍ଧ । ବ୍ରହ୍ମର ତଟସ୍ଥା ଶକ୍ତି ଜୀବ, ଚିଚ୍ଛକ୍ତି ସନ୍ଧିନୀର ବିଳାସ ଶ୍ରୀ ଭଗବଦ୍ଧାମ ଓ ସନ୍ଧିନୀ ଶକ୍ତି ପରିକର ଅନନ୍ତ ଭଗବତ୍ସ୍ୱରୂପ ଓ ପରିକର । ବ୍ରହ୍ମରେ ଭେଦବାଦ ଓ ଅଭେଦବାଦ ସ୍ଥାପନ କରିବାକୁ ହେଲେ ଅନେକ ଦୋଷ ଉପସ୍ଥିତ ହୁଏ । ଏହି ସକାଶେ କୌଣସି ବୈଦାନ୍ତିକ କେବଳ ଭେଦ ବା କେବଳ ଅଭେଦ ସାଧନାରେ ମାନବ ଚିନ୍ତାର ଅସାମର୍ଥ୍ୟ ଉପଲବ୍ଧି କରି ଶବ୍ଦ ପ୍ରମାଣ ମୂଳକ ଅଚିନ୍ତ୍ୟଭେଦାଭେଦ ସ୍ୱୀକାର କରିଅଛନ୍ତି । ଶକ୍ତି ଓ ଶକ୍ତିମାନ ମଧ୍ୟରେ ଭେଦ ଓ ଅଭେଦ ଏବଂ ଏହି ଭେଦା-ଭେଦ "ଅଚିନ୍ତ୍ୟ" ଅର୍ଥାତ୍ ଏ ଯୁକ୍ତିର ଅତୀତ ବା ତର୍କର ଅଗମ୍ୟ ବ୍ୟାପାର, ଏହି ସିଦ୍ଧାନ୍ତ ସ୍ୱୀକାର କରିବାକୁ ପଡ଼େ । ଭେଦ ଓ ଅଭେଦ ଏକ ସଙ୍ଗରେ କିପରି ସତ୍ୟ ? ହଁ ଓ ନା, ଉଷ୍ଣ ଓ ଶୀତଳ ଏକ ସଙ୍ଗରେ କିପରି ସମ୍ଭବ ? ଏହା କୌଣସି ଯୁକ୍ତିତର୍କ ଦ୍ୱାରା ନିର୍ଣ୍ଣୟ କରାଯାଇ ନ ପାରେ । କିନ୍ତୁ ପ୍ରକୃତିର ଅତୀତ ରାଜ୍ୟରେ ଏକସଙ୍ଗରେ ବିରୁଦ୍ଧ ବ୍ୟାପାରର ଅପୂର୍ବ ସମନ୍ୱୟ ହୁଏ । ଏହା ଶ୍ରୁତି, ସ୍ମୃତି, ପୁରାଣ, ପଞ୍ଚରାତ୍ର ସମ-ସ୍ୱରରେ ପ୍ରତିପାଦନ କରିଅଛନ୍ତି । ଅତଏବ ଶକ୍ତି ଓ ଶକ୍ତିମାନର ଯୁଗପତ୍ ବିରୁଦ୍ଧ

ସମ୍ବନ୍ଧରି – ଶ୍ରୁତାର୍ଥାପତ୍ତି-ଜ୍ଞାନ-ଗୋଚର ଶବ୍ଦ ପ୍ରମାଣଗମ୍ୟ । ଏହି ମତର ପୃଷ୍ଟପୋଷକ-ମାନଙ୍କୁ ଗୌଡ଼ୀୟ ବୋଲି କୁହାଗଲା । ଅଚିନ୍ତ୍ୟଭେଦାଭେଦବାଦର ଦାର୍ଶନିକମାନେ ଏହି ମତର ସମର୍ଥକ । ଏହାଛଡ଼ା ଗୌଡ଼ୀୟଙ୍କର ଶୁଦ୍ଧାଭକ୍ତି ଏକ ପ୍ରଧାନତମ ବୈଶିଷ୍ଟ୍ୟ; ଏହା ପରେ ଆଲୋଚ୍ୟ । ବିଷ୍ଣୁ ଉପାସକମାନଙ୍କୁ ବୈଷ୍ଣବ ବୋଲି କୁହାଯାଇଛି । ଏହି ବୈଷ୍ଣବମାନଙ୍କ ମଧ୍ୟରେ ଚାରୋଟି ସମ୍ପ୍ରଦାୟ ଦେଖାଯାଏ । ଶ୍ରୀ (ରାମାନୁଜାଦ), ବ୍ରହ୍ମ (ମଧ୍ୱାଚାର୍ଯ୍ୟ), ରୁଦ୍ର (ବିଷ୍ଣୁ ସ୍ୱାମୀ ବଲ୍ଲଭ) ଓ ସନକ (ନିମ୍ବାର୍କାଚାର୍ଯ୍ୟ) । କେହି କେହି ଅନୁମାନ କରନ୍ତି ଯେ, ଚୈତନ୍ୟଙ୍କର ନିଜର କୌଣସି ସମ୍ପ୍ରଦାୟ ନ ଥିଲା । ତାହା ମାଧ୍ୱ ସଂପ୍ରଦାୟ ମଧ୍ୟରେ ଗଣିତ । ପୁନଶ୍ଚ ମାଧ୍ୱାଚାର୍ଯ୍ୟଙ୍କର ସିଦ୍ଧାନ୍ତ ସହିତ ଶ୍ରୀଚୈତନ୍ୟ ପ୍ରବର୍ତ୍ତିତ ସାଧନାର କୌଣସି ଐକ୍ୟ ନାହିଁ ବୋଲି କେତେକ ସମାଲୋଚକ ଅନୁମାନ କରନ୍ତି । ସେପରିକି ଉପାସନା ପ୍ରଣାଳୀ ଓ ଆଦର୍ଶଗତ ଭେଦ ମଧ୍ୟ ବର୍ତ୍ତମାନ । ଚୈତନ୍ୟଙ୍କ ଗୁରୁ ସମ୍ବନ୍ଧରେ ବଳଦେବ ବିଦ୍ୟାଭୂଷଣଙ୍କ ରଚିତ "ପ୍ରମେୟ ରତ୍ନାବଳୀ" ଓ କବି କର୍ଣ୍ଣପୂରଙ୍କ ପ୍ରଣୀତ "ଗୌର ଗଣୋଦ୍ଦେଶଦୀପିକା" ଗ୍ରନ୍ଥରେ ନାନା ମତ ଦିଆଯାଇଛି ଏବଂ ତାଙ୍କ ଗୁରୁପରଂପରାର ଗୋଟିଏ ତାଲିକା ମଧ୍ୟ ପରିଦୃଷ୍ଟ ହୁଏ । ଚୈତନ୍ୟ ପନ୍ଥୀଗଣ, ଭାଗବତ ସହିତ ବୌଦ୍ଧ ଓ ସହଜିଆ ସାଧନା ପ୍ରଣାଳୀର ଭେଦ ଆଲୋଚନା କରି ନିଜର ଧର୍ମମତ ସ୍ଥିର କରିଅଛନ୍ତି । ଚୈତନ୍ୟ ଭକ୍ତିବାଦର ପୃଷ୍ଟପୋଷକ । କର୍ମଯୋଗ, ଜ୍ଞାନଯୋଗ ଓ ଭକ୍ତିଯୋଗ ମଧ୍ୟରେ ଭକ୍ତିଯୋଗ ହିଁ ଶ୍ରେଷ୍ଠ । କର୍ମଯୋଗର ଦୁଇଟି ଅଂଶ –

ପ୍ରଥମଟି ଯଜ୍ଞାଦି ଅନୁଷ୍ଠାନ ଦ୍ୱାରା ଦେହ ଶୁଦ୍ଧି ଓ ଚିତ୍ତ ଶୁଦ୍ଧି ସମ୍ଭବ । ଦେହ ଶୁଦ୍ଧି ହେଲେ ଇନ୍ଦ୍ରିୟ ବୃତ୍ତି ଅନ୍ତର୍ମୁଖୀ ହୁଏ । ସେତେବେଳେ କର୍ମଯୋଗର ଦ୍ୱିତୀୟ ଅଂଶ ଆରମ୍ଭ ହୁଏ । ଯମାଦି ଅଷ୍ଟାଙ୍ଗ ଯୋଗ ସାଧନ ହିଁ କର୍ମଯୋଗର ଦ୍ୱିତୀୟାଂଶ— କର୍ମଯୋଗ ଐଶ୍ୱର୍ଯ୍ୟପ୍ରଧାନ । ଏହାଠାରୁ ଅର୍ଥ ଓ କାମର ପ୍ରାପ୍ତି ହୁଏ । ଜ୍ଞାନଯୋଗଦ୍ୱାରା— କୈବଲ୍ୟମୁକ୍ତି ସମ୍ଭବପର ହୁଏ; ତାହାକୁ ଦେହାଭ୍ୟନ୍ତରେ ବା ଦେହର ବାହାରେ ସ୍ଥାନ ବିଶେଷରେ ଶ୍ରୀଭଗବାନଙ୍କର ସ୍ୱରୂପରେ ପ୍ରୟୋଗ କରି ତାହାର ଅନୁଭବ କରିବାକୁ ହୁଏ । ସେହି ଅନୁଭବର ସ୍ଥିତିକାଳ ଅନୁଭବ ଯୋଗଦ୍ୱାରା ବଢ଼ାଇ ଅଖଣ୍ଡ ଅନୁଭବ ଲାଭ କରା-ଯାଏ । ଏହା ହିଁ ଜ୍ଞାନଯୋଗ । ଏହା ଭକ୍ତିଯୋଗର ମଧ୍ୟ ସହକାରୀ । ପ୍ରାରବ୍ଧ କର୍ମର ଅବସାନ ପର୍ଯ୍ୟନ୍ତ ପୁନଃ ପୁନଃ ଯୋଗାଭ୍ୟାସ ଦ୍ୱାରା ଅନୁଭବର ଉତ୍କର୍ଷ ସାଧନ ପୂର୍ବକ ତୈଳଧାରା ନ୍ୟାୟ ଅବଚ୍ଛିନ୍ନ ସ୍ମୃତି ପ୍ରବାହକୁ ଅପରୋକ୍ଷ କରିବା ହିଁ ଭକ୍ତିଯୋଗ ।

ଭଗବତ୍ ଅନୁଭବ ହିଁ ପରମ ପୁରୁଷାର୍ଥ । ଏହି ଅନୁଭବ କରିବାକୁ ହେଲେ ହୃଦୟରେ ଭକ୍ତି ପୋଷଣ କରିବା ଉଚିତ । ସେଭକ୍ତି ପ୍ରେମମୂଳକ, ତାହା ମଧ୍ୟ ମଧୁରଭକ୍ତି ନାମରେ ନାମିତ । ଚୈତନ୍ୟଦେବ ଏହି ମଧୁରଭକ୍ତିର ନିଦର୍ଶନ ମଧ୍ୟ ପାଇଲେ ପାଞ୍ଚରାତ୍ରି

ଆଗମ ଅଧ୍ୟୟନ କରି । କାରଣ ପାଞ୍ଚରାତ୍ର ଆଗମରେ ପୁଷ୍ଟିମାର୍ଗରେ ମଧୁର ରସର ଇଙ୍ଗିତ ପରିଚୟ ମିଳେ । ମଧୁର ରସର ପ୍ରୟୋଗ ଓ ପ୍ରଚାର ମୂଳରେ ଶ୍ରୀଚୈତନ୍ୟଙ୍କ ନାନାବିଧ ଶାସ୍ତ୍ରାଲୋଚନା ନିହିତ ଅଛି । ଶ୍ରୀକୃଷ୍ଣଦାସଙ୍କ ମତରେ ଚୈତନ୍ୟ "ଭାଗବତ", ଜୟଦେବଙ୍କ କୃତ "ଗୀତଗୋବିନ୍ଦ" ଓ ବିଲ୍ୱମଙ୍ଗଳ କୃତ "କୃଷ୍ଣକର୍ଣ୍ଣାମୃତ" ଅଧ୍ୟୟନ କରିବାକୁ ଭାରି ଭଲ ପାଉଥିଲେ । ସୁତରାଂ ଭକ୍ତିମୂଳକ ଗ୍ରନ୍ଥଦ୍ୱାରା ସେ ଯେ ବିଶେଷ ପରିମାଣରେ ଅନୁପ୍ରାଣିତ ହୋଇଥିଲେ, ଏହା ନିଃସନ୍ଦେହ । 'ଭାଗବତ'ରେ ମଧୁର ଭକ୍ତି ବା ମଧୁର ରସର ଉତ୍କୃଷ୍ଟ ପରିଚୟ ମିଳୁ ନ ଥିଲେ ମଧ୍ୟ ରାସକ୍ରୀଡ଼ା, କୃଷ୍ଣ-ଗୋପୀମାନଙ୍କର ସମ୍ବନ୍ଧ ନିର୍ଣ୍ଣୟ ଓ ବଂଶୀବାଦନ ଫଳରେ ଗୋପାଙ୍ଗନାମାନଙ୍କର ମାନସିକ ପରିବର୍ତ୍ତନ, ଏସବୁ ଦେଖିଲେ ମନେହୁଏ, ଉକ୍ତ ଗ୍ରନ୍ଥରେ କ୍ଷୀଣ ଭାବରେ ମଧୁର ଭାବ ଓ ପରକୀୟା ରସର ସଙ୍କେତ ବିଦ୍ୟମାନ । ଭାଗବତର ରାସପଞ୍ଚାଧ୍ୟାୟୀର ନିମ୍ନୋକ୍ତ ଶ୍ଳୋକରେ ପରକୀୟା ରସର ସନ୍ଧାନ ମିଳେ ।

ଯତ୍ତ୍ୱ ପତ୍ୟପତ୍ୟସୁହୃଦାମନୁବୃତ୍ତି ରଙ୍ଗମ୍
ସ୍ତ୍ରୀଣାଂ ସ୍ୱଧର୍ମ ଇତି ଧର୍ମବିଦତ୍ୱୟୋକ୍ତଂ
ଅସ୍ତ୍ୱେବମେତଦୁପଦେଶପଦେ ତ୍ୱୟୀଶେ
ପ୍ରେଷ୍ଠୋ ଭବାନ୍ ତନୁଭୃତାଂ କିଲ ବନ୍ଧୁରାତ୍ମା ।। ଭାଗବତ ।।

ଅର୍ଥାତ୍—ସ୍ୱାମୀ, ପୁତ୍ର, ମିତ୍ରମାନଙ୍କର ମନ ଧରି କାର୍ଯ୍ୟ କରିବା ସ୍ତ୍ରୀମାନଙ୍କର ସ୍ୱଧର୍ମ ବୋଲି ଧର୍ମଜ୍ଞ ଆପଣ ଯାହା କହୁଅଛନ୍ତି, ତାହା ଜଗତର ସ୍ୱାମୀ ଉପଦେଶ ପ୍ରବୀଣ ଆପଣଙ୍କଠାରେ ପ୍ରଯୁକ୍ତ ହେଉ । କାରଣ ଆପଣ ସମସ୍ତ ପ୍ରାଣୀଙ୍କର ସର୍ବୋତ୍ତମ ଅନ୍ତରଙ୍ଗ ବନ୍ଧୁ ଓ ଆତ୍ମା ସ୍ୱରୂପ । ଭାଗବତ ବ୍ୟତୀତ "ଗୀତଗୋବିନ୍ଦ"ଟି ପରିପୂର୍ଣ୍ଣ ଭାବରେ ଉକ୍ତ ମଧୁର ରସର ଆଶ୍ରୟ ଗ୍ରହଣ କରିଛି । "କୃଷ୍ଣ କର୍ଣ୍ଣାମୃତ"ରେ ବାତ୍ସଲ୍ୟରସ ସ୍ଥାୟୀ ହେଲେ ମଧ୍ୟ ମଧୁର ରସର ସୂଚନା ଅଛି । ପୁନଶ୍ଚ ଆଲୱାର ଗାଥାରେ କେତେଗୁଡ଼ିଏ ସଙ୍ଗୀତ ଅଛି । ସେଗୁଡ଼ିକରେ ଭଗବାନଙ୍କୁ ପତି ରୂପେ ଉପାସନା କରିବାର ନିଦର୍ଶନ ପ୍ରଦତ୍ତ ହୋଇଅଛି । ଏଠାରେ ଗୋଟିଏ ପ୍ରଶ୍ନ ସ୍ୱତଃ ମନରେ ଜାଗିଥାଏ । "ଆଲୱାର ଗାଥା" ପ୍ରାଚୀନ ନା ଭାଗବତ ଆଲୱାର ଗାଥାଠାରୁ ପ୍ରାଚୀନ ? କେହି କେହି ପ୍ରମାଣ କରିବାକୁ ଚେଷ୍ଟାକରନ୍ତି ଯେ, ଭାଗବତ ଆଲୱାର ଗାଥା ଅପେକ୍ଷା ପ୍ରାଚୀନତର; କାରଣ ଭାଗବତର ଏକ ଶ୍ଳୋକ ଆଲୱାର ଗାଥାରେ ପରିଦୃଷ୍ଟ । ପୁଣି ଆଉ କେହି ଏହାକୁ ପ୍ରକ୍ଷିପ୍ତ ବୋଲି କହି ଆଲୱାର ଗାଥାର ପ୍ରାଚୀନତା ସମ୍ବନ୍ଧରେ ପ୍ରବଳ ମତ ପୋଷଣ କରନ୍ତି । ଯାହାହେଉ ଉପରୋକ୍ତ ଗ୍ରନ୍ଥ ଆଲୋଚନା କରି ଚୈତନ୍ୟ ତାଙ୍କ ଭକ୍ତିରେ ଏହି ମଧୁର ଭାବର ପରିଚୟ ଦେଇଅଛନ୍ତି । ପରକୀୟା ରସର ପରିଚୟ ଆମ୍ଭେମାନେ ଚୈତନ୍ୟଙ୍କଠାରୁ ପ୍ରତ୍ୟକ୍ଷ ଭାବରେ ନ ପାଇଲେ ମଧ୍ୟ ସେ ଯେ ତାର ସମର୍ଥକ ଥିଲେ,

ଏହା ଅନୁମାନ କରାଯାଇପାରେ; କାରଣ ପରବର୍ତ୍ତୀ କାଳରେ ତାଙ୍କର ଉପଯୁକ୍ତ ଓ ଅତି ଅନ୍ତରଙ୍ଗ ଶିଷ୍ୟ ଅଦ୍ୱିବାଦିତ ରୂପ ଗୋସ୍ୱାମୀ ଓ ଶ୍ରୀଜୀବ ଗୋସ୍ୱାମୀ ପ୍ରଭୃତି ସେମାନଙ୍କର ଗ୍ରନ୍ଥରେ ଏହି ସ୍ୱକୀୟା-ପରକୀୟାର ଭେଦ ଦେଖାଇ ପରକୀୟାର ଶ୍ରେଷ୍ଠତ୍ୱ ପ୍ରମାଣିତ କରିଅଛନ୍ତି । ସେମାନେ ହୁଏ ତ ଚୈତନ୍ୟଙ୍କର ଭାବଧାରାରୁ ଏହା ଗ୍ରହଣ କରିଥିବେ । ଶାନ୍ତ, ଦାସ୍ୟ, ସଖ୍ୟ ଓ ବାତ୍ସଲ୍ୟ ରସ ଭାଗବତରେ ଆଲୋଚିତ ହୋଇଛି । ମାତ୍ର ମଧୁର ଅଧିକ ପରିମାଣରେ ବ୍ରଜଭୂମିରେ ହିଁ ଆଲୋଚିତ ଓ ଆସ୍ୱାଦିତ ହୋଇଛି ଏବଂ ମଧୁର ସର୍ବାପେକ୍ଷା ଉତ୍କୃଷ୍ଟ ବୋଲି ପ୍ରମାଣ କରାଯାଇଅଛି । ରାୟରାମାନନ୍ଦ ଓ ଚୈତନ୍ୟଦେବଙ୍କ କଥୋପକଥନରେ କ୍ରମାନ୍ୱୟରେ ସ୍ୱଧର୍ମାଚରଣ, କୃଷ୍ଣକର୍ମାର୍ପଣ, ସ୍ୱଧର୍ମତ୍ୟାଗ, ଜ୍ଞାନମିଶ୍ରା, ଜ୍ଞାନଶୂନ୍ୟା, ପ୍ରେମଭକ୍ତି, ଦାସ୍ୟ, ସଖ୍ୟ, ବାତ୍ସଲ୍ୟରୁ ଶେଷରେ କେବଳ କାନ୍ତାପ୍ରେମରେ ରାଧାର ଶ୍ରେଷ୍ଠତ୍ୱ ବଜାୟ ରହିଛି । ଅବଶ୍ୟ ଓଡ଼ିଶାଭୂଇଁରେ ଓଡ଼ିଆଠାରୁ ବଙ୍ଗପ୍ରବାସୀ ଚୈତନ୍ୟ ଏକଥା ଶୁଣି ତାକୁ ସମର୍ଥନ କରିଅଛନ୍ତି । ଏହି କାନ୍ତାପ୍ରେମ ହିଁ ସାଧଶିରୋମଣି । କାରଣ ଏଠାରେ ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟର ଧର୍ମ ତ ଅଛି, ଅଧିକନ୍ତୁ ମଧୁରରେ ନିଜାଙ୍ଗ ଦାନ ଦ୍ୱାରା ଯେଉଁ ସେବା ଓ ଆତ୍ମସମର୍ପଣ ଅଛି, ତାହା ଅନ୍ୟତ୍ର ଦୁର୍ଲ୍ଲଭ । ପୁନଶ୍ଚ ରାୟ କହିଲେ—

"ଏହା ମଧ୍ୟେ ରାଧାର ପ୍ରେମ ସାଧ୍ୟଶିରୋମଣି
"ଯାହାର ମହିମା ସର୍ବଶାସ୍ତ୍ରେତେ ବାଖାନି ।"

ଶାନ୍ତରେ ଶ୍ରୀକୃଷ୍ଣଙ୍କଠାରେ ନିଷ୍ଠା— ଦାସ୍ୟରେ ଶ୍ରୀକୃଷ୍ଣଙ୍କ ଚରଣସେବା ଥିବାରୁ ଏହା ସର୍ବସୌରଭପ୍ରାପ୍ତ । ଏହା ସର୍ବଜନର ଅଚରଣଯୋଗ୍ୟ । ମାତ୍ର ଦାସ୍ୟପ୍ରେମରେ ଅଧିକ ଗୌରବ ମିଶ୍ରିତ ଥିବାରୁ ତାହା ସଖ୍ୟ ଅପେକ୍ଷା ନ୍ୟୂନ । ସଖ୍ୟ ନିର୍ମଳ ଶୁଦ୍ଧ ପ୍ରୀତିମୟ । ଶୁଦ୍ଧପ୍ରୀତିର ସମତା ଓ ଭାବମୟ ବିଶ୍ୱାସ ପ୍ରଚୁର ସଖ୍ୟ ପ୍ରେମଠାରୁ ଅନୁଗ୍ରହମୟୀ ରତି ସମ୍ଭବ ବ୍ରଜର ବାତ୍ସଲ୍ୟ ପ୍ରେମ ଉତ୍କୃଷ୍ଟତର । ବାତ୍ସଲ୍ୟ ପ୍ରେମରେ ତାଡ଼ନ, ଭର୍ତ୍ସନ, ଗର୍ବ, ମଦୀୟତା ଭାବର ଲାଳନ ବିଦ୍ୟମାନ ଥିବାରୁ ତାହାର ବଳ, ଲାଳିତ୍ୟ ଓ ମଧୁରତା ସଖ୍ୟପ୍ରେମ ଅପେକ୍ଷା ଅଧିକତର । ଅଥଚ ଦାସ୍ୟ ଓ ସଖ୍ୟର ଗୁଣ ମଧ୍ୟ ସେଥିରେ ଅନ୍ତର୍ଗର୍ଭିତ ଥିବାରୁ ଉତ୍ତମ ପ୍ରେମ ହେଲେ ମଧ୍ୟ ଅବଧିପ୍ରାପ୍ତ ପ୍ରେମ ନୁହେଁ । କାନ୍ତପ୍ରେମ:— ପ୍ରେୟସୀ ନିସେବିତ ବ୍ରଜକାନ୍ତଙ୍କ ପ୍ରେମ ହିଁ ସର୍ବଭାବରେ ଅନ୍ତର୍ଗର୍ଭିତାରେ ଓ ସର୍ବବାଧ ଅସଙ୍କୋଚ ସେବାର ପରାକାଷ୍ଠା ପରିଣତି ପ୍ରାପ୍ତ ସାଧର ଅବଧି । ଏହାର ନାମାନ୍ତର ମଧୁର ରସ । ଉପରୋକ୍ତ ଚାରୋଟି ରସର ଗୁଣ ସହ କୃଷ୍ଣାଙ୍ଗରେ ନିଜ ଅଙ୍ଗ ସମର୍ପଣ ଦ୍ୱାରା ତତ୍ସୁଖ ସାଧନରୂପ ସ୍ୱୀୟ ଗୁଣରେ ସମନ୍ୱିତ ହୋଇ ମଧୁର ରସ ପଞ୍ଚଗୁଣାନ୍ୱିତ ଓ ସର୍ବଶ୍ରେଷ୍ଠ । ଏହି ମଧୁର ରସ ଦ୍ୱିବିଧ:— (୧) ବିବାହବିଧିର ଅଧୀନ ସ୍ୱକୀୟ ଭାବର ଆଚରଣରେ ନିର୍ଦ୍ଦିଷ୍ଟଗତ ମଧୁର ରସ । (୨) ବିବାହବିଧିର ଅନଧୀନ ପ୍ରବଳ ପ୍ରେମର

ପ୍ରାବଲ୍ୟରେ ସ୍ୱକୀୟ ପରକୀୟ ଉଭୟ ଭାବର ନିର୍ବିଘ୍ନରେ ବିରାଜିତ ପରବ୍ୟୋମର ମଧୁର ରସ । (୩) ପ୍ରେମର ସର୍ବୋଚ୍ଚ ସ୍ତରରୂପା ସର୍ବଥା ସ୍ୱାଧୀନ ଓ ସୁବିକାନ୍ତ ଯେ ମହାଭାବ ବା ତଦାତ୍ମକ ଅମିଶ୍ର ପରକୀୟ ଭାବମୟ ବ୍ରଜର ମଧୁର ରସ । ତେଣୁ ଲକ୍ଷ୍ମୀ ସୀତା ପ୍ରଭୃତିଙ୍କର ପ୍ରେମରେ କାମ ଗନ୍ଧ ଅଛି, ମାତ୍ର ବ୍ରଜଗୋପୀର ପ୍ରେମ ତତ୍‌ଶୂନ୍ୟ; କେବଳ କୃଷ୍ଣସୁଖ-ତାତ୍ପର୍ଯ୍ୟରେ ପର୍ଯ୍ୟବସିତ । ଏହି ମଧୁର ରସରେ ଗୋପୀଭାବ ତ୍ରିବିଧ:—(୧) କାନ୍ତାଭି-ମାନମୟ (୨) କାନ୍ତାର ସଖୀ—ଏହି ଅଭିମାନମୟ (୩) ଦାସୀ ଅଭିମାନମୟ । ସର୍ବବିଧ ଗୋପୀଭାବ ହିଁ କୃଷ୍ଣସୁଖତାତ୍ପର୍ଯ୍ୟମୟ । ତଥାପି ଶ୍ରୀରାଧାଙ୍କର ଦାସୀ ଭାବରେ ହିଁ ଗୌଡ଼ୀୟ ବୈଷ୍ଣବ ସମ୍ପ୍ରଦାୟର ଭଜନ ।

ଚୈତନ୍ୟାନୁଗତବାଦୀମାନେ ମଧ୍ୱାଚାର୍ଯ୍ୟଙ୍କର ନଅଟି ପ୍ରମେୟ ସ୍ୱୀକାର କରିଅଛନ୍ତି । (୧) ବିଷ୍ଣୁ ହିଁ ପରମ ସତ୍ୟ (୨) ବିଷ୍ଣୁ ହିଁ ବେଦାଦି ପ୍ରତିପାଦ୍ୟ (୩) ଜଗତର ପ୍ରତିପାଦ୍ୟ (୪) ଜଗତର ସତ୍ୟତ୍ୱ (୫) ଈଶ୍ୱରଠାରୁ ଜୀବର ଭେଦ ସତ୍ୟ (୬) ଈଶ୍ୱର ପ୍ରଭୁର ଜୀବ ସେବକ (୭) ଜୀବଗଣରେ ତାରତମ୍ୟ ଅର୍ଥାତ୍ ଉତ୍କୃଷ୍ଟ ଅପକୃଷ୍ଟ ଭାବ (୮) ବିଷ୍ଣୁ-ପାଦ ଲଭ ମୁକ୍ତି (୯) ବିଶୁଦ୍ଧ ଭକ୍ତି ମୋକ୍ଷ ହେତୁତ୍ୱ । ପ୍ରମେୟର ଉପାୟ ସ୍ୱରୂପ ତିନୋଟି ପ୍ରମାଣ ଯଥା:— ପ୍ରତ୍ୟକ୍ଷ, ଅନୁମାନ, ଶବ୍ଦର ଅନୁମୋଦନ । ଏହା ବ୍ୟତୀତ ସେମାନେ ଜୀବ-ବ୍ରହ୍ମର ଐକ୍ୟ ଜଗତରେ ମିଥ୍ୟା ସ୍ଥାପନ ସକାଶେ ବିବର୍ତ୍ତବାଦ ଓ ପ୍ରଣବର ମହା-ବାକ୍ୟତ୍ୱ ଆଚ୍ଛାଦନ କରି ତତ୍ତ୍ୱମସ୍ୟାଦି ପ୍ରାଦେଶିକ ବାକ୍ୟର ମହାବାକ୍ୟତ୍ୱ ସ୍ୱୀକାର, ଜ୍ଞାନ ବିଶେଷ ରୂପ ଭକ୍ତିର ପ୍ରାଧାନ୍ୟ ଅସ୍ୱୀକାର ପୂର୍ବକ ଜ୍ଞାନ ସମାନ୍ୟର ପ୍ରାଧାନ୍ୟ ପ୍ରେମରୂପ ପରମପୁରୁଷାର୍ଥ ଉଲ୍ଲେଖ ନ କରି ମୋକ୍ଷରୂପ ପୁରୁଷାର୍ଥର ସ୍ୱୀକାର କରିଅଛନ୍ତି । ବୈଷ୍ଣବ-ମାନଙ୍କ ମତରେ ବ୍ରହ୍ମ ଶବ୍ଦର ମୁଖ୍ୟାର୍ଥ ଦ୍ୱାରା ଅସମୋର୍ଦ୍ଧ୍ୱ, ଷଡୈଶ୍ୱର୍ଯ୍ୟ ପରିପୂର୍ଣ୍ଣ ଶ୍ରୀଭଗବାନ ହିଁ ବୋଧିତ ହୁଅନ୍ତି । ଅସମୋର୍ଦ୍ଧ୍ୱ, ଷଡ୍‌ବିଭୂତିବିଶିଷ୍ଟ ଶ୍ରୀଭଗବାନର ଦେହ ମଧ୍ୟ ଚିନ୍ମୟ । ପୁରୁଷସୂକ୍ତ ମନ୍ତ୍ରରେ ଯେ ତ୍ରିପାଦ ବିଭୂତି ଉକ୍ତ ହୋଇଅଛି, ତାହା ହିଁ ଭଗବାନଙ୍କର ଷଡ୍‌ବିଭୂତି ପରି ଷଡ୍‌ବିଗ୍ରହ ସ୍ୱୀକୃତ ହୋଇଅଛି । ଏହି ଷଡବିଗ୍ରହକୁ ଭକ୍ତ ଚିରଦିନ ଅନୁଭବ କରି ଆସୁଅଛି । ଯେପରି ରାଗରାଗିଣୀର ମୂର୍ତ୍ତି ସଙ୍ଗୀତ ସାଧକର ଅନୁଭୂତ ହୁଏ, ସେହିପରି ଭଗବତ ମୂର୍ତ୍ତି ଭକ୍ତ ଅନୁଭବ କରେ । ବିଗ୍ରହ ସ୍ୱୀକାର ନ କରିଲେ ଭଗବାନଙ୍କର ନିତ୍ୟଲୀଳା ଓ ନିତ୍ୟଲୋକ ସ୍ୱୀକାର କରାଯାଇ ପାରିବ ନାହିଁ । ଏହି ବ୍ରହ୍ମ ଅପରିଣାମିନୀ ସ୍ୱରୂପା ଶକ୍ତି ଦ୍ୱାରା ନିମିତ୍ତ, କାରଣ ଓ ପରିଣାମିନୀ ମାୟା ଶକ୍ତି ଦ୍ୱାରା ବିଶ୍ୱର ଉପାଦାନ କାରଣ ହୁଅନ୍ତି । ଜଗତ ବ୍ରହ୍ମର ଶକ୍ତିବିଶେଷ । ଏକ ଦେଶସ୍ଥିତ ଅଗ୍ନିର ପ୍ରସାରିଣୀଶକ୍ତି ପରି କୂଟସ୍ଥ ବ୍ରହ୍ମର ପ୍ରସାରଣୀଶକ୍ତି ଜଗତ । ସଚ୍ଚିଦାନନ୍ଦ ବିଗ୍ରହ ଶ୍ରୀକୃଷ୍ଣ ହିଁ ପରମେଶ୍ୱର ।

ଈଶ୍ୱରଃ ପରମଃ କୃଷ୍ଣଃ ସଚ୍ଚିଦାନନ୍ଦବିଗ୍ରହଃ
ଅନାଦିରାଦିର୍ଗୋବିନ୍ଦ ସର୍ବକାରଣ କାରଣମ୍ ।।—ବ୍ରହ୍ମସଂହିତା ।
ପୁନଶ୍ଚ—ଏତେଚାଂଶ କଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ ସ୍ୱୟମ୍
ଇନ୍ଦ୍ରାରି ବ୍ୟାକୁଳଂ ଲୋକଂ ମୃଡ଼ୟନ୍ତି ଯୁଗେ ଯୁଗେ । ଶ୍ରୀମଦ୍ଭାଗବତ ।

ଶ୍ରୀକୃଷ୍ଣ ହିଁ ପରମେଶ୍ୱର । ସେ ଅବତାରୀ । ସେ ସକଳର ଆଦି । ସେ ସର୍ବକାରଣ, ସର୍ବେଶ୍ୱର, ସର୍ବରୂପ ଓ ସର୍ବରସ ସମ୍ପୂର୍ଣ୍ଣ । ଶ୍ରୀକୃଷ୍ଣ ଶ୍ରୀବୃନ୍ଦାବନରେ ନିତ୍ୟବିରାଜିତ ଅପ୍ରାକୃତ ନବୀନ ମଦନ । ସେ ପ୍ରାକୃତ ଓ ଅପ୍ରାକୃତ ମଦନର ମୂଳାଶ୍ରୟ । ସେ ନିତ୍ୟବୃନ୍ଦାବନରେ ବିରାଜିତ ହୋଇ ମଧ୍ୟ ନିତ୍ୟନୂତନ ରୂପରେ ପ୍ରକଟିତ ହୁଅନ୍ତି । ସେ କୋଟିକନ୍ଦର୍ପଲାବଣ୍ୟ ଏବଂ ପ୍ରାକୃତ ଅପ୍ରାକୃତ କନ୍ଦର୍ପ ସକଳର ମୂଳସ୍ଥାନୀୟ । ଶାସ୍ତ୍ରକାରଗଣ ଏହି ସକାଶେ କାମବୀଜ ଓ କାମଗାୟତ୍ରୀଦ୍ୱାରା ତାଙ୍କର ଉପାସନା କରିବାକୁ ଉପଦେଶ ଦେଇ ଯାଇଅଛନ୍ତି । ସେ ସ୍ତ୍ରୀ ଓ ପୁରୁଷ, ସ୍ଥାବର ଓ ଜଙ୍ଗମ, ସମସ୍ତଙ୍କର ଚିତ୍ତ ଆକର୍ଷଣ କରନ୍ତି । ନାନା ଭକ୍ତର ଆସ୍ୱାଦ୍ୟ ରସ ନାନାପ୍ରକାର । ସେ ଏହି ସମସ୍ତ ରସର ବିଷୟ ଆଶ୍ରୟ । ଶାସ୍ତ୍ରୋକ୍ତ ଏବଂବିଧ ଶ୍ରୀକୃଷ୍ଣ ଗୌଡ଼ୀୟବୈଷ୍ଣବମାନଙ୍କର ଆରାଧ୍ୟଦେବତା । ଏହି ଶ୍ରୀକୃଷ୍ଣର ନାମ ଋକ୍‌ବେଦରେ ଉଲ୍ଲେଖ ଅଛି ବୋଲି ତତ୍ତ୍ୱବିଦ୍‌ମାନେ ପ୍ରମାଣିତ କରନ୍ତି । 'ଛାନ୍ଦୋଗ୍ୟ ଉପନିଷଦରେ' ଅଛି ଯେ ଶ୍ରୀକୃଷ୍ଣ ଘୋର ଅଙ୍ଗୀରସର ଶିଷ୍ୟତ୍ୱ ଗ୍ରହଣ କରିଥିଲେ । ସେ ଜଣେ ପରମ ଯୋଗୀ ଥିଲେ । "ମହାଭାରତରେ" ଓ "ହରିବଂଶରେ" ଶ୍ରୀକୃଷ୍ଣଙ୍କର ଶୈବସାଧନାର କଥା ଉଲ୍ଲେଖ ଅଛି । ସେ ଦଶ ବର୍ଷ ଯୋଗସାଧନା କରିଥିଲେ । ତା ପରେ କୃଷ୍ଣ ଦେଖାଦେଲେ ବ୍ରହ୍ମବୈବର୍ତ୍ତ ପୁରାଣରେ, ତା ପରେ ଜୟଦେବଙ୍କ ଗୀତଗୋବିନ୍ଦରେ ଓ ତାପରେ ବ୍ରଜରେ ଓ ଗୌଡ଼ୀୟ ବୈଷ୍ଣବଧର୍ମ ସାହିତ୍ୟରେ । କିନ୍ତୁ ସେ କୃଷ୍ଣ ଏ କୃଷ୍ଣ ଭିତରେ ଲୀଳାଗତ ପାର୍ଥକ୍ୟ ଅନେକ । ସେହିପରି ରାଧାର ଉଲ୍ଲେଖ ମଧ୍ୟ ଅଥର୍ବ ବେଦରେ ମିଳେ ବୋଲି କେହି କେହି ଅନୁମାନ କରନ୍ତି । ଅଥର୍ବ ବେଦର ବିଶାଖା ନକ୍ଷତ୍ର ଅପର ନାମ ଅନୁରାଧା । ଏହି ଶବ୍ଦରୁ ଅବା ରାଧା ନାମର ଉତ୍ପତ୍ତି । ଇଂରାଜି ପ୍ରଥମ ଶତକରେ ଆନ୍ଧ୍ରବଂଶର ହାଲା ବା ଶାଳିବାହନକୃତ ଆନ୍ଧ୍ରରସପୂର୍ଣ୍ଣ ଏକ ଗ୍ରନ୍ଥରେ ଶ୍ରୀକୃଷ୍ଣ ଓ ଶ୍ରୀରାଧାର ନାମ ମିଳେ । ତୈତ୍ତିରୀୟ" ବ୍ରାହ୍ମଣରେ ଗୋପୀକଥାର ଉଲ୍ଲେଖ ଅଛି । ତୃତୀୟ ଶତକରେ "ଭାସଙ୍କର" ବାଳଚରିତରେ ଶ୍ରୀକୃଷ୍ଣ ଓ ଗୋପଲୀଳାର ପ୍ରସଙ୍ଗ ମିଳେ । ପଞ୍ଚମ ଓ ଷଷ୍ଠ ଶତକରେ ପଞ୍ଚତନ୍ତ୍ରରେ ରାଧାର ନାମ ମିଳେ । ଅଷ୍ଟମ ଶତକରେ ଭଟ୍ଟ ନାରାୟଣଙ୍କ ବେଣୀସଂହାର ନାଟକରେ, ନବମ ଶତକରେ ଧ୍ୱନ୍ୟାଲୋକରେ, ଦଶମ ଶତକରେ ନିମ୍ବାର୍କାଚାର୍ଯ୍ୟ ରାଧାର ନାମ ଉଲ୍ଲେଖ କରିଅଛନ୍ତି । ଏକାଦଶ ଶତକରେ ବିଲ୍ୱମଙ୍ଗଳ ରଚିତ ଶ୍ରୀକୃଷ୍ଣକର୍ଣ୍ଣାମୃତ ଗ୍ରନ୍ଥରେ ରାଧାକୃଷ୍ଣ ଲୀଳାର ବିବରଣୀ ରହିଛି । ଏକନିଷ୍ଠ ଭାବରେ ରାଧାକୃଷ୍ଣଙ୍କୁ ଆମ୍ଭେମାନେ ଦେଖିବାକୁ ପାଇଲୁ

ବ୍ରହ୍ମବୈବର୍ତ୍ତ ପୁରାଣରେ । ଏହି ପୁରାଣର ପଞ୍ଚମ ଖଣ୍ଡ ଓ ଶ୍ରୀକୃଷ୍ଣ ଜନ୍ମ ଖଣ୍ଡରୁ ବିଷୟବସ୍ତୁ ନେଇ ଜୟଦେବ ଲେଖିଲେ ଗୀତଗୋବିନ୍ଦ । ତା ପରେ ଦ୍ୱାଦଶ ଶତକ ବୈଷ୍ଣବ-ସାହିତ୍ୟରେ ରାଧାକୃଷ୍ଣଙ୍କର ଲୀଳା ପ୍ରଚୁର ପରିମାଣରେ ପରିଦୃଷ୍ଟ ହେଲା । ଏହି ରାଧା ଉପାସନା ପଞ୍ଚରାତ୍ର ଆଗମର ଲକ୍ଷ୍ମୀନାରାୟଣ ଉପାସନାରୁ ଗୃହୀତ ବୋଲି କେତେକ ପଣ୍ଡିତଙ୍କ ମତ । ପୁଣି ମହାଯାନ ସମ୍ପ୍ରଦାୟର ଶୂନ୍ୟତା ଓ କରୁଣା ତଥା ପ୍ରଜ୍ଞା ଓ ଉପାୟ ଯଥାକ୍ରମେ ଯୁଗନଦ୍ଧ ଭାବରେ ଭାବୁକବିଶେଷଙ୍କ ଦ୍ୱାରା ରୂପାନ୍ତରିତ ହୋଇ ରାଧାକୃଷ୍ଣ ଆକାରରେ ଦେଖାଦେଲେ ବୈଷ୍ଣବଯୁଗରେ । କିନ୍ତୁ ବୈଷ୍ଣବଦର୍ଶନରେ ମିଳେ କୃଷ୍ଣଙ୍କ ହ୍ଲାଦିନୀଶକ୍ତିରୁ ରାଧାଙ୍କର ଉତ୍ପତ୍ତି । କୃଷ୍ଣଙ୍କର ପ୍ରଧାନ ତ୍ରିବିଧ ଶକ୍ତି. ଯଥା—ଚିତ୍, ମାୟା, ଜୀବ । ଏହା ଅନନ୍ତ ଶକ୍ତି ମଧ୍ୟରୁ ଅନ୍ତରଙ୍ଗା, ବହିରଙ୍ଗା ଓ ତଟସ୍ଥା ନାମରେ ପରିଚିତ । ଏହି ଅନ୍ତରଙ୍ଗା ଶକ୍ତି ହିଁ ସ୍ୱରୂପା ଶକ୍ତି । ସର୍ବଶକ୍ତିର ପ୍ରଧାନ ଶ୍ରୀକୃଷ୍ଣ ସଚ୍ଚିଦାନନ୍ଦ ରୂପ ପ୍ରକାଶେ ତଦୀୟ ସ୍ୱରୂପଶକ୍ତି ତ୍ରିରୂପାତ୍ମିକା, ସନ୍ଧିନୀ, ସମ୍ବିତ ଓ ହ୍ଲାଦିନୀ ।

ସନ୍ଧିନୀ—ପ୍ରଧାନା ଅଧିଷ୍ଠାତ୍ରୀ ବାମାଦି ଗୁରୁବର୍ଗ
ସମ୍ବିତ—ପ୍ରଧାନା ଅଧିଷ୍ଠାତ୍ରୀ ସଖୀବର୍ଗ
ହ୍ଲାଦିନୀ - ପ୍ରଧାନା ଅଧିଷ୍ଠାତ୍ରୀ କାନ୍ତାବର୍ଗ

ଗୌଡ଼ୀୟ ବୈଷ୍ଣବଧର୍ମରେ ସଖୀର ତାତ୍ପର୍ଯ୍ୟ ବିଶେଷ । ସଖୀଗଣଙ୍କଠାରୁ ରାଧା-କୃଷ୍ଣ ଲୀଳା ପୁଷ୍ଟ ହୁଏ । ସଖୀ ବିନା ଏ ଲୀଳା କଦାପି ପୁଷ୍ଟ ହେବ ନାହିଁ । ଯେ ସଖୀ ଭାବରେ ଭଜନ କରେ, ସେ କେବଳ ମାତ୍ର ରାଧାକୃଷ୍ଣଙ୍କର କୁଞ୍ଜସେବାରୂପ ସାଧ୍ୟବସ୍ତୁ ଲାଭ କରନ୍ତି । ଅନ୍ୟ ଉପାୟରେ ହୋଇପାରିବ ନାହିଁ । ସଖୀଗଣ ସଙ୍ଗମବିମୁଖିନୀ । କେବଳ ରାଧାକୃଷ୍ଣଙ୍କର ମିଳନ ଘଟାଇ ଏମାନେ ତହିଁରୁ ହିଁ କୋଟିଗୁଣ ସୁଖ ଲାଭ କରି ସୁଖୀ ହୁଅନ୍ତି ।

ଗୋବିନ୍ଦଲୀଳାମୃତରେ ଅଛି:—
ବିଭୁରପି ସୁଖରୂପଃ ସ୍ୱ ପ୍ରକାଶୋଽପିଭାବଃ
କ୍ଷଣମପି ନହି ରାଧାକୃଷ୍ଣୟୋର୍ଯା ଋତେସ୍ୱାଃ
ପ୍ରବହତି ରସପୁଷ୍ଟିଂ ଚିଦ୍‌ବିଭୂତୀରିବେଶଃ
ଶ୍ରୟତି ନ ପଦମାସାଂ କଃ ସଖୀନାଂ ରସଜ୍ଞଃ ।୧୦।୧୭

ଅର୍ଥ:—ଈଶ୍ୱର ଯେପରି ନିଜ ଚିତ୍‌ଶକ୍ତିର ବିଭୂତି ବ୍ୟତୀତ ପୁଷ୍ଟି ଲାଭ କରନ୍ତି ନାହିଁ, ସେହିପରି ରାଧାକୃଷ୍ଣଙ୍କର ଭାବ ସର୍ବବ୍ୟାପକ, ଆନନ୍ଦଘନ ଓ ସ୍ୱପ୍ରକାଶ ହେଲେ ମଧ୍ୟ ସଖୀ ବ୍ୟତୀତ କ୍ଷଣକାଳ ପ୍ରକାଶେ ମଧ୍ୟ ରସ ପୋଷଣ କରିବାକୁ ସମର୍ଥ ହୁଏ ନାହିଁ । ଅତଏବ ଏହି ସଖୀଗଣଙ୍କର ପଦ କେଉଁ ରସଜ୍ଞବ୍ୟକ୍ତି ଆଶ୍ରୟ ନ କରେ ? ପ୍ରାୟ ସମସ୍ତେ

ଗୌଡ଼ୀୟ ବୈଷ୍ଣବଧର୍ମାବଲମ୍ବୀ କବି । ତାଙ୍କ କାବ୍ୟରେ ସଖୀଭାବର ନିଦର୍ଶନ କରାଇ ଅଛନ୍ତି । ପୁନଶ୍ଚ—ସଖୀଭାବ, ଯଥା :—ନିଜ ସୁଖାର୍ଥ ଶ୍ରୀକୃଷ୍ଣଙ୍କର ସହିତ ଲୀଳାବିଳାସ କରିବାକୁ ସଖୀଗଣଙ୍କର ମନ ଗୃହେଁ ନାହିଁ । ପରନ୍ତୁ ଶ୍ରୀରାଧାକୃଷ୍ଣଙ୍କର ବିଳାସ-ସାଧନ କରାଇ ଆତ୍ମସୁଖଠାରୁ କୋଟି ଗୁଣ ଅଧିକ ସୁଖ ସେମାନଙ୍କର ହୁଏ । କାରଣ ଶ୍ରୀରାଧା—କୃଷ୍ଣ ପ୍ରେମର କଳ୍ପଲତା ଏବଂ ସଖୀଗଣ ସେହି ଲତାର କିଶଳୟ ଫୁଲ ପତ୍ର ସ୍ୱରୂପ । ତେଣୁ ଯେପରି ଲତାର ମୂଳରେ ଜଳସିଞ୍ଚନ ଦ୍ୱାରା ପଲ୍ଲବାଦିର ପ୍ରଫୁଲ୍ଲତା ବୃଦ୍ଧି ପାଏ, ସେହିପରି ଶ୍ରୀରାଧା ଶ୍ରୀକୃଷ୍ଣଙ୍କ ଲୀଳାମୃତରେ ଅଭିସିଞ୍ଚିତ ହେଲେ ତଦପେକ୍ଷା ସଖୀମାନଙ୍କର ମଧ୍ୟ ଅଧିକତର ସୁଖଲାଭ ହୁଏ ।

ଏହିପରି ଜ୍ୱଳନ୍ତ ଉଦାହରଣ ଗୋବିନ୍ଦଲୀଳାମୃତରେ ମିଳେ ।
ସଖ୍ୟଃ ଶ୍ରୀରାଧିକାୟା ବ୍ରଜକୁମୁଦବିଧୋହ୍ଲା'ଦିନୀ ନାମ ଶକ୍ତେଃ
ସାରାଂଶଃ ପ୍ରେମବଲ୍ୟାଃ କିଶଳୟଦଳପୁଷ୍ପାଦି ତୁଲ୍ୟାଃ ସ୍ୱତୁଲ୍ୟାଃ
ସିକ୍ତାୟାଂ କୃଷ୍ଣଲୀଳାମୃତରସନିଚୟୈ ରୁଲ୍ଲସନ୍ତ୍ୟାମମୁଷ୍ୟାଂ
ଯାତୋଲ୍ଲାସାଂ ସ୍ୱସେକାଚ୍ଛତଗୁଣଧିକଂ ସନ୍ତି ଯତ୍ତନ୍ନ ଚିତ୍ରଂ ।

ବ୍ରଜବନ ରୂପ କୁମୁଦ ସମୂହର ଅହ୍ଲାଦକ ଶ୍ରୀକୃଷ୍ଣରୂପ ଚନ୍ଦ୍ରର ହ୍ଲାଦିନୀ ନାମ୍ନୀ ଆନନ୍ଦପ୍ରଦା ଶକ୍ତିର ସାରାଂଶ ସଂଭୂତା ପ୍ରେମଲତା ଶ୍ରୀରାଧାର ସଖୀଗଣ ସେହି ପ୍ରେମଲତାର କିଶଳୟ,ଫୁଲ, ପତ୍ରାଦି ତୁଲ୍ୟ । ଅତଏବ ସେମାନେ ମଧ୍ୟ ଶ୍ରୀରାଧାସଦୃଶା । ତେଣୁ ଶ୍ରୀକୃଷ୍ଣଲୀଳାମୃତ ରସ ଦ୍ୱାରା ରାଧା-ଲତା ସିକ୍ତ ହୋଇ ଉଲ୍ଲସିତ ହେଲେ ତଦଙ୍ଗ ସଦୃଶା ସଖୀମାନଙ୍କର ସ୍ୱାୟୀ ସେଚନ ସୁଖ ଅପେକ୍ଷା ଯେ ଶତଗୁଣ ଅଧିକ ସୁଖ ହୁଏ, ଏହା ଆଶ୍ଚର୍ଯ୍ୟ ନୁହେଁ । ବର୍ତ୍ତମାନ ରାଧା ଓ ଗୋପୀର ସ୍ୱରୂପ ଆଲୋଚନା କରିବାକୁ ଗଲେ ନିମ୍ନୋକ୍ତ ଶ୍ଳୋକଟିର ଆବଶ୍ୟକତା ଅପରିହାର୍ଯ୍ୟ ହୋଇପଡ଼େ । ଭାଗବତରେ ରାଧା ନାମର ସଙ୍କେତ ଅଛି ବୋଲି ନିମ୍ନ ଶ୍ଳୋକକୁ ଉଦାହରଣରେ ନେଇଅଛନ୍ତି ।

ରାଧା କିଏ—ଅନୟାରାଧିତୋ ନୂନଂ ଭଗବାନ୍ ହରିରୀଶ୍ୱରଃ
ଯନ୍ନୋ ବିହାୟ ଗୋବିନ୍ଦ ପ୍ରୀତୋ ଯାମନୟଦ୍ରହଃ ॥
( ଶ୍ରୀମଦ୍ଭାଗବତ )

ପୁଣି ଗୋପୀର ସ୍ୱରୂପ ନିର୍ଣ୍ଣୟରେ ଲଘୁଭାଗବତାମୃତରେ ଅଛି :—

ଗୋପୀ କିଏ—"ସହାୟା ଗୁରବଃ ଶିଷ୍ୟା ଭୁଜିଷ୍ୟା ବାନ୍ଧବାଃ ସ୍ତ୍ରିୟଃ
ସତ୍ୟଂ ବଦାମି ତେ ପାର୍ଥ ଗୋପ୍ୟଃ କିଂ ମେ ଭବନ୍ତି ନ
ମନ୍ମାହାତ୍ମ୍ୟଂ ମତ୍ ସପର୍ଯ୍ୟାଂ ମତ୍ ଶ୍ରଦ୍ଧାଂ ମନ୍ମନୋଗତଂ
ଜାନନ୍ତି ଗୋପିକାଃ ପାର୍ଥ ନାନ୍ୟେ ଜାନନ୍ତି ଭାରତ" ॥
( ଲଘୁଭାଗବତାମୃତ )

ରାଧା ଶ୍ରେଷ୍ଠ—ଯେ ନୈଲୋକ୍ୟେ ପୃଥିବୀ ଧନ୍ୟା ଯତ୍ର ବୃନ୍ଦାବନଂ ପୁରମ୍
ତତ୍ରାପି ଗୋପିକା ପାର୍ଥ ଯତ୍ର ରାଧାଭିଧାମମ ।
( ଆଦ୍ୟ ପୁରାଣ ,୪ର୍ଥ ଶ୍ଳୋକ )

ଶ୍ରୀମଦ୍ ଭାଗବତରେ ପ୍ରେମ ଅଛି । ଗୋପୀପ୍ରେମର ପରାକାଷ୍ଠା ଅଛି, କିନ୍ତୁ ନାହିଁ ରାଧାଭାବର ଭଜନ । ବର୍ତ୍ତମାନ ଶ୍ରୀଚୈତନ୍ୟଙ୍କ ଧର୍ମମତ ଆଲୋଚନା କରାଯାଉ । ଶ୍ରୀଚୈତନ୍ୟଙ୍କ ଧର୍ମମତ କଥ , ତାହା ନିମ୍ନୋକ୍ତ ଶ୍ଲୋକଟିରୁ ପ୍ରତୀୟମାନ—

ଆରାଧ୍ୟୋ ଭଗବାନ ବ୍ରଜେଶ ତନୟସ୍ତଦ୍ଧାମ ବୃନ୍ଦାବନ
ରମ୍ୟା କାଚଦୁପାସନା ବ୍ରଜବଧୁବର୍ଗେଣ ଯା କଳ୍ପିତା
ଶାସ୍ତ୍ରଂ ଭାଗବତଂ ପ୍ରମାଣମମଳଂ ପ୍ରେମା ପୁମର୍ଥୋ ମହାନ୍
ଶ୍ରୀଚୈତନ୍ୟ ମହାପ୍ରଭୋର୍ମତମିଦଂ ତତ୍ରାଦରୋ ନଃ ପରଃ ।

ଶ୍ରୀଚୈତନ୍ୟଙ୍କ ମତରେ ଶ୍ରୀକୃଷ୍ଣ ହିଁ ଉପାସ୍ୟ । ତାଙ୍କର ଧାମ ବୃନ୍ଦାବନ । ସେହି ବୃନ୍ଦାବନବାସିନୀମାନେ ମଧୁର ଭାବରେ ଯାହାଙ୍କୁ ଉପାସନା କରିଥିଲେ ତାହା ହିଁ ଉପାସନା । ଏହି ଧର୍ମର ବିଶୁଦ୍ଧ ପ୍ରମାଣ—ଶ୍ରୀମଦ୍‌ଭାଗବତ ଏବଂ ପୁରୁଷାର୍ଥ ହିଁ ପ୍ରେମ । ବର୍ତ୍ତମାନ ଉକ୍ତ ଧର୍ମରେ ବ୍ରଜଭାବ ଓ ପ୍ରେମଶବ୍ଦର ତାତ୍ପର୍ଯ୍ୟ ବିଚାର କରାଯାଉ ।

ବ୍ରଜଭାବ---ଶ୍ରୀକୃଷ୍ଣଙ୍କର ନାମରୂପଗୁଣାଦିର ମହାମାଧୁର୍ଯ୍ୟରେ ମଗ୍ନ ଓ ମୁଗ୍ଧ ହୋଇ ନିଜର ଭଲ ମନ୍ଦ ଲାଭାଲାଭ ସୁଖଦୁଃଖାଦିର ବିଚାର ଭୁଲି ସାଧକଙ୍କ ଶୁଦ୍ଧ ପ୍ରେମରେ ଏକନ୍ତ ସୁଖାର୍ଥ ମାତ୍ର ଯେଉଁ କୃଷ୍ଣସେବା ତାହା ହେଉଛି ବ୍ରଜଭାବ ।

ଐଶ୍ୱର୍ଯ୍ୟଜ୍ଞାନ ଯଥା—ମୁଁ ଯାହାର ପୂଜା କରୁଛି, ସେହି କେବଳ ଦଣ୍ଡ-ପୁରସ୍କାର ପ୍ରଦାନର ଏକମାତ୍ର କର୍ତ୍ତା ମହାପ୍ରଭାବାନ୍ୱିତ ଜଗଦୀଶ୍ୱର । ଏହିପରି ଜ୍ଞାନର ନାମ ଐଶ୍ୱର୍ଯ୍ୟଜ୍ଞାନ ।

ପ୍ରେମ ଶବ୍ଦର ତାତ୍ପର୍ଯ୍ୟ—ରସଶାସ୍ତ୍ରର ନିରୁକ୍ତ ମତରେ ବିନାଶର ଶତସହସ୍ର କାରଣ ବିଦ୍ୟମାନ ଥିଲେ ମଧ୍ୟ ଯାହା ନାଶ ବା ହ୍ରାସ ହୁଏ ନାହିଁ । ଏହି ପ୍ରକାର ମମତ୍ୱ ବୁଦ୍ଧିରେ ପରିପୂର୍ଣ୍ଣ ମସୃଣ ଓ ପ୍ରଗାଢ଼ ନିଃସ୍ୱାର୍ଥ ଭାବର ନାମ ପ୍ରେମ । ସୁତରାଂ ପ୍ରକୃତ ପ୍ରେମ ପ୍ରାକୃତ ଜଗତର ଜିନିଷ ନୁହେଁ । ପୁନଶ୍ଚ ରତିର ପ୍ରଗାଢ଼ ଅବସ୍ଥାର ନାମ ପ୍ରେମ—ଏହି ପ୍ରେମର ସାତପ୍ରକାର ବୈଶିଷ୍ଟ୍ୟ ଓ ଭିନ୍ନ ନାମ ବା ପର ପର ଅବସ୍ଥା ଅଛି ।

୧ । ଯେଉଁ ପ୍ରେମର ସମସ୍ତ ବ୍ୟବହାର ହିଁ ଚିତ୍ତଦ୍ରାବକ, ଅର୍ଥାତ୍ ହୃଦୟକୁ ତରଳେଇ ଦିଏ ଏବଂ ଯେଉଁଥିରେ କ୍ଷଣକାଳ ପାଇଁ ମଧ୍ୟ ପ୍ରିୟବିରହ ଅସହ୍ୟ ହୁଏ, ତାର ନାମ ସ୍ନେହ ।

୨ । ଯିଏ ବାହ୍ୟରେ ଅଦାକ୍ଷିଣ୍ୟ ( ବକ୍ରଭାବ ବ୍ୟବହାର ) ପ୍ରକଟନ ଏବଂ ମାନ-ସାଧକ ଶ୍ରୀକୃଷ୍ଣଙ୍କ ଚେଷ୍ଟାଦିରେ ଅନନୁଭୂତ ମାଧୁର୍ଯ୍ୟ ଅସ୍ୱାଦନ କରାଏ, ତାହାର ନାମ 'ମାନ' ।

୩ । ମାନର ଯେ ପରିବସ୍ଥାରେ ପ୍ରେମ "କୃଷ୍ଣ ମୋର" ଏହି ଭାବୋଦୟ ଏବଂ ବସ୍ତୁତଃ ଆମେ ଦୁଇ ବସ୍ତୁ ନୋହୁଁ, ଏହି ପ୍ରକାର ଅଭେଦମନନ କରାଇଦିଏ, ତାର ନାମ ପ୍ରଣୟ ।

୪ । ପ୍ରଣୟର ପ୍ରଗାଢ଼ତାବଶତଃ କୃଷ୍ଣସଙ୍ଗାଦି ସକାଶେ ସଂଘଟିତ ଅତିଶୟ ଦୁଃଖକୁ ସୁଖ ରୂପରେ ଧରି ନିଆଯାଏ ଏବଂ ପ୍ରତୀତ ହୁଏ, ତାହାର ନାମ ରାଗ ।

୫ । ରାଗର ପ୍ରଗାଢ଼ତାର ଯେତେବେଳେ ସଦାନୁଭୂତ "ପ୍ରିୟତମର" ସୌନ୍ଦର୍ଯ୍ୟ ମାଧୁର୍ଯ୍ୟାଦି ନୂଆ ନୂଆ ଲଗେ ବା ତାକୁ ଚାହିଁବାକୁ ଝାଉଁ ଝାଉଁ ଲଗେ, ତାର ନାମ ଅନୁରାଗ ।

୬ । ସ୍ନେହ ମାନାଦି ପୂର୍ବଲିଖିତ ସକଳ ବୈଶିଷ୍ଟ୍ୟକୁ ଆତ୍ମସାତ୍ କରି ବିଶାଳ ବ୍ୟାପାରରେ ପରିଣତ ହୋଇ ଯେ ପ୍ରେମ ମହାଭାବୋନ୍ମୁଖିତାଦି ନିଜର ପରିଚୟ ନିଜେ ଜଣାଇଦିଏ, ତାହାର ନାମ ଭାବ ।

୭ । ଯାହା ମୁକୁନ୍ଦମହିଷୀଙ୍କର ଦୁଃସମ୍ବେଦ୍ୟ, କେବଳ ମାତ୍ର ବ୍ରଜଦେବୀ ଶ୍ରୀରାଧାର ସମ୍ବେଦ୍ୟ, ତାହା ହିଁ ମହାଭାବ । ( ରାଧା ହିଁ ମହାଭାବ । )
ଚୈତନ୍ୟ ଚରିତାମୃତରେ ଅଛି--

"ହ୍ଲାଦିନୀର ସାର ପ୍ରେମ ପ୍ରେମସାର ଭାବ
ଭାବର ପରମ କାଷ୍ଠା ନାମ ମହା ଭାବ
ମହାଭାବସ୍ୱରୂପା ଶ୍ରୀରାଧା ଠାକୁରାଣୀ
ସର୍ବଗୁଣ ଖନି କୃଷ୍ଣକାନ୍ତା ଶିରୋମଣି ।"

ପୁନଶ୍ଚ କାମ ଓ ପ୍ରେମ—

ଅତ୍ମେନ୍ଦ୍ରିୟ ପ୍ରୀତି ବାଞ୍ଛା ତାରେ ବୋଲି କାମ,
କୃଷ୍ଣେନ୍ଦ୍ରିୟ ପ୍ରୀତି ବାଞ୍ଛା ଧରେ ପ୍ରେମ ନାମ ।

ନିଜ ଇନ୍ଦ୍ରିୟ ଚରିତାର୍ଥର ନାମ କାମ । କାମ ଗାଢ଼ ଅନ୍ଧକାର ପରି ପରମଧର୍ମ ଦର୍ଶନର ବାଧକ । କୃଷ୍ଣଙ୍କ ପ୍ରୀତ୍ୟର୍ଥକ ଭାବର ଓ ବ୍ୟବହାରର ନାମ ପ୍ରେମ । ଅର୍ଥାତ୍ ସ୍ୱକୀୟ ସମ୍ଭୋଗସୁଖ ସାଧନ କାମର ଧର୍ମ । ମାତ୍ର କୃଷ୍ଣସୁଖସାଧନ ପ୍ରେମର ଧର୍ମ । ପ୍ରେମ ସୂର୍ଯ୍ୟ ପରି ନିର୍ମଳ ।

ଗୋପୀପ୍ରେମ— କାମ ଗନ୍ଧହୀନ ସ୍ୱାଭାବିକ ଗୋପୀପ୍ରେମ,
ନିର୍ମଳ ଉଜ୍ଜ୍ୱଳ ଶୁଦ୍ଧ ଯେନ ଦଗ୍‌ଧ ହେମ ।

ରତି—ଶାନ୍ତ, ଦାସ୍ୟ, ସଖ୍ୟ, ବାତ୍ସଲ୍ୟ ଏବଂ ମଧୁର—ଏହି ପଞ୍ଚବିଧ ଭାବର ସ୍ଥାୟୀ ଦଶା ରତି ଏବଂ ରତିର ପ୍ରଗାଢ଼ ଅବସ୍ଥାର ନାମ ପ୍ରେମ । ଗୌଡ଼ୀୟ ଧର୍ମସାହିତ୍ୟରେ ପ୍ରେମବିଳାସ ଶବ୍ଦର ତାତ୍ପର୍ଯ୍ୟ ଅନୁସନ୍ଧେୟ । ଏହି ପ୍ରେମବିଳାସ ଶବ୍ଦର ଅର୍ଥ ପ୍ରେମବୈଚିତ୍ର୍ୟ ବା ପ୍ରେମର ବହିର୍ବିଳାସ । ବିବର୍ତ୍ତ ଶବ୍ଦର ଅର୍ଥ ସମବାୟୀ କାରଣରେ ବିସଦୃଶଂ କାର୍ଯ୍ୟୋତ୍ପତ୍ତି ବା ଅନ୍ୟଥା ଖ୍ୟାତି । ଅତଏବ ପ୍ରେମବିଳାସ ବିବର୍ତ୍ତ ଶବ୍ଦର ଅର୍ଥ ପ୍ରେମର ବହିର୍ବିଳାସର ପୁନର୍ବାର ଅନ୍ତର୍ମୁଖିତା । ପ୍ରେମ ପ୍ରଥମତଃ ବହିର୍ବିଳାସରେ ସ୍ତ୍ରୀ ପୁରୁଷ ଭାବରେ ପ୍ରକାଶିତ ହୁଏ, ପୁଣି ଅନ୍ତର୍ମୁଖୀ ହେଲେ ଉଭୟର ପରୈକ୍ୟ ପ୍ରତିପାଦକ ହୁଏ ।

ଭକ୍ତି କାହାକୁ କୁହାଯାଏ—ଭକ୍ତିରସ୍ୟ ଭଜନଂ ତଦିହାମୁତ୍ରୋପାଧି ନୈରାଶ୍ୟେନ ଶ୍ରୀକୃଷ୍ଣେ ମନଃକଳ୍ପନମେତଦେବଚ ନୈଷ୍କର୍ମ୍ୟମ୍ । ( ଗୋପାଳପୂର୍ବତାପିନୀ )

ପୁନଶ୍ଚ—ସର୍ବୋପାଧି ବିନିର୍ମୁକ୍ତଂ ତତ୍ପରତ୍ୱେନ ନିର୍ମଳମ୍, ହୃଷୀକେନ ହୃଷୀକେଶ ସେବନଂ ଭକ୍ତିରୁତ୍ତମା । ( ନାରଦ ପଞ୍ଚରାତ୍ର )

ଅନ୍ୟତ୍ର ମଧ୍ୟ — ଅନ୍ୟାଭିଲାଷିତାଶୂନ୍ୟଂ ଜ୍ଞାନକର୍ମାଦ୍ୟନାବୃତଂ ଆନୁକୁଲ୍ୟେନ କୃଷ୍ଣାନୁଶୀଳନଂ ଭକ୍ତିରୁତ୍ତମା । (ଭକ୍ତିରସାମୃତସିନ୍ଧୁ)

ଆନୁକୂଲ୍ୟ ସହକାରେ ଶ୍ରୀକୃଷ୍ଣ ଭଜନ ହିଁ ଭକ୍ତି । ଉକ୍ତ ଭଜନଟି ଯଦି ଐହିକ ଓ ପାରତ୍ରିକ ଫଳକାମନାରହିତ ଓ ନିର୍ଭେଦ ବ୍ରହ୍ମାନୁସନ୍ଧାନରୂପ ଜ୍ଞାନ ଏବଂ କର୍ମଯୋଗାଦି ଦ୍ୱାରା ଅନାବୃତ ହୋଇ ଶ୍ରୀକୃଷ୍ଣଙ୍କ ନେତ୍ର ଚିତ୍ତାନୁରଞ୍ଜନାତ୍ମକ ଶ୍ରବଣ କୀର୍ତ୍ତନାଦି ଆକାରରେ ପରିଣତ ହୁଏ ବା ପରିଶୀଳିତ ହୁଏ, ତାହା ହେଲେ ତାକୁ ଉତ୍ତମା ଭକ୍ତି କୁହାଯାଏ । ସର୍ବତୋଭାବରେ ଉପାଧିସକଳ ( କୃଷ୍ଣ ଭିନ୍ନ ଅଭିଲାଷ ସମୂହ ) ପରିତ୍ୟାଗ ପୂର୍ବକ ନିର୍ମଳ ଭାବରେ ( କର୍ମଯୋଗାଦିଦ୍ୱାରା ଅନାବୃତ ରୂପରେ ) ନେତ୍ରାଦି ଇନ୍ଦ୍ରିୟ ସମୂହ ଦ୍ୱାରା ଶ୍ରୀଭଗବାନ ହୃଷୀକେଶଙ୍କର ଯେ ଆନୁକୂଲ୍ୟ ସହକାରେ ସେବନ (କାୟିକ, ବାଚିକ ଓ ମାନସିକ ପରିଶୀଳନ) ତାହାକୁ ଉତ୍ତମା ଭକ୍ତି କହନ୍ତି । ଉକ୍ତ ଉତ୍ତମା ଭକ୍ତି ପୁଣି ସାଧ୍ୟ, ସାଧନ ଭେଦରେ ଦ୍ୱିବିଧ । ତନ୍ମଧ୍ୟରେ ଶ୍ରୀକୃଷ୍ଣ ତଦୀୟ ଭକ୍ତର କୃପାରେ ଇନ୍ଦ୍ରିୟ ସମୂହର ପ୍ରେରଣା ଦ୍ୱାରା ନିଷ୍ପାଦ୍ୟ ଶ୍ରବଣ କୀର୍ତ୍ତନାଦି ନାମ ସାଧନଭକ୍ତି । ଯଦ୍ୟପି ଶ୍ରବଣ କୀର୍ତ୍ତନାଦିରୂପ ଭକ୍ତିର ଅଙ୍ଗ ସକଳକୁ ଆପାତତଃ କର୍ମ ବୋଲି ଓ ସ୍ମରଣାଦି ଅଙ୍ଗ ସକଳକୁ ଆପାତତଃ ଜ୍ଞାନ ବୋଲି ବୋଧହୁଏ, ପ୍ରକୃତ ପକ୍ଷରେ ସେମାନେ ତାହା ନୁହନ୍ତି । ପୂର୍ବୋକ୍ତ ଶ୍ରବଣ କୀର୍ତ୍ତନାଦି ସାଧନ ଭକ୍ତି ଦ୍ୱାରା ଆବିର୍ଭାବିତ ନିତ୍ୟସିଦ୍ଧ ଭାବ ସକଳକୁ ସାଧ-

ଭକ୍ତି କହନ୍ତି । ଏହି ସାଧ୍ୟଭକ୍ତି ପୁଣି ଭାବ ଓ ପ୍ରେମରେ ଦ୍ୱିବିଧ ଏବଂ ଉକ୍ତ ସାଧନଭକ୍ତି ପୁଣି ବୈଧୀ, ରାଗାନୁଗା ଭେଦରେ ଦ୍ୱିବିଧ । ବିଧିପ୍ରବର୍ତ୍ତିତ ବିଧିମାର୍ଗରେ ଭଗବଦ୍-ଭଜନର ନାମ ବୈଧୀ ଓ ରାଗପ୍ରବର୍ତ୍ତିତ ବିଧିମାର୍ଗରେ ଭଗବଦ୍‌ଭଜନର ନାମ ରାଗାନୁଗା —ଅର୍ଥାତ୍ ଶାସ୍ତ୍ରଶାସନ ଉପରେ ଅନୁଷ୍ଠିତ ଭଗବତ ଶ୍ରବଣ କୀର୍ତ୍ତନ ରୂପା ଭକ୍ତିକୁ ବୈଧୀ ଭକ୍ତି ଏବଂ ବ୍ରଜରାଜନନ୍ଦନ ଶ୍ରୀକୃଷ୍ଣ ସେବା ପ୍ରାପ୍ତିର ଲୋଭବଶତଃ ଶ୍ରବଣ କୀର୍ତ୍ତନାଦିରୂପା ଭକ୍ତିକୁ ରାଗାନୁଗା ଭକ୍ତି କୁହାଯାଏ ।

ପ୍ରଥମରେ ଶ୍ରଦ୍ଧା—ପରେ ସାଧୁସଙ୍ଗ—ତତ୍ପରେ ଭଜନନିଷ୍ଠା—ଏହି ଭକ୍ତିକୁ ନାନା ଭାବରେ ନାନା ଶାସ୍ତ୍ରରେ ଆଲୋଚନା କରାଯାଇଛି । ନାରଦ ଭକ୍ତିସୂତ୍ରରେ ଏହାକୁ ପରମ ପ୍ରେମରୂପା ବୋଲି କୁହାଯାଇଛି । "ସା ତସ୍ମିନ୍ ପରମପ୍ରେମରୂପା ଅମୃତ ସ୍ୱରୂପାଚ ।" ଦୈବୀମୀମାଂସାରେ କୁହାଯାଇଛି, ଭକ୍ତି ସାନୁରାଗରୂପା । ସ୍ନେହ ପ୍ରେମ ଶ୍ରଦ୍ଧାଉଦ୍ରେକାଦି ଲୌକିକେଶ୍ୱରାନୁରାଗରୂପା ସା ଦ୍ୱିଧା—ଗୌଣୀ ପରାଚ । ସ୍ୱରୂପ ଦ୍ୟୋତକ ପୂର୍ଣ୍ଣାନନ୍ଦ ପରା—ବୈଧୀ ରାଗାତ୍ମିକା ନାମଭିନ୍ନା—ସାଧନଲଭ୍ୟା ଗୌଣୀ, ବିଧିସାଧ୍ୟମାନାବୈଧୀ, ସୋପାନ ରୂପା ରସାନୁଭାବାନନ୍ଦ ଶାନ୍ତିଦା ରାଗାତ୍ମିକା ଇତ୍ୟାଦି ।

× × × ବୈଧୀ ଭକ୍ତିରେ ଯାହା ଅଛି, ରାଗାନୁରାଗରେ ମଧ୍ୟ ସେଇଆ; ମାତ୍ର ରାଗାନୁରାଗରେ ଭାବବିରୁଦ୍ଧ ଅଙ୍ଗଗୁଡ଼ିକ ବର୍ଜନୀୟ । ପ୍ରେୟସୀତ୍ୱାଭିମାନମୟୀ ରାଗାନୁଗାଭକ୍ତି ବ୍ରହ୍ମବୈବର୍ତ୍ତ ପୁରାଣରେ କାମକଳାରେ ଦେଖାଯାଏ । ସେବକତ୍ୱାଦି ଅଭିମାନମୟୀ ରାଗାତ୍ମିକାରେ ରତି ଓ ଭକ୍ତି ଅନ୍ୟ ପୁରାଣରେ ଦ୍ରଷ୍ଟବ୍ୟ । ରାଗାତ୍ମିକା ଅପେକ୍ଷା ରାଗାନୁଗାର ବିଶେଷ ପ୍ରଶଂସା ଶ୍ରୁତି ଓ ସ୍ମୃତିରେ କରାଯାଇଛି । ଅତଏବ ରାଗାନୁଗା ନିଖିଳ ସାଧନ ମଧ୍ୟରେ ଶ୍ରୀହରିଭକ୍ତି ରାଜରାଜେଶ୍ୱରୀ । ମେହି ଭକ୍ତି ବୈଧୀ ଓ ରାଗାନୁଗାରେ ବିଭକ୍ତ—ବୈଧୀ ଭକ୍ତିର ମୁକୁଟମଣି ସ୍ୱରୂପା ଏହି ରାଗାନୁଗା । ରାଗାନୁଗା ଶ୍ରୀକୃଷ୍ଣଙ୍କର ମୁଖ୍ୟା । ପୁଣି ଭକ୍ତି ସଗୁଣ ଓ ନିର୍ଗୁଣ ଭେଦରେ ଦ୍ୱିବିଧ । ସଗୁଣ ଭକ୍ତିରେ କାମନା ଅଛି ଏବଂ ନିର୍ଗୁଣ ଭକ୍ତିରେ କୌଣସି କାମନା ନାହିଁ । ତେଣୁ ନିର୍ଗୁଣ ଭକ୍ତି ହିଁ ଶ୍ରେଷ୍ଠ । ଶ୍ରୀଭଗବାନଙ୍କୁ କର୍ମାର୍ପଣ ଦ୍ୱିବିଧ । ତନ୍ମଧ୍ୟରୁ ପ୍ରଥମଟି ଶ୍ରୀ ଭଗବତ୍ପ୍ରୀତ୍ୟୁଦ୍ଦେଶ୍ୟକ କର୍ମାର୍ପଣ ଏବଂ ଦ୍ୱିତୀୟଟି କର୍ମଫଳର ବୈଗୁଣ୍ୟ ନିରାସାର୍ଥ ଶ୍ରୀ ଭଗବାନଙ୍କୁ କର୍ମଫଳାର୍ପଣ । ନତ୍ୟ ଭଗବାନ ପରମେଶ୍ୱର ଏହି କର୍ମଦ୍ୱାରା ପ୍ରୀତ ହୁଅନ୍ତି । ଏହିପରି ବୁଦ୍ଧିରେ ସତତ କର୍ମ କରିବାକୁ ଶ୍ରେଷ୍ଠ କୃଷ୍ଣାର୍ପଣ କୁହାଯାଏ । କାମନାପ୍ରାପ୍ତି ନୈଷ୍କର୍ମ୍ୟସିଦ୍ଧି ଓ ଭକ୍ତିଲାଭ ଏହି ତ୍ରିବିଧ ଉଦ୍ଦେଶ୍ୟରେ ପୁରୁଷ ଭଗବାନଙ୍କୁ କର୍ମାର୍ପଣ କରେ । ତନ୍ମଧ୍ୟରେ କାମନାପ୍ରାପ୍ତି ଓ ନୈଷ୍କର୍ମ୍ୟସିଦ୍ଧିର ନିମିତ୍ତ ଯେ କର୍ମାର୍ପଣ, ଏହା ସ୍ୱାର୍ଥସିଦ୍ଧି ନିମିତ୍ତ ହୋଇଥାଏ । ଏହି ଦୁଇ ସ୍ଥଳରେ

ଶ୍ରୀ ଭଗବତପ୍ରୀତି କେବଳ ଆଭାସ ମାତ୍ର । କିନ୍ତୁ ଭକ୍ତି ପ୍ରାପ୍ତି ନିମନ୍ତେ ଯେ କର୍ମାର୍ପଣ ଏହା ପ୍ରକୃତ ଶ୍ରୀଭଗବତ୍‌ପ୍ରୀତ୍ୟର୍ଥ । କାରଣ ଭଗବତ ପ୍ରୀତି ହିଁ ଭକ୍ତିର ସ୍ୱରୂପ । ଅତଏବ ଭଗବତପ୍ରୀତ୍ୟର୍ଥ କର୍ମାର୍ପଣହିଁ ସର୍ବଶ୍ରେଷ୍ଠ—ଭଗବଦର୍ଶୀକାର ( ହେତୁଭୂତା ଭକ୍ତି ) ଶୁଦ୍ଧା ଓ ମିଶ୍ରା ଭେଦରେ ଦ୍ୱିବିଧ—ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କ ନିମିତ୍ତ ବା ଶ୍ରୀକୃଷ୍ଣସମ୍ବନ୍ଧୀ ଆନୁକୂଲ୍ୟବିଶିଷ୍ଟ ଅନୁଶୀଳନ ହିଁ ଭକ୍ତି । ଏହା ଯଦି ଅନ୍ୟାଭିଲାଷଶୂନ୍ୟା ଏବଂ ଜ୍ଞାନ କର୍ମାଦି-ଦ୍ୱାରା ଅନାବୃତ ହୁଏ, ତାହାହେଲେ ଏହାକୁ ଶୁଦ୍ଧାଭକ୍ତି କୁହାଯାଏ । କିନ୍ତୁ ଯଦି ଏହା ଜ୍ଞାନକର୍ମଯୋଗ ଦ୍ୱାରା ମିଶ୍ରିତ ହୁଏ, ତାହା ହେଲେ ଏହାକୁ ମିଶ୍ରାଭକ୍ତି ବୋଲାଯାଏ ।
ମିଶ୍ରାଭକ୍ତି ପୁଣି କର୍ମମିଶ୍ରା, ଯୋଗମିଶ୍ରା ଓ ଜ୍ଞାନମିଶ୍ରା ଭେଦରେ ତ୍ରିବିଧ । ଏମାନେ ପ୍ରତ୍ୟେକେ ପୁଣି ଗୁଣୀଭୂତା, ପ୍ରଧାନୀଭୂତା ଭେଦରେ ଦ୍ୱିବିଧା । ଜ୍ଞାନକର୍ମ ଓ ଅଷ୍ଟାଙ୍ଗ ଯୋଗ ହିଁ ଯେଉଁଥିରେ ପ୍ରଧାନ ଏବଂ ତତ୍‌ଫଳ ସିଦ୍ଧିର ନିମିତ୍ତ ଭକ୍ତି ହିଁ କେବଳ ମାତ୍ର ଯାହାର ସହାୟ ଏବଂ ଅଙ୍ଗ ତାର ନାମ ଗୁଣୀଭୂତାଭକ୍ତି । ଆଉ ଭକ୍ତି ହିଁ ଯେଉଁଠାରେ ପ୍ରଧାନ ଏବଂ ଜ୍ଞାନ, କର୍ମ ବା ଯୋଗ ଯେଉଁଠାରେ ଅଙ୍ଗ ରୂପରେ ସହାୟକ ମାତ୍ର, ତାହାର ନାମ ପ୍ରଧାନୀଭୂତା ଭକ୍ତି । ପୂର୍ବୋକ୍ତ କର୍ମମିଶ୍ରା ଭକ୍ତିର ଅନ୍ୟ ନାମ ଆରୋପସିଦ୍ଧା ଭକ୍ତି । ସେହି କର୍ମମିଶ୍ରା ଭକ୍ତିର ଅଙ୍ଗୀଭୂତ ନିଷ୍କାମକର୍ମ ସକଳ ଶ୍ରବଣ କୀର୍ତ୍ତନାଦିର ନ୍ୟାୟ ସ୍ୱୟଂସିଦ୍ଧ ନୁହେଁ । ଏମାନେ ଭକ୍ତିର କାର୍ଯ୍ୟ ଯେ ଚିତ୍ତଶୁଦ୍ଧି ତାର ଭକ୍ତିତ୍ୱର ଆରୋପରେ ଭକ୍ତିରୂପେ ପ୍ରକାଶିତ । ଅର୍ଥାତ୍ ଭକ୍ତି ନ ହେଲେ ବି ଭକ୍ତିର କାର୍ଯ୍ୟ ଚିତ୍ତଶୁଦ୍ଧ୍ୟାଦି ସମ୍ପାଦନ କରି କଥଂଚିତ୍ ଭକ୍ତିର ଆକାରରେ ଆକାରିତ ହୁଏ ବୋଲି ଏହାକୁ ଆରୋପସିଦ୍ଧା ଭକ୍ତି କୁହାଯାଏ । ଜ୍ଞାନମିଶ୍ରା ଓ ଯୋଗମିଶ୍ରା ଭକ୍ତିର ଅନ୍ୟ ନାମ ସଙ୍ଗସିଦ୍ଧା । ଜ୍ଞାନମିଶ୍ରା ଓ ଯୋଗମିଶ୍ରା ଭକ୍ତିର ଅଙ୍ଗୀଭୂତ ଯେ ଅଧ୍ୟାତ୍ମିକ ଜ୍ଞାନ ବା ସମାଧି ପ୍ରଭୃତି ଶ୍ରବଣ କୀର୍ତ୍ତନ ପରି ସ୍ୱୟଂସିଦ୍ଧ ନୁହେଁ; କାରଣ ଏ ଶ୍ରବଣାଦିରୂପ ଭକ୍ତିର ସଙ୍ଗରେ ରହି ଭକ୍ତିର କାର୍ଯ୍ୟ ଯେ ବ୍ରହ୍ମସାକ୍ଷାତ୍‌କାର ବା ପରମାତ୍ମା ସାକ୍ଷାତ୍‌କାର ବା ଭଗବତ ସାକ୍ଷାତ୍‌କାର, ଏହି ତିନି ମଧ୍ୟରେ ଉପାସକର ଯୋଗ୍ୟତା-ନୁସାରେ ଯେ ଅନ୍ୟତମର ସାକ୍ଷାତ୍‌କାର, ତଦ୍ଦ୍ୱାରା ଆଂଶିକ ଭକ୍ତିର ଆକାର ଆକାରିତ ହୁଏ ବୋଲି ଏମାନଙ୍କୁ ସଙ୍ଗସିଦ୍ଧା କୁହାଯାଏ । ଶୁଦ୍ଧା ଭକ୍ତିକୁ ନିର୍ଗୁଣା ବା ସ୍ୱରୂପସିଦ୍ଧା କୁହାଯାଏ । କର୍ମ ଓ ଜ୍ଞାନାଦି ଏହାର ଅଧୀନ; ଅର୍ଥାତ୍ ମୁଖାପେକ୍ଷୀ ନୁହେଁ । ପରନ୍ତୁ ଏହା ସମ୍ପୂର୍ଣ୍ଣ ସ୍ୱାଧୀନ । ଏହା ସ୍ୱାଧୀନ ଭାବରେ କର୍ମର ଫଳ ଯେ ଚିତ୍ତଶୁଦ୍ଧି ବା ଜ୍ଞାନଯୋଗର ଫଳ ଯେ ମୁକ୍ତି, ଏହି ଉଭୟ ସହିତ ନିଜର ଫଳ ଯେ ଭଗବତ୍ ପ୍ରେମ ଓ ତତ୍‌ସାକ୍ଷାତ୍-କାରି ସକାଶେ ମାଧୁର୍ଯ୍ୟାନୁଭବ ତାହା ପ୍ରଦାନ କରିଥାଏ । ତେଣୁ ଜ୍ଞାନ ଓ କର୍ମ ଉଭୟ ଭକ୍ତିର ଆବଶ୍ୟକ । ଜ୍ଞାନକର୍ମାଦିଦ୍ୱାରା ଅନାବୃତା ସ୍ୱାଧୀନନିଷ୍ଠାବତୀ ଭକ୍ତି ହିଁ ବିଶୁଦ୍ଧା ଏବଂ ସାଧନୀୟା । ଜ୍ଞାନଶୁଦ୍ଧ ସର୍ବେଶ୍ୱର ସର୍ବାଧ୍ୟକ୍ଷ—ସର୍ବଜ୍ଞ ବ୍ରହ୍ମବସ୍ତୁର ଉପାସନା କଦାପି ଭୟ ସଙ୍କୋଚର ସମ୍ଭ୍ରମ ବିରହିତା ଶୁଦ୍ଧାଭକ୍ତିମୟ ହୋଇପାରେ ନାହିଁ । ସୁତରାଂ ତଦବସ୍ଥାରେ ଭଗବତତ୍ତ୍ୱ ଲକ୍ଷଣ ଐଶ୍ୱର୍ଯ୍ୟ ଜ୍ଞାନଟି ଭକ୍ତିର ଜନକ ହୋଇ ତାକୁ ନିଜ

ଶାସନାଧୀନରେ ଚଳାଏ । ଅତଏବ ଜ୍ଞାନକୁ ଅନ୍ତ୍ରସ୍ଥ କରି ଗମନଶୀଳା ଏହିପରି ସଙ୍ଗସିଦ୍ଧା ଭକ୍ତିରେ ସାଧ୍ୟସାର ପ୍ରାପ୍ତି ନାହିଁ । ଭକ୍ତି ଅହୈତୁକୀ ଓ ଅପ୍ରତିହତା । ଭକ୍ତିଦ୍ୱାରା ଆତ୍ମା ଓ ମନ ସୁପ୍ରସନ୍ନ ହୁଏ । କର୍ମ ଭକ୍ତିର ଅଙ୍ଗୀଭୂତ, ଜ୍ଞାନ ମଧ୍ୟ । ମାତ୍ର ସୁଖ ସ୍ୱରୂପ ବୋଲି ଭକ୍ତି ଅହେତୁକୀ । ଶ୍ରବଣ, କୀର୍ତ୍ତନ, ସ୍ମରଣ, ସେବନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ, ଆତ୍ମନିବେଦନ ପ୍ରଭୃତି ନବଧା ଭକ୍ତିହିଁ ଭକ୍ତିର ସ୍ୱରୂପ ଲକ୍ଷଣ । ଯେପରି ସତ୍ୟ ଜ୍ଞାନ ଓ ଅନନ୍ତ ବ୍ରହ୍ମର ସ୍ୱରୂପ ଲକ୍ଷଣ ଏବଂ ଜଗତ ସୃଷ୍ଟ୍ୟାଦି ତଟସ୍ଥ ଲକ୍ଷଣ । ସେହିପରି ନବଧା ଭକ୍ତି ସ୍ୱରୂପ ଓ ଶ୍ରୀକୃଷ୍ଣଙ୍କଠାରେ ପ୍ରେମ ଜନ୍ମିଲେ ତାହା ତଟସ୍ଥ ଲକ୍ଷଣ ରୂପରେ ପରିଗଣିତ ହୁଏ । ଏହି ଭକ୍ତି ପୁଣି— ସାଧନରୂପା, ଭାବରୂପା ଓ ପ୍ରେମରୂପା ଏହି ତିନି ଭାଗରେ ବିଭକ୍ତ । (୧) ସାଧନାରୂପା—ଦାସ୍ୟସଖ୍ୟାଦି ବିଶେଷ ଯେକୌଣସି ରସରେ ସେବାଭିଳାଷରୂପା ଏହା କୃଷ୍ଣପ୍ରାପ୍ତିର ସହାୟ । (୨) ଭାବଭକ୍ତି— ସାଧନଭକ୍ତିଭାବ ଭକ୍ତିର ମଧ୍ୟ ଦେଇ ପ୍ରେମ ଭକ୍ତିରେ ପହଞ୍ଚେ । ସାଧନ ଭକ୍ତିଦ୍ୱାରା ବିଶୋଧିତ ଦେହେନ୍ଦ୍ରିୟ ମନବୁଦ୍ଧି ଭଗବତପ୍ରକାଶଯୋଗ୍ୟ ସ୍ୱଚ୍ଛତା ଧାରଣ କରିଲେ ହିଁ ପ୍ରେମୋଦୟ ହୁଏ । କୃଷ୍ଣକୃପା ହିଁ ଭକ୍ତିପ୍ରାପ୍ତିର ନିଦାନ । କୃପା ହିଁ ଭକ୍ତିଲତାର ମୂଳ, ସାଧନଭକ୍ତିକୁ ଲତା, ଭାବଭକ୍ତିକୁ ପୁଷ୍ପ ଓ ପ୍ରେମଭକ୍ତିକୁ ଫଳ ରୂପରେ କଳ୍ପନା କରାଯାଇଛି । ଏହିପରି ଭାବରେ ଗୌଡ଼ୀୟ ବା ବୈଷ୍ଣବ ଧର୍ମ ସାହିତ୍ୟରେ ପ୍ରେମଭକ୍ତିର ନିଦର୍ଶନ ମିଳେ । ଗୌଡ଼ୀୟମାନେ ଚୈତନ୍ୟଙ୍କୁ ଅବତାର ବୋଲି ଧରିନେଇଛନ୍ତି । ଏଠାରେ କୃଷ୍ଣ ଅବତାରୀ, ଚୈତନ୍ୟ ଶ୍ରୀକୃଷ୍ଣଙ୍କ ଅବତାର । ମାତ୍ର ଉତ୍କଳୀୟ ବୈଷ୍ଣବମାନେ ଜଗନ୍ନାଥଙ୍କୁ ଅବତାରୀ ଏବଂ କୃଷ୍ଣଙ୍କୁ ଅବତାର ବୋଲି ସ୍ୱୀକାର କରନ୍ତି । ଉତ୍କଳୀୟ କେତେକ ବୈଷ୍ଣବ ଯୋଗବାଦୀ, ଜ୍ଞାନବାଦୀ ଏବଂ ଜ୍ଞାନମିଶ୍ରାଭକ୍ତିର ସମର୍ଥକ । ଏହି ଜ୍ଞାନମିଶ୍ରାଭକ୍ତି ଭାଗବତର ମୂଳକଥା ହେଲେହେଁ ଉକ୍ତ ଗ୍ରନ୍ଥରେ ମଧ୍ୟ ଶୁଦ୍ଧାଭକ୍ତିର ନିଦର୍ଶନ ନିମ୍ନୋକ୍ତ ଶ୍ଳୋକରୁ ମିଳେ—

ଯେ ବୈ ଭଗବତାଃ ପ୍ରୋକ୍ତା ଉପାୟା ଆତ୍ମଲବ୍ଧୟେ
ଅଂଜଃ ପୁଂସାମବିଦୁଷାଂ ବିଦ୍ଧି ଭାଗବତାନ୍ ହି ତାନ୍ ॥

ଅର୍ଥାତ୍ ଆତ୍ମଲାଭ ନିମନ୍ତେ ଯେତେଗୁଡ଼ିଏ ଉପାୟ କଥିତ ଅଛି, ସେଗୁଡ଼ିକ ମଧ୍ୟ ମୂର୍ଖ ବ୍ୟକ୍ତିଙ୍କ ପାଇଁ ଉଦ୍ଦିଷ୍ଟ ।

ପୁନଶ୍ଚ—ବିଚକ୍ଷଣୋଽସ୍ୟାର୍ହତିବେଦିତୁଂ ବିଭୋ
ରନନ୍ତପାରସ୍ୟ ନିବୃତ୍ତିତଃ ସୁଖମ୍
ପ୍ରବର୍ତ୍ତମାନସ୍ୟ ଗୁଣୈରନାତ୍ମନ
ସ୍ତତୋଭବାନ୍ ଦର୍ଶୟ ଚେଷ୍ଟିତଂ ବିଭୋ ॥

( ଭାଗବତ ପ୍ରଥମ ଅଧ୍ୟାୟ )

ଅର୍ଥ – ହେ ପ୍ରଭୋ, ଦେହାଭିମାନୀ ସଂସାରୀ ଅଜ୍ଞ ପ୍ରକୃତିମାର୍ଗର ପଥିକ ସାଧାରଣ ଲୋକମାନଙ୍କର ମୁକ୍ତି ସକାଶେ କଷ୍ଟ କରନ୍ତୁ ।

ଜ୍ଞାନମିଶ୍ରା ଭକ୍ତିର ଉପାସକମାନେ ମୂଳ ମହାମନ୍ତ୍ର ଜପ କରିଥାନ୍ତି "ହରେ ରାମ କୃଷ୍ଣ" ମାତ୍ର ଶୁଦ୍ଧା ଭକ୍ତିର ଉପାସକମାନେ "ହରେ କୃଷ୍ଣ ରାମ" ଏହି ମନ୍ତ୍ର ଜପ କରିଥାନ୍ତି ।

କଳିସନ୍ତରଣ ଉପନିଷଦରେ—'ହରେ ରାମ ହରେ ରାମ ରାମ ରାମ ହରେ ହରେ' ମନ୍ତ୍ରର ଉଲ୍ଲେଖ ଅଛି । ଏହା ପ୍ରାଚୀନ ଓ ଶାସ୍ତ୍ରାନୁମୋଦିତ । ମାତ୍ର ଗୌଡ଼ୀୟମାନେ ଏହାର ପରିବର୍ତ୍ତନ କରିଅଛନ୍ତି । ରୂପ ଗୋସ୍ୱାମୀଙ୍କ କୃତ "ଚରିତ ସୁଧାନିଧିରେ" ଚୈତନ୍ୟ ଓ ଜଗନ୍ନାଥ ଦାସ ଉଭୟ ସାଧକ ଓ ଭକ୍ତଙ୍କ ମଧ୍ୟରେ ମୂଳ ମହାମନ୍ତ୍ର ନେଇ କଳହ ଉପସ୍ଥିତ ହୁଅନ୍ତେ ଚୈତନ୍ୟ ସ୍ୱୟଂ ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କୁ ସ୍ମରଣ କଲେ । ସଙ୍ଗେ ସଙ୍ଗେ ପ୍ରଭୁ ଜଗନ୍ନାଥ ଦେବ ଚୈତନ୍ୟଙ୍କୁ 'ହରେ ରାମ କୃଷ୍ଣ' ଏହି ମହାମନ୍ତ୍ରର ଶ୍ରେଷ୍ଠତ୍ୱ ସ୍ୱୀକାର କରିବାକୁ ଆଦେଶ ଦେଇଥିଲେ ।

ଏହି ଜ୍ଞାନମିଶ୍ରା ଭକ୍ତି ସ୍ୱନାମଧନ୍ୟ ପଞ୍ଚସଖାଙ୍କ ସାହିତ୍ୟରେ ଦ୍ରଷ୍ଟବ୍ୟ । ଚୈତନ୍ୟଙ୍କ ଆଗମନ ଫଳରେ ଓଡ଼ିଆ ସାହିତ୍ୟରେ ଗୌଡ଼ୀୟ ଭାବ ପରିଦୃଷ୍ଟ ହେଲା । ଶୁଦ୍ଧାଭକ୍ତି ଦ୍ୱାରା ଓଡ଼ିଆ କାବ୍ୟ ସାହିତ୍ୟ ପରିପ୍ଲାବିତ ହେଲା । କିନ୍ତୁ ତତ୍ପୂର୍ବରୁ ଶୁଦ୍ଧାଭକ୍ତି ମାର୍ଗ ଲେଖାର ବୈଷ୍ଣବ ମଣ୍ଡଳୀରେ ସମାଦୃତ ହୋଇଥିଲା । ଗୌଡ଼ୀୟ ବୈଷ୍ଣବ ଧର୍ମର ସମର୍ଥକ ହିସାବରେ କବି ଭକ୍ତଚରଣ, ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା, ଦିନାଇ ଦାସ, ଦେବଦୁର୍ଲ୍ଲଭ ଦାସ, ବୃନ୍ଦାବତୀ ଦାସୀ, ଅଭିମନ୍ୟୁ ସାମନ୍ତ ସିଂହାର, ଗୋପାଳକୃଷ୍ଣ ପ୍ରଧାନ । ଏମାନେ କାବ୍ୟ ଆରମ୍ଭରେ ଉତ୍କଳୀୟ ବୈଷ୍ଣବମାନଙ୍କର ଚିର ଆରାଧ୍ୟ ଦେବତା ଜଗନ୍ନାଥଙ୍କୁ ସ୍ଥାନ ଦେଇ ନାହାନ୍ତି । ଗୌଡ଼ୀୟଙ୍କର ଶ୍ରୀ ଚୈତନ୍ୟଚରିତାମୃତ ଓ ଗୋସ୍ୱାମୀ ଗ୍ରନ୍ଥମାନଙ୍କରେ ଅନ୍ୟାନ୍ୟ ଧାମର ସ୍ତବ ଓ ବର୍ଣ୍ଣନା ମିଳେ । ଏମାନେ ବିଶେଷତଃ ବୃନ୍ଦାବନର ମାହାତ୍ମ୍ୟ ବର୍ଣ୍ଣନ ଓ ସେଠାରେ ଶ୍ରୀକୃଷ୍ଣଙ୍କ ଲୀଳାବିଳାସ ମଧୁମୟ ଚିତ୍ତମନୋହାରିଣୀ ଭାଷାରେ ଲିପିବଦ୍ଧ କରି ମଧୁର ରସର ନାୟକ ନାୟିକା ଶ୍ରୀରାଧାକୃଷ୍ଣଙ୍କର ବୈଚିତ୍ର୍ୟର ପ୍ରକୃଷ୍ଟ ପରିଚୟ ଦେଇଅଛନ୍ତି । ଅପ୍ରାକୃତ ମଧୁର ରସର ଉପଲବ୍ଧି ହିଁ ଗୌଡ଼ୀୟ ବୈଷ୍ଣବ ସାହିତ୍ୟର ମୂଳ ଲକ୍ଷ୍ୟ ।

# ପ୍ରାଚୀନ ଓଡ଼ିଆ ସାହିତ୍ୟରେ ଆଗମର ପ୍ରଭାବ

ବିଦଗ୍ଧ କବି ଅଭିମନ୍ୟୁ ସ୍ୱୀୟ ଅମର କାବ୍ୟ "ବିଦଗ୍ଧ-ଚିନ୍ତାମଣି,'ରେ କହିଛନ୍ତି —

"ନ୍ୟାୟାଦି ଶାସ୍ତ୍ର ପୁରାଣ, ବେଦାଗମ ବାକ୍ୟ
ନ୍ୟାସ କଲ ଲୋକର ଏ ହୋଇବଟି ଭବ୍ୟ ।"

ଅର୍ଥାତ୍ ନ୍ୟାୟାଦି ଶାସ୍ତ୍ରପୁରାଣ, ବେଦ, ଆଗମ ଓ କାବ୍ୟଶାସ୍ତ୍ରରେ ନିପୁଣତା ଅର୍ଜନ କରିଥିବା ବ୍ୟକ୍ତି ହିଁ ତାଙ୍କର କାବ୍ୟ ଉପଭୋଗ କରିପାରିବେ । ରସିକ ଭକ୍ତକବି ଅଭିମନ୍ୟୁ ଏଠାରେ 'ଆଗମର' ଉଲ୍ଲେଖ କରିଛନ୍ତି । ଏହି ଆଗମ ବା ତନ୍ତ୍ର ଓଡ଼ିଆ ସାହିତ୍ୟର ପ୍ରାଚୀନ ଯୁଗରେ ବିଶେଷ ଭାବରେ ପରିଦୃଷ୍ଟ ହୁଏ । ଓଡ଼ିଆ ସାହିତ୍ୟର ବୌଦ୍ଧଯୁଗଠାରୁ ଆରମ୍ଭ କରି ପଞ୍ଚସଖା ଯୁଗ ପର୍ଯ୍ୟନ୍ତ ସମଗ୍ର ସାହିତ୍ୟ ଆଗମଦ୍ୱାରା ପ୍ରଭାବିତ ହୋଇଅଛି । ପରବର୍ତ୍ତୀ ଯୁଗ ମଧ୍ୟ ଆଗମର ଅଭୁତ ପ୍ରଭାବରୁ ମୁକ୍ତିଲାଭ କରିପାରି ନାହିଁ ।

ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସାଧାରଣତଃ ଛଅଗୋଟି ସମ୍ପ୍ରଦାୟ ବା ଆଗମର ପ୍ରଭାବ ପରିଲକ୍ଷିତ ହୁଏ । ଯଥା - ଶୈବ, ଶାକ୍ତ, ବୈଷ୍ଣବ, ବୌଦ୍ଧ, ମହାଯାନ ଓ ଜୈନ । ଏହା ମଧ୍ୟରୁ ଶୈବ, ଶାକ୍ତ, ବୈଷ୍ଣବ ଓ ମହାଯାନ ସମ୍ପ୍ରଦାୟର ପ୍ରଭାବ ବିଶେଷ ଭାବରେ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ପ୍ରତିଫଳିତ ହୋଇଅଛି ।

ଶୈବାଗମ ଅଲୋଚନା କଲେ ଜଣାଯାଏ ଯେ, ଏହି ସାଧନାର ମୂଳ କଥା ହେଉଛି;, ତନ୍ତ୍ର ଓ ଯୋଗର ସାଧନା । ବୈଷ୍ଣବ ଆଗମର ମୂଳ କଥା ମଧ୍ୟ ସେଇଆ । ମାତ୍ର ସେଠାରେ ଜ୍ଞାନ ଅପେକ୍ଷା ଭକ୍ତି ଉପରେ ବିଶେଷ ଜୋର ଦିଆଯାଇଛି । ଶୈବ ଆଗମ ଜ୍ଞାନପ୍ରଧାନ ବୈଷ୍ଣବ ଆଗମ ଜ୍ଞାନମିଶ୍ରା ଭକ୍ତିପ୍ରଧାନ । କିନ୍ତୁ କେହି ବୈଷ୍ଣବ ଆଗମକୁ କେବଳ ଭକ୍ତିପ୍ରଧାନ ବୋଲି କହିଥାନ୍ତି ।

ବୈଷ୍ଣବ ଆଗମ ଦୁଇ ଭାଗରେ ବିଭକ୍ତ—(୧) ପଞ୍ଚରାତ୍ର, (୨) ଭାଗବତ। ପଞ୍ଚରାତ୍ର ଆଗମରେ ଲକ୍ଷ୍ମୀନାରାୟଣଙ୍କ ଉପାସନା ଏବଂ ଭାଗବତ ଆଗମରେ ଶ୍ରୀକୃଷ୍ଣଙ୍କ ଉପାସନାର ପରିଚୟ ମିଳେ। ପରବର୍ତ୍ତୀ କାଳରେ ରାଧାକୃଷ୍ଣ ଉପାସନା ଏହି ଭାଗବତ ସମ୍ପ୍ରଦାୟରୁ ଉଦ୍ଭୂତ। ବଲ୍ଲଭ ସମ୍ପ୍ରଦାୟରେ ଯେଉଁ ପୁଷ୍ଟିମାର୍ଗର ସାଧନା ପ୍ରଚଳିତ ଥିଲା, ଉକ୍ତ ପୁଷ୍ଟିମାର୍ଗ ସାଧନାରେ ମଧୁର ରସର ପରିଚୟ ମିଳେ। ଓଡ଼ିଶାରେ ଏହି ମଧୁର ରସର ପ୍ରଚଳନ ଥିଲା। ପ୍ରାଚୀନ ଓଡ଼ିଆ ସାହିତ୍ୟ ଅନୁଶୀଳନ କଲେ ଦେଖାଯାଏ ଯେ, ଏହି ସମସ୍ତ ମତବାଦ ଓଡ଼ିଆ ସାଧକ ସମାଜରେ ବିଶେଷ ପ୍ରଭାବ ବିସ୍ତାର କରିଥିଲା। ତେଣୁ ସେସମସ୍ତ ସାଧକମାନେ ସାଧନାର ଯେଉଁ ସୁସ୍ପଷ୍ଟ ଇଙ୍ଗିତ ଦେଇ ଯାଇଅଛନ୍ତି, ସେଗୁଡ଼ିକୁ ବୁଝିବାକୁ ହେଲେ ଏହି ସମସ୍ତ ପ୍ରାଚୀନ ମତବାଦ ବିଶେଷ ଭାବରେ ଜାଣିବା ଦରକାର।

ମହାଯାନ ସମ୍ପ୍ରଦାୟର ଯେଉଁ ଦୁଇଟି ଭାଗ ଯୋଗାଚାର ଓ ମାଧ୍ୟମିକ— ସେହି ମାଧ୍ୟମିକ ସମ୍ପ୍ରଦାୟର ଶୂନ୍ୟବାଦ ଓ କରୁଣା ଏକ ସଙ୍ଗରେ ପରମସୁଖବାଦ ବା ଯୁଗନଦ୍ଧଭାବ ରୂପରେ ଗୃହୀତ ହୋଇଅଛି। ଏହି ଯୁଗନଦ୍ଧ ହିଁ ପରବର୍ତ୍ତୀ କାଳର ଅର୍ଦ୍ଧନାରୀଶ୍ୱର ଶିବଶକ୍ତି ଓ ରାଧାକୃଷ୍ଣ ତତ୍ତ୍ୱରୂପେ ବର୍ଣ୍ଣିତ ହୋଇଅଛି। ଶୂନ୍ୟବାଦର ମୂଳ କଥା ହେଉଛି, ଈଶ୍ୱର ହିଁ ପରମତତ୍ତ୍ୱ ଓ ଅନିର୍ବଚନୀୟ। ତାହା ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ। କେବଳ ମାତ୍ର ଅନୁଭୂତିବେଦ୍ୟ। ଏହାକୁ ବାକ୍ୟଦ୍ୱାରା ପ୍ରକାଶ କରିବାକୁ ଚେଷ୍ଟାକଲେ ତାକୁ ସୀମାବଦ୍ଧ କରିବାକୁ ପଡ଼ିବ। ଏହି ପରମତତ୍ତ୍ୱ ଭାବ ନୁହେଁ; ଅଭାବ ବି ନୁହେଁ— ଭାବାଭାବ ବି ନୁହେଁ ଏବଂ ତଦଭିନ୍ନ ଅନ୍ୟ କୌଣସି ବସ୍ତୁ ବି ନୁହେଁ। ଏହି ଶୂନ୍ୟତତ୍ତ୍ୱର ଅନୁଭୂତି ହେଲେ ଆମ୍ଭମାନଙ୍କର ପୃଥକ୍ ପୃଥକ୍ ଜ୍ଞାନ ଦୂର ହୁଏ ଏବଂ ଆମ୍ଭେମାନେ ପରମ ଦୁଃଖରୁ ମୁକ୍ତିଲାଭ କରୁଁ। ଏହି ଶୂନ୍ୟ ହିଁ ପ୍ରଜ୍ଞାସ୍ୱରୂପ, କିନ୍ତୁ ଶୂନ୍ୟତତ୍ତ୍ୱ ସହିତ କରୁଣା ଏକାନ୍ତ ଭାବରେ ଜଡ଼ିତ। ଶୂନ୍ୟତା ଓ କରୁଣା ପ୍ରଜ୍ଞା ଓ ଉପାୟରୂପେ ସୁସ୍ପଷ୍ଟ ବର୍ଣ୍ଣିତ ହୋଇଅଛି।

ଉପାୟ କରୁଣାର ନାମାନ୍ତର ମାତ୍ର। ପ୍ରଜ୍ଞା ଓ ଉପାୟ ଏହି ଦୁଇଟି ମିଳିତ ହୋଇ ଯୁଗନଦ୍ଧଭାବ କଳ୍ପିତ ହୋଇଛି। ଶୈବ ଆଗମର ଶକ୍ତି ଓ ଶିବ ଏହି ପ୍ରଜ୍ଞା କରୁଣାର ସଂଜ୍ଞାନ୍ତର ମାତ୍ର। ପ୍ରଜ୍ଞା ଶିବସ୍ୱରୂପ ଏବଂ ଉପାୟ ଶକ୍ତିସ୍ୱରୂପ। ଅର୍ଦ୍ଧନାରୀଶ୍ୱର କଳ୍ପନା ଏହି ଶିବଶକ୍ତିରୁ ଜାତ। ପାଞ୍ଚରାତ୍ର ଆଗମରେ ଯେଉଁ ଲକ୍ଷ୍ମୀନାରାୟଣ ଉପାସନା ଅଛି, ତାହା ମଧ୍ୟ ଏହି ପ୍ରଜ୍ଞା ଓ ଉପାୟ ବା ଶିବଶକ୍ତି-ସମ ଏକ କଳ୍ପନାର ଅନୁରୂପ। ଏହିଠାରେ ତାନ୍ତ୍ରିକମାନଙ୍କର ଶୂନ୍ୟ ସମ୍ବନ୍ଧରେ ଟିକିଏ ଆଲୋଚନା କରାଯାଉ। ଶାକ୍ତ ଓ ଶୈବ ତାନ୍ତ୍ରିକଗଣ କହନ୍ତି ଯେ,

ଯେତେବେଳେ କାର୍ଯ୍ୟ ଓ କାରଣରେ ପୃଥକ୍ ସତ୍ତା ରହେ ନାହିଁ; କିନ୍ତୁ କାର୍ଯ୍ୟ ସମ୍ପୂର୍ଣ୍ଣ ରୂପେ କାରଣରେ ଆତ୍ମଭୂତ ବା ବିଲୀନ ହୋଇଯାଏ, ଅର୍ଥାତ୍ ଯେତେବେଳେ କାର୍ଯ୍ୟର କୌଣସି ପ୍ରକାର ସ୍ଫୁରଣ ହୁଏ ନାହିଁ, କେବଳ କାରଣ ବିଦ୍ୟମାନ ଥାଏ— ସେ ଅବସ୍ଥାକୁ ଶୂନ୍ୟ ବା ଶୂନ୍ୟାତିଶୂନ୍ୟ ବୋଲାଯାଏ । ତାନ୍ତ୍ରିକ ପରିଭାଷାରେ ଏହାକୁ ଶିବଶକ୍ତିର "ସାମରସ୍ୟ", ବୋଲି କହନ୍ତି । ଯେତେବେଳେ ଶକ୍ତିର କୌଣସି ପ୍ରକାର ଲୀଳା ରହେ ନାହିଁ, ଶକ୍ତି ଓ ଶିବ ଅଭିନ୍ନ ହୋଇଯାଆନ୍ତି । ତାହା ହିଁ ପରମ ବିନ୍ଦୁ ବା ଶୂନ୍ୟପଦ ବୋଲି ନାମିତ ହୋଇଅଛି । ଶିବ ଏବଂ ଶକ୍ତି ଏକରୂପ । ସାମରସ୍ୟର ତାରତମ୍ୟାନୁସାରେ ଏହି ଶୂନ୍ୟର ୫୧ଟି ଅବସ୍ଥା ସ୍ୱୀକାର କରାଯାଇଅଛି ।

ଶାକ୍ତ ପରିଭାଷାରେ କୁହାଯାଇଛି ଯେ—
"ପଞ୍ଚଶୂନ୍ୟେ ସ୍ଥିତା ତାରା ସର୍ବାନ୍ତେ କାଳିକା ସ୍ଥିତା ।"

କାଳୀମୂର୍ତ୍ତିର ପ୍ରକାଶ ଶିବଶକ୍ତିର ପରିପୂର୍ଣ୍ଣ ଅବସ୍ଥା । ସାମରସ୍ୟ ରୂପ ଶୂନ୍ୟତା କାଳୀମୂର୍ତ୍ତିରେ ପରିଦୃଷ୍ଟ ହୁଏ । ସୁତରାଂ ଏହି ଶୂନ୍ୟବାଦ ବୌଦ୍ଧ ଶୂନ୍ୟବାଦଠାରୁ ପୃଥକ୍ । ବୌଦ୍ଧମାନଙ୍କର ଶୂନ୍ୟକୁ ଦୁଇ ଭାବରେ ବ୍ୟାଖ୍ୟା କରାଯାଇପାରେ । ବ୍ରାହ୍ମଣ ଦର୍ଶନରେ ବୌଦ୍ଧଶୂନ୍ୟକୁ ନିଃସତ୍ତା ଅବସ୍ଥା ବୋଲି କୁହାଯାଇଅଛି । କିନ୍ତୁ ନାଗାର୍ଜ୍ଜୁନଙ୍କର ମୂଳ ମଧ୍ୟମକାରିକାରେ ଶୂନ୍ୟକୁ ବାଗ୍ଭୂତାତ ମନୋଗମ୍ୟ ଏବଂ ସତ୍ତା ସ୍ୱରୂପ ସ୍ୱୀକାର କରାଯାଇଅଛି । ଏହାକୁ ସତ୍ ବା ଅସତ୍ ବା ସଦ୍‌ସତ୍ ତଦଭିନ୍ନ ଅନ୍ୟ କୌଣସି ପଦାର୍ଥ ବୋଲାଯାଏ ନାହିଁ ।

"ନସନ୍ ନାସନ୍ ନସ୍ତୂ୍ୟଭୟାତ୍ମକଂ
ଚତୁଷ୍କୋଟିବିନିର୍ମୁକ୍ତଂ ଶୂନ୍ୟମ୍ ମାଧ୍ୟମିକାବିଦୁଃ ।"

ଏଠାରେ ବିଷ୍ଣୁପୁରାଣ—"ମାୟାବାଦମସତ୍ ଶାସ୍ତ୍ରଂ ପ୍ରଚ୍ଛନ୍ନ ବୌଦ୍ଧମେବଚାର" ଅର୍ଥାତ୍ କଳିଯୁଗରେ ବ୍ରାହ୍ମଣ ରୂପେ ମାୟାବାଦରୂପୀ ଅସତ୍ ଶାସ୍ତ୍ର ଯାହାକ ପ୍ରଚ୍ଛନ୍ନ ବୌଦ୍ଧରୂପେ ମତ ତାହା ପ୍ରଚାର କରିଥିଲେ ।

ମୂଳତଃ ନାଗାର୍ଜ୍ଜୁନଙ୍କର ଶୂନ୍ୟବାଦ, ଶଙ୍କରାଚାର୍ଯ୍ୟଙ୍କର ନିର୍ଗୁଣ ବ୍ରହ୍ମବାଦ ଏବଂ ଆଗମବାଦୀଙ୍କର ଶୂନ୍ୟବାଦ— ଏକ ପଦାର୍ଥ ବୋଲି ଅନୁମିତ ହୁଏ, କିନ୍ତୁ ପାର୍ଥକ୍ୟ ଏହି ଯେ ଅନ୍ୟାନ୍ୟ ଦର୍ଶନ ଏହାକୁ ସତ୍ତା ଅବସ୍ଥା ବୋଲି ବ୍ୟାଖ୍ୟା କରିଅଛନ୍ତି, କିନ୍ତୁ ନାଗାର୍ଜ୍ଜୁନ ତାକୁ ନିଃସତ୍ତା ଅବସ୍ଥା ବୋଲି ବର୍ଣ୍ଣନା କରିଅଛନ୍ତି ।

ମହାଯାନ ସମ୍ପ୍ରଦାୟର ବଜ୍ରଯାନ ସମ୍ପ୍ରଦାୟର ମଧ୍ୟ ଏହି ଶୂନ୍ୟ ଓ କରୁଣା ସମ୍ବନ୍ଧରେ ନାନା ବିଷୟ ଉତ୍ଥାପନ କରିଅଛନ୍ତି । ଏହି ବଜ୍ରଯାନ

ସମ୍ପ୍ରଦାୟର ପ୍ରଭାବ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସୁସ୍ପଷ୍ଟ । ଏହି ବଜ୍ରଯାନ ସମ୍ବନ୍ଧରେ ବର୍ତ୍ତମାନ ଟିକିଏ ଆଲୋଚନା କରାଯାଉ । ବଜ୍ରଯାନର ମୂଳକଥା ହଠଯୋଗ । ତନ୍ତ୍ରରେ ସାଙ୍କେତିକ ଭାଷାରେ ହକାର ଓ ଠକାର ଯଥାକ୍ରମେ ଚନ୍ଦ୍ର ଓ ସୂର୍ଯ୍ୟର ବାଚକ ।

ଚନ୍ଦ୍ର ଓ ସୂର୍ଯ୍ୟ – ଇଡ଼ା ଓ ପିଙ୍ଗଳା ତଥା ପ୍ରାଣ ଓ ଅପାନ ବାୟୁର ସମୀକରଣ ହିଁ ହଠଯୋଗ । ପ୍ରାଣ-ଅପାନ ବାୟୁର ବୈଷମ୍ୟରେ ଜଗତର ସୃଷ୍ଟି ଏବଂ ସେମାନଙ୍କର ସମୀକରଣରେ ଜଗତର ଲୟ । ଆମ୍ଭମାନଙ୍କର ଦେହ ଦୁଇଟି ବିଭିନ୍ନ ଶକ୍ତିଦ୍ୱାରା ପରିଚାଳିତ । ଏହି ଶକ୍ତିଦ୍ୱୟର ବୈଷମ୍ୟରେ ବା ସଂଘର୍ଷରେ ଆମ୍ଭମାନଙ୍କର ଜୀବନର ସୃଷ୍ଟି ହୁଏ ଏବଂ ଏହି ଶକ୍ତିଦ୍ୱୟର ସମୀକରଣରେ ଆମ୍ଭମାନଙ୍କର ସୁଷୁମ୍ନା ଦ୍ୱାର ଉନ୍ମୁକ୍ତ ହୁଏ । ଏହି ସୁଷୁମ୍ନା ଦ୍ୱାରା ଆମ୍ଭେମାନେ ଧୀରେ ଧୀରେ ସମତାର ପଥରେ ବା ସମୀକରଣ ପଥରେ ଚାଳିତ ହେଉଁ ।

ପ୍ରାଣ ଅପାନ—ପ୍ରାଣ ଓ ଅପାନ ବାୟୁ ଏହି ବହିରଙ୍ଗଶକ୍ତିଦ୍ୱୟର କ୍ରିୟାମାତ୍ର । ଯେତେ-ବେଳେ ଯୋଗୀ ସୁଷୁମ୍ନା ମାର୍ଗରେ ଚାଲିବାକୁ ଆରମ୍ଭ କରେ ସେତେବେଳେ ସେ ଶୂନ୍ୟ-ପଦାଲମ୍ବୀ ବୋଲି କଥିତ ହୁଏ ଏବଂ ପ୍ରାଣ ଓ ଅପାନବାୟୁର ପୂର୍ଣ୍ଣ ସମୀକରଣରେ ସେ ଶୂନ୍ୟପଦ ଲାଭ କରେ । ପ୍ରାଣ ଓ ଅପାନ ବାୟୁର ସମୀକରଣରେ ଜୀବଶକ୍ତି ବା କୁଳକୁଣ୍ଡଳିନୀ ଜାଗ୍ରତ ହୁଏ ଏବଂ ପୂର୍ଣ୍ଣ ସମୀକରଣରେ ଜୀବଶକ୍ତି ବା କୁଳକୁଣ୍ଡଳିନୀ ଜାଗ୍ରତ ହୋଇ ଶୂନ୍ୟପଥରେ ସହସ୍ରାର ଚକ୍ରରେ ବିଲୀନ ହୁଏ ଓ ଚୈତନ୍ୟସମୁଦ୍ରରେ ମିଳିତ ହୁଏ ।

ପ୍ରାଣବାୟୁ ସଞ୍ଚାରକ ଇଡ଼ାନାଡ଼ି ଆମ ଦେହର ବାମ ଭାଗରେ ଥାଏ । ସେ ଚନ୍ଦ୍ରସ୍ୱରୂପିଣୀ, ଶୁକ୍ଳବର୍ଣ୍ଣା, ଶକ୍ତିରୂପା ଅମୃତମୟୀ । ଅପାନ ବାୟୁ ସଞ୍ଚାରକ ପିଙ୍ଗଳା ଆମ ଦେହର ଦକ୍ଷିଣ ଦିଗରେ ଅବସ୍ଥାନ କରେ । ସେ ସୂର୍ଯ୍ୟ ସ୍ୱରୂପିଣୀ, ରକ୍ତବର୍ଣ୍ଣା – ଡାଳିମ୍ବ କେଶର ପରି ରକ୍ତବର୍ଣ୍ଣା । ମୁନିମାନେ ଏହାକୁ ବିଷନାଡ଼ି ବୋଲି କହନ୍ତି । ଏହା କ୍ଷୟକାରକ । ମୂଳାଧାରଠାରୁ ସହସ୍ରାର ପର୍ଯ୍ୟନ୍ତ ଯେଉଁ ନାଡ଼ି ବ୍ୟାପିଛି, ସେ ନାଡ଼ି ସୁଷୁମ୍ନା । ଜୀବର ସ୍ୱରୂପ ସୁଖ ସ୍ୱରୂପ । ପ୍ରାଣ ଅପାନର ବୈଷମ୍ୟରେ ଜୀବ ବଦ୍ଧ ହୁଏ । ଜୀବର ମୁକ୍ତି ନିମନ୍ତେ ଉକ୍ତ ଦ୍ୱୟର ସମୀକରଣ ଅତୀବ ପ୍ରୟୋଜନ । ତେଣୁ ଯୋଗୀ ଜୀବର ମୁକ୍ତି ପାଇଁ ଯୋଗ ସାଧନ କରେ । ଏହି ଯୋଗ ସାଧନାର ସଙ୍କେତ ବୌଦ୍ଧଯୁଗଠାରୁ ପଞ୍ଚସଖା ଓ ତତ୍‌ପରବର୍ତ୍ତୀ ଯୁଗପର୍ଯ୍ୟନ୍ତ ସମଗ୍ର ସାହିତ୍ୟରେ ପରିଦୃଷ୍ଟ ହୁଏ । ଯୋଗୀ

ଯେତେବେଳେ ଶୂନ୍ୟ ପଥରେ ଅଗ୍ରସର ହୋଇ ସହସ୍ରାର ( ଅର—ଦଳପଦ୍ମ ) ଚକ୍ରରେ ବିଲୀନ ହୁଏ, ସେତେବେଳେ ଆଉ ଜୀବବୋଧ ରହେ ନାହିଁ । ସାଧକ ସେତେବେଳେ ଶୂନ୍ୟପଦ ଲାଭ କରି ଈଶ୍ୱର ପରମତତ୍ତ୍ୱ ସଙ୍ଗରେ ଏକୀଭୂତ ହୋଇଯାଏ । ଏହି ଅବସ୍ଥାରେ ମହାସୁଖରେ ଅଭିବ୍ୟକ୍ତ ହୁଏ ବୋଲି ଏହି ଶୂନ୍ୟ-ତତ୍ତ୍ୱକୁ ମହାସୁଖ ସ୍ୱରୂପ କୁହାଯାଏ । ପିଣ୍ଡ ବ୍ରହ୍ମାଣ୍ଡବାଦର ଏହା ହିଁ ମୂଳକଥା । ଶୈବ ଓ ବୈଷ୍ଣବ ଆଗମରେ ଯେଉଁ ଶିବ ଶକ୍ତି ଓ ଲକ୍ଷ୍ମୀନାରାୟଣର ମିଳନ କୁହାଯାଇଛି, ତାହା ମଧ୍ୟ ଏହି କୁଳକୁଣ୍ଡଳିନୀ ବା ଜୀବଶକ୍ତିର ପରମତତ୍ତ୍ୱରେ ବିଲୀନ ଅବସ୍ଥା ମାତ୍ର । ଏହା ହିଁ ବଜ୍ରଯାନ । ବଜ୍ରଯାନର ଶାଖାନ୍ତର ନାମ ସହଜଯାନ ଯୋଗ ସାଧନାର ଯେତେବେଳେ ପ୍ରାଣ ଅପାନର ସମୀକରଣ ହୁଏ ଓ ମହାସୁଖର ଆବିର୍ଭାବ ହୁଏ, ସେତେବେଳେ ଜୀବ ତାହାର ସହଜ ଅବସ୍ଥାକୁ ପ୍ରାପ୍ତ ହୁଏ ।

ପୂର୍ବରୁ କୁହାଯାଇଛି ଯେ, ଜୀବର ସ୍ୱରୂପ ସୁଖ ସ୍ୱରୂପ, କିନ୍ତୁ ପ୍ରାଣ ଅପାନର ବୈଷମ୍ୟ ସକାଶେ ସେ ଜଗତରେ ବଦ୍ଧ ହୁଏ । ସମୀକରଣରେ ସେ ସହଜ ଅବସ୍ଥା ପ୍ରାପ୍ତ ହେବାରୁ ଜ୍ଞାତା, ଜ୍ଞେୟ ଓ ଜ୍ଞାନ—ଏହି ତିନୋଟି ଅବସ୍ଥାର ଅଭାବ ହୋଇଥାଏ । ସେତେବେଳେ ଏକମାତ୍ର ଚିତ୍ତସ୍ୱରୂପ ଅବଶିଷ୍ଟ ରହେ । ଏହି ଚିତ୍ତ ଆନନ୍ଦମୟ । ଏହି ସକାଶେ ଜୀବ ଯୋଗସାଧନାରେ ମହାସୁଖର ସ୍ୱରୂପ ହୋଇଯାଏ । ସରହପାଦ ଏହି ଅବସ୍ଥାର ପରିଚୟ ଦେବାକୁ ଯାଇ ଗୋଟିଏ ଦୋହାରେ କହିଛନ୍ତି—

"ଜହି ମନ ପବନ ନ ସଞ୍ଚରଇ
ରବି ଶଶି ନାହ ପବେଶ
ତହିଁ ବଟ ଚିତ୍ତ ବିସାମ କରୁ
ସରହେ କହିଅ ଉବେଶ ।

ଏହି ଅବସ୍ଥାର ନାମ ନିର୍ବାଣ । ଏହାର ଅର୍ଥ ଏହି ଯେ, ଏହି ନିର୍ବାଣ ଅବସ୍ଥାରେ ମନ ଓ ପ୍ରାଣରେ ସଞ୍ଚାର ହୁଏ ନାହିଁ । ଚନ୍ଦ୍ର ସୂର୍ଯ୍ୟ ଅର୍ଥାତ୍ ଇଡ଼ା ପିଙ୍ଗଳାର ଯେଉଁଠାରେ ଆଉ କୌଣସି କ୍ରିୟା ହୁଏ ନାହିଁ—ସେହିଠାରେ ହିଁ ଚିତ୍ତ ବିଶ୍ରାମ କରେ । ଏହି ନିର୍ବାଣପଦ ବା ସହଜ ଅବସ୍ଥା କାଳର ଅତୀତ ।

ଏହାର ଅନ୍ୟ ନାମ ଉପନିଷଦମାନଙ୍କରେ ଉନ୍ମନୀ ଭାବ ବୋଲି କୁହାଯାଇଛି । ସହଜିଆ ସାଧକମାନଙ୍କ ମତରେ ଏହି ନିର୍ବାଣ ପ୍ରତ୍ୟେକର ବ୍ୟକ୍ତି-ଗତ ସ୍ୱଭାବ । ଏହି ନିର୍ବାଣ ଲାଭର ଉପାୟ ସ୍ୱରୂପ ଏହାକୁ ଅଚ୍ୟୁତାନନ୍ଦ ତନ୍ତ୍ର, ଯନ୍ତ୍ର, ମନ୍ତ୍ର, ଗୁମ୍ଫା, ଜ୍ୟୋତି, ଆକାଶ, ହଜ, ସହଜ ସମାଧି ଇତ୍ୟାଦି ବୋଲି

କହିଛନ୍ତି । ଏହି ସମୟରେ ଯେଉଁ ଆନନ୍ଦର ଆବିର୍ଭାବ ହୁଏ, ତାହା ହିଁ ମହାସୁଖ । ଏହା କାରଣହୀନ ପରମାର୍ଥ ।

ଆହୁରି ସରହପାଦ କହିଛନ୍ତି—

"ଘୋରେ ନ୍ଧାରେଁ ଚନ୍ଦ୍ରମଣି
ଜିମ ଉଜ୍ଜୋଅ କରେଇ
ପରମ ମହାସୁହ ଏକ୍ଖଣେ
ଦୁରିଆ ଶେଷ ହରେଇ ।"

ଚନ୍ଦ୍ରକାନ୍ତ ମଣି ଯେପରି ଘୋର ଅନ୍ଧାର ଦୂର କରି ନିଜର ନିର୍ମଳ ପ୍ରକାଶ ଦ୍ୱାରା ଉଦ୍ଭାସିତ ହୁଏ, ସେହିପରି ଏହି ନିର୍ବାଣରୂପ ମହାସୁଖର ଅବସ୍ଥା ସମସ୍ତ ପାପ ଦୂର କରି ପ୍ରକାଶିତ ହୁଏ । ଏହି ମହାସୁଖର ଉପଲବ୍ଧି ବଜ୍ରମାର୍ଗୀ ସିଦ୍ଧସାଧକମାନଙ୍କର ପରମପଦପ୍ରାପ୍ତି ସ୍ୱରୂପ । ଏହି ମହାସୁଖଲାଭ କରିବାକୁ ହେଲେ ଗୁରୁ ଆବଶ୍ୟକ । ବଜ୍ରଯାନ ତନ୍ତ୍ରରେ ମହାସୁଖର ଅବସ୍ଥା ବର୍ଣ୍ଣନା କରିବାକୁ ଯାଇ ଦୋହାକାର ଲେଖିଛନ୍ତି—

"ଆଇଣ ଅନନ୍ତ ମଜ୍ଝ ସେହି
ନଉଭବ ନଉ ନିର୍ବାଣ
ଏହୁ ସେ ପରମ ମହାସୁହଇ
ନହୁ ପର ନଉ ଅପାନ ।"

"ଜୟତି ସୁଖରାଜ ଏକଃ ।
ମୁଣି କାରଣରହିତଃ ସଦୋଦିତୋ ଜଗତାଂ
ଯସ୍ୟ ଚ ନିଗଦନ ସମୟେ
ବଚନ ଦରିଦ୍ର ବଭୂବ ସର୍ବଜ୍ଞଃ ।"

ଏହି ମହାସୁଖର ଅବସ୍ଥା ଯେତେବେଳେ ଉତ୍ପନ୍ନ ହୁଏ, ସେତେବେଳେ ଜୀବର ସହଜ ଅବସ୍ଥା ଆସେ । ଜୀବର ଏହି ସହଜ ଅବସ୍ଥା ଆନନ୍ଦପୂର୍ଣ୍ଣ । ସେଠାରେ ଏକ ସୁଖ ରାଜ୍ୟ ଅଛି; ତାର କାରଣ ନାହିଁ । ମାତ୍ର ସର୍ବତ୍ର ନିତ୍ୟବର୍ତ୍ତମାନ । ଏହି ଅବସ୍ଥା ବର୍ଣ୍ଣନା କରିବା ବେଳେ ସର୍ବଜ୍ଞ ମଧ୍ୟ ବଚନଦରିଦ୍ର ହୋଇଯିବେ ।

ପ୍ରକାଶ ଥାଉ କି, ଉକ୍ତ ସିଦ୍ଧସାଧକ କବି ସରହପାଦ ଓଡ଼ିଶାର ଲୋକ । ସରହପାଦ, ଲୁଇପାଦ, ଶବରୀପାଦ, କାହ୍ନୁପାଦ ପ୍ରଭୃତି ଓଡ଼ିଆ ସିଦ୍ଧସାଧକ କବିମାନେ ବୌଦ୍ଧଧର୍ମ ସମ୍ବନ୍ଧୀୟ କର୍ତ୍ତବ୍ୟମାନ ସାନ୍ଧ୍ୟଭାଷାରେ ଲୌକିକ ପାରମାର୍ଥିକ ଭାବରେ

କେତେଗୁଡ଼ିଏ ଦୋହାରେ ଲିପିବଦ୍ଧ କରିଯାଇଅଛନ୍ତି । ସମସ୍ତ ଦୋହା "ବୌଦ୍ଧଗାନ ଦୋହା" ନାମରେ ନାମିତ ହୋଇଅଛି । ଉକ୍ତ ବୌଦ୍ଧଗାନ ଦୋହାରୁ ମିତ ଓ ସଙ୍କଳିତ ୫୦ଟି ଦୋହାର ନାମ ଚର୍ଯ୍ୟାଚର୍ଯ୍ୟ ବିନିଶ୍ଚୟ ରଖାଯାଇଅଛି । ଡକ୍ଟର କରୁଣାକର କର ଉକ୍ତ ଦୋହାର ନାମ "ଆଶ୍ଚର୍ଯ୍ୟ ଚର୍ଯ୍ୟାଚୟ" ବୋଲି ନାମିତ କରିଅଛନ୍ତି । କର ମହାଶୟ ଐତିହାସିକ, ଭାଷାତାତ୍ତ୍ୱିକ ତଥା ଧର୍ମସମ୍ବନ୍ଧୀୟ ତଥ୍ୟର ତୁଳନା ଏବଂ ଆଲୋଚନା କରି ଏହାକୁ ଉତ୍କଳୀୟ ବଜ୍ରଯାନୀ ବୌଦ୍ଧସିଦ୍ଧମାନେ ଉତ୍କଳ ଭାଷାରେ ଲେଖିଛନ୍ତି ବୋଲି ଖୁବ୍ ଦକ୍ଷତାର ସହିତ ପ୍ରମାଣ କରିଛନ୍ତି ।

ସାଧନାମାଳାରେ ବୌଦ୍ଧ ବଜ୍ରଯାନ ସମ୍ପ୍ରଦାୟର ତାନ୍ତ୍ରିକ ସାଧନାର ୪ଟି ପୀଠ ଥିଲା ବୋଲି ଲିଖିତ ହୋଇଅଛି । (୧) ଉଡ୍ଡୀୟମାନ, (୨) ପୂର୍ଣ୍ଣଗିରି, (୩) କାମାକ୍ଷା, (୪) ଶିରିହଟ୍ଟ । ଡାକ୍ତର ଭଟ୍ଟାଚାର୍ଯ୍ୟ କାମାଖ୍ୟାକୁ କାମରୂପ୍ ଏବଂ ଶିରିହଟ୍ଟକୁ ସିଲହଟ୍ଟ ରୂପେ ପ୍ରକାଶ କରିଛନ୍ତି । ଏହି ଚାରି ପୀଠ ମଧ୍ୟରେ ପ୍ରଥମ ପୀଠ ଉଡ୍ଡୀୟାନର ଉଲ୍ଲେଖ ବିଶେଷ ଭାବରେ ରହିଛି । ଏହାକୁ ଭିନ୍ନ ଭିନ୍ନ ସ୍ଥାନରେ ଅବସ୍ଥିତ ବୋଲି ପ୍ରମାଣ କରିଯାଏ । ହରପ୍ରସାଦ ଶାସ୍ତ୍ରୀ ଏହା ଓଡ଼ିଶାରେ ଅଛି ବୋଲି ସ୍ୱୀକାର କରିଛନ୍ତି । ପାଗସାମଜ୍ଞାମ ନାମାରେ ଲିଖିତ ହୋଇଅଛି ଯେ, ପ୍ରଥମରେ ଓଡ୍ଡୀୟାନରୁ ତାନ୍ତ୍ରିକ ବୌଦ୍ଧଧର୍ମ ପ୍ରଚ୍ୟାରିତ ହୋଇଥିଲା । ସନାତନ ଧର୍ମର ହଠଯୋଗର ପ୍ରଧାନ ଗ୍ରନ୍ଥ "ହଠଯୋଗ ପ୍ରଦୀପିକା"ରେ "ଉଡ୍ଡୀୟାନ ବନ୍ଧର" ଉଲ୍ଲେଖ ଅଛି । ଯୋଗକୁଣ୍ଡଳିନୀ ଉପନିଷଦରେ ମଧ୍ୟ "ଉଡ୍ଡୀୟାନ"ର ଉଲ୍ଲେଖ ଅଛି । ଶିବାନନ୍ଦ ସରସ୍ୱତୀଙ୍କ "ଯୋଗ-ଚିନ୍ତାମଣି"ରେ ମଧ୍ୟ ଉଡ୍ଡୀୟାନ ପୀଠର ନାମ ମିଳେ । ସନାତନ ଧର୍ମ ଓ ବୌଦ୍ଧଧର୍ମର ତନ୍ତ୍ରଗ୍ରନ୍ଥମାନଙ୍କରେ ଉଡ୍ଡୀୟାନ ପୀଠର ସବିଶେଷ ଉଲ୍ଲେଖ ଥିବାରୁ ଅନୁମିତ ହୁଏ ଯେ, ସନାତନଧର୍ମର ତନ୍ତ୍ରସାଧନା ଓ ହଠଯୋଗ ସାଧନା ଏବଂ ବୌଦ୍ଧଧର୍ମର ତନ୍ତ୍ରସାଧନାର ମୂଳପୀଠ ବା ଆଦିସ୍ଥାନ ଏକ ଥିଲା—ଏହି ଉଡ୍ଡୀୟାନ ଦେଶ ହିଁ ମୂଳପୀଠ ଥିଲା । ତେଣୁ ଏ ଦେଶର ପରମ୍ପରା ମୂଳରେ ଅଛି ତନ୍ତ୍ରର ପ୍ରଭାବ । ଏହାର ସାହିତ୍ୟ ଓ ଧର୍ମରେ ଆସିଛି ତନ୍ତ୍ର ଓ ଯୋଗର ପ୍ରଭାବ । ଉଦାହରଣ ସ୍ୱରୂପ ଓଡ଼ିଆ ସାହିତ୍ୟର ସ୍ୱନାମଧନ୍ୟ ପଞ୍ଚସଖା ଯୁଗପ୍ରତି ଦୃଷ୍ଟିପାତ କଲେ ଏହା ସହଜରେ ପ୍ରତୀୟମାନ ହେବ । ଅଚ୍ୟୁତାନନ୍ଦ, ଜଗନ୍ନାଥ, ବଳରାମ, ଶିଶୁଅନନ୍ତ ଓ ଯଶୋବନ୍ତ ଏକାଧାରରେ କବି, ସିଦ୍ଧ-ସାଧକ ଓ ପରମଯୋଗୀ ଥିଲେ । ସେମାନଙ୍କର ସାହିତ୍ୟ ପାଠ କଲେ ପାଠକ ଆତ୍ମହରା ହୋଇଯାଏ । ତନ୍ତ୍ର, ଯନ୍ତ୍ର, ମନ୍ତ୍ର, ଛାୟା, ଜ୍ୟୋତି, ଅନାହତ, ହଂସ, ସହଜ, ସମାଧି, ରସଗୁଣରେ ବର୍ଣ୍ଣନା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ଶୂନ୍ୟବାଦ, ଷଡ଼ଚକ୍ର ସାଧନା, ଜଗନ୍ନାଥଙ୍କ ଅବତାର ତତ୍ତ୍ୱ, ପୁରୀର ନିତ୍ୟତା, ଜ୍ଞାନମିଶ୍ରା ଭକ୍ତି ଓ ନିବୃତ୍ତି ମାର୍ଗର ପରିଚୟ ଦେଇ ଏହି ଉତ୍କଳୀୟ ବୈଷ୍ଣବ-ମାନେ ସେମାନଙ୍କର ବୈଶିଷ୍ଟ୍ୟ ରକ୍ଷା କରିଯାଇଛନ୍ତି । ବଳରାମ ଦାସ ତାଙ୍କ

ଗୁପ୍ତଗୀତାରେ, 'ବ୍ରହ୍ମାଣ୍ଡ ଭୂଗୋଳ'ରେ, ଜଗନ୍ନାଥ ଦାସ ତୁଳାଭିଣାରେ, ଅଚ୍ୟୁତାନନ୍ଦ ଦାସ ତାଙ୍କ ଶୂନ୍ୟସଂହିତା ଓ ଗୁରୁଭକ୍ତି ଗୀତାରେ ଏହି ଯୋଗସାଧନାର କଥା କହି-ଯାଇଅଛନ୍ତି । ସେମାନେ ଠ୍ଲକୁ ନିରଞ୍ଜନ, ଅଲେଖ, ବ୍ରହ୍ମ ଓ ଆଦିମାତାଙ୍କ ସତ୍ତା ରୂପେ କଳ୍ପନା କରିଅଛନ୍ତି । ଏମାନଙ୍କ ଶୂନ୍ୟରେ ରାଧାକୃଷ୍ଣ ଲୀଳା ହୁଏ, ପିଣ୍ଡରେ ବ୍ରହ୍ମାଣ୍ଡର ଯେଉଁ ଅନୁଭୂତି, ତାହା ଉତ୍କଳୀୟ ବୈଷ୍ଣବଧର୍ମର ବିଶେଷତ୍ୱ । ଏମାନେ ଭଗବାନ କୃଷ୍ଣଙ୍କ ଐଶ୍ୱର୍ଯ୍ୟ ଲୀଳା ପ୍ରକାଶ କରିବାକୁ ପ୍ରୟାସୀ । ଓଡ଼ିଆ ଜାତିର ବହୁମୁଖୀ ପ୍ରତିଭାର ଶ୍ରେଷ୍ଠ ପ୍ରକାଶ ଦେଖାଇଅଛନ୍ତି ଏହି ସିଦ୍ଧସାଧକମାନେ ସେମାନଙ୍କ ଲେଖନୀରେ । ଦେଶର ଓ ଜାତିର ଜାନ୍ଦୁଳମାନ ପରମ୍ପରା ରକ୍ଷା କରି ଏମାନେ ଜାତୀୟ ସଂସ୍କୃତି ଓ ଜାତୀୟ ସଭ୍ୟତାର ଶ୍ରେଷ୍ଠ ପ୍ରତୀକ ହିସାବରେ ଉତ୍କଳ ଦେଶରେ ସତତ ପୂଜ୍ୟ—ଏଥିରେ ସନ୍ଦେହ ନାହିଁ । ଅଧ୍ୟାତ୍ମବାଦର ପ୍ରଚାର କରି ମାନବ ଜୀବନର ଶ୍ରେଷ୍ଠ ପରିଣତି କେଉଁଠାରେ ତାହା ସ୍ଥିର କରି ଅନାବିଳ ସୁଖର ସନ୍ଧାନରେ ସାବଧାନ ହୋଇଥିଲେ ଆମର ଏହି କବିମାନେ । ଆତ୍ମସମର୍ପଣରେ ସେମାନେ ରଖିଥିଲେ ଜଗତର ଶ୍ରେଷ୍ଠ ତତ୍ତ୍ୱ, ମାନବ ଜୀବନର ଶ୍ରେଷ୍ଠ ଆଦର୍ଶ । ଏହିମାନଙ୍କ ଉପରେ ପୂର୍ବୋକ୍ତ ଅଗମର ପ୍ରଭାବ ବିଶେଷ ଭାବରେ ପରିଲକ୍ଷିତ ହୁଏ । ସେମାନଙ୍କର ସାହିତ୍ୟ ଅନୁଶୀଳନ କରିବା ପୂର୍ବରୁ ଆମକୁ ଆଗମ ଶାସ୍ତ୍ର ଅତି ଉତ୍ତମ ରୂପେ ଅଧ୍ୟୟନ କରିବାକୁ ପଡ଼ିବ ।



# ସହଜିଆ ତନ୍ତ୍ର ଓ ପଞ୍ଚସଖା

ବୁଦ୍ଧଦେବଙ୍କ ମୃତ୍ୟୁ ପରେ ତାଙ୍କ ମନନଶୀଳ ଧର୍ମ ବହୁଦୂର ଅଗ୍ରସର ହୋଇଥିଲା । ବେଦ ଅନିତ୍ୟ—ଏହି ବିଶ୍ୱାସରେ ଯାହାର ଆତ୍ମପ୍ରକାଶ, ପୃଥିବୀର ନଶ୍ୱରତାରେ ଯାହାର ଦୃଢ଼ ପ୍ରତ୍ୟୟ, ସେ ପୁଣି କାଳକ୍ରମେ ଗୋଟିଏ ନେତିବାଚକ ଧର୍ମ ବିଶ୍ୱାସରେ ପରିଣତ ହେଲା । Nihilismର ଶୂନ୍ୟମୟ କୋଡ଼ରେ ସେ ନେଲା ଆଶ୍ରୟ । କନିଷ୍କଙ୍କ ରାଜଧାନୀ ପୁରୁଷପୁରଠାରେ ବାସୁମିତ୍ରଙ୍କ ସଭାପତିତ୍ୱରେ ଯେଉଁ ଧର୍ମସଭା ଆହୂତ ହୋଇଥିଲା, ସେହିଠାରୁ ହିଁ ବୌଦ୍ଧଧର୍ମାବଲମ୍ବୀମାନେ ଦୁଇଟି ସମ୍ପ୍ରଦାୟରେ ବିଭକ୍ତ ହେଲେ । ଯେଉଁମାନେ ପ୍ରାଚୀନପନ୍ଥୀ, ସେମାନେ ହୀନଯାନ ନାମରେ ଅଭିହିତ ଓ ଆଉ ଯେଉଁମାନେ ସଂସ୍କାରପନ୍ଥୀ, ସେମାନେ ମହାଯାନ ନାମରେ କଥିତ ହେଲେ । ଏହି ଦୁଇଟି ଦଳ ମଧ୍ୟରେ ଚାଲିଲା ପ୍ରତିଯୋଗିତା । ସଂସ୍କାରପନ୍ଥୀମାନେ ନିଜକୁ ମହାଯାନ ନାମରେ ଖ୍ୟାତ କରନ୍ତେ ସେମାନେ ହୀନଯାନ ପନ୍ଥୀମାନଙ୍କୁ ଘୃଣା କରିବାକୁ ଲାଗିଲେ । ଦୁଇଟି ନାମରୁ ଏହା ଅତି ସହଜରେ ଧରାପଡ଼େ ଯେ, ଗୋଟିଏ ଦଳ ନିଜକୁ ଉତ୍କୃଷ୍ଟ ମତବାଦର ପୋଷକ ବୋଲି ଧରିନେଇ ଅନ୍ୟଟିକୁ ନିକୃଷ୍ଟ ମତବାଦର ପୋଷକ ବୋଲି ସାଧାରଣରେ ପରିପ୍ରଚାର କରିବାକୁ ଲାଗିଲେ । ଅସଲକଥା ବୁଦ୍ଧଦେବ ଯେଉଁ ଧର୍ମ ପ୍ରଚାର କଲେ, ସେ ଧର୍ମର ବାହ୍ୟ ଓ ଗୁହ୍ୟ ରୂପକୁ ଧରି ଦୁଇଟି ସ୍ୱତନ୍ତ୍ର ମତବାଦ ପ୍ରଗତି ପଥରେ ଅଗ୍ରସର ହେଲା । ଯେତେବେଳେ ବୁଦ୍ଧଦେବ ବୋଧିଦ୍ରୁମ ମୂଳରେ ଜ୍ଞାନଲାଭ କଲେ, ସେତେବେଳେ ସେ ଏହି ପୃଥିବୀର ବାହ୍ୟ ଓ ଅନ୍ତଃସତ୍ତାକୁ ଦୁଇ ବିଭିନ୍ନ ଦିଗରୁ ବିଚାର କରିପାରିଥିଲେ । ଗୋଟିଏ ଦିଗ ହେଉଛି ଅଲୌକିକ ଜଗତର ଅନ୍ତର୍ନିହିତ ସତ୍ୟତା, ଆଉ ଗୋଟିଏ ହେଉଛି ପରିଦୃଶ୍ୟମାନ ଜଗତର ସତ୍ୟତା । ଅନ୍ୟ ଭାବରେ କହିବାକୁ ଗଲେ—ପ୍ରଥମଟି ହେଉଛି, ଅନ୍ତର୍ନିହିତ ଜଗତର ବାସ୍ତବ ଓ ଶାନ୍ତିପୂର୍ଣ୍ଣ ଅବସ୍ଥା; ଦ୍ୱିତୀୟଟି ହେଉଛି, ଦୁଃଖପୂର୍ଣ୍ଣ ବାହ୍ୟ ଜଗତର ଅବସ୍ଥା । ଏହି ଦୁଃଖପୂର୍ଣ୍ଣ ବାହ୍ୟ ଜଗତର ଅବସ୍ଥା ସମ୍ବନ୍ଧରେ ତଥ୍ୟ ସଗ୍ରାହକମାନେ ହେଲେ 'ହୀନଯାନ', ଆଉ ଅନ୍ତର୍ନିହିତ ଜଗତର ବାସ୍ତବ ଓ ଶାନ୍ତିପୂର୍ଣ୍ଣ ଅବସ୍ଥାର ତଥ୍ୟସଂଗ୍ରହକାରୀମାନେ ହେଲେ 'ମହାଯାନ' । ସେତେବେଳେ ଦେଶର ଅବସ୍ଥା ତଥା ପାରିପାର୍ଶ୍ୱିକ ଅବସ୍ଥା ଏବଂ ଜନସାଧାରଣଙ୍କର ଓ ତାଙ୍କ ଶିଷ୍ୟମାନଙ୍କର ମନୋଭାବ ଉତ୍ତମ ରୂପେ ହୃଦୟଙ୍ଗମ କରି ବୁଦ୍ଧଦେବ ପୃଥିବୀର ପ୍ରକୃତ ତତ୍ତ୍ୱ

ସମ୍ବନ୍ଧରେ ଯେଉଁ ଅନୁଭୂତ ଅର୍ଜ୍ଜନ କରିଥିଲେ, ତାକୁ ସାଧାରଣରେ ପ୍ରଚାର ନ କରି ପୃଥିବୀର ବୈଷୟିକ ଭାବରେ ପ୍ରକାଶକୁ ଶିଷ୍ୟମାନଙ୍କ ମଧ୍ୟରେ ପ୍ରଚାର କରିବାକୁ ଶ୍ରେୟ ମନେକଲେ । ତେଣୁ ତାଙ୍କର କେତେକ ଶିଷ୍ୟ ତାଙ୍କ ଜୀବିତାବସ୍ଥାରେ ଏବଂ ତାଙ୍କର ମୃତ୍ୟୁ ପରେ ପୃଥିବୀର ବୈଷୟିକ ଭାବ ପ୍ରଚାରରେ ମନ ବଳାଇଥିଲେ । ଏମାନଙ୍କୁ ମହାଯାନପନ୍ଥୀମାନେ 'ହୀନଯାନ' ନାମରେ ନାମିତ କଲେ । ନାଗାର୍ଜ୍ଜୁନ ଏହି ମହାଯାନ ଧର୍ମର ପ୍ରତିଷ୍ଠାତା । ମହାଯାନ ପୁଣି ଦୁଇଟି ଶାଖାରେ ବିଭକ୍ତ ହେଲା— ଯୋଗାଚାର ଓ ମାଧ୍ୟମିକ । ଯୋଗାଚାର ମତରେ ବସ୍ତୁ ମାତ୍ରେ ହିଁ ଅସତ୍ । ବିଜ୍ଞାନ କେବଳ ସତ୍ । ବାହ୍ୟବସ୍ତୁ ସ୍ୱପ୍ନ ପରି ଅଳୀକ । ମାଧ୍ୟମିକ ମତରେ ସମସ୍ତ ଶୂନ୍ୟ । ମହାଯାନ ଭଳି ହୀନଯାନ ମଧ୍ୟ ଦୁଇଟି ସ୍ୱତନ୍ତ୍ର ଶାଖାରେ ବିଭକ୍ତ ହୋଇଥିଲା— ବୈଭାଷିକ ଓ ସୌତ୍ରାନ୍ତିକ । ବୈଜ୍ଞାନିକ ମତରେ ବାହ୍ୟସମସ୍ତ ବସ୍ତୁ ପ୍ରତ୍ୟକ୍ଷ । ସୌତ୍ରାନ୍ତିକ ମତରେ ବୈଚିତ୍ର୍ୟ ହେତୁ ବସ୍ତୁ ସହଜରେ ଅନୁମେୟ । ନାଗାର୍ଜ୍ଜୁନଙ୍କ ପରେ ମୈତ୍ରେୟ ନାଥ, ଅସଙ୍ଗ, ବସୁବନ୍ଧୁ ଏବଂ ଦ୍ୱିତୀୟ ଅଶ୍ୱଘୋଷ ପ୍ରଭୃତି ମହାଯାନପନ୍ଥୀମାନେ ଏହି ଧର୍ମର ବିଭିନ୍ନ ପ୍ରକାର ରୂପରେଖ ଦେବାକୁ ଚେଷ୍ଟାକଲେ । ମାତ୍ର ନାଗାର୍ଜ୍ଜୁନଙ୍କ ସମୟରେ ଏହି ମହାଯାନ ଧର୍ମ ଖୁବ୍ ଲୋକପ୍ରିୟ ହୋଇ ଉଠିଥିଲା । ଏହି ଧର୍ମର ସ୍ଥାୟିତ୍ୱ ପାଇଁ ଏବଂ ଜନସାଧାରଣରେ ଏହାର କିପରି ବହୁଳ ପ୍ରଚାର ହେବ, ସେଥିପାଇଁ ନାଗାର୍ଜ୍ଜୁନ ବୁଦ୍ଧଙ୍କ ନାମ ଉଚ୍ଚାରଣରେ ଓ ମୂର୍ତ୍ତିପୂଜାରେ ଯେ ମୁକ୍ତି ମିଳିବ, ଏହା ପ୍ରଚାର କରିବାକୁ ଲାଗିଲେ । ତେଣୁ ଅଧିକାଂଶ ଲୋକ ବୁଦ୍ଧଙ୍କର ମୂର୍ତ୍ତିପୂଜାରେ ମନ ବଳାଇଲେ । କିନ୍ତୁ ଯେଉଁ ମହାଯାନ ସମ୍ପ୍ରଦାୟ ଅତ୍ୟନ୍ତ ଅହଙ୍କାର ସହିତ ଯାତ୍ରା ଆରମ୍ଭ କରିଥିଲେ, ସେମାନେ ବି ଶେଷ ପର୍ଯ୍ୟନ୍ତ ସେମାନଙ୍କର ନିଜର ବିଶେଷତ୍ୱ ଅକ୍ଷୁଣ୍ଣ ରଖିବାକୁ ଅସମର୍ଥ ହେଲେ । କାଳକ୍ରମେ ବହୁକାଳଗତ ପ୍ରାଦେଶିକ ଆଚାର ଓ ଘାଢନଢ ତଥା ନବୀନ ଆଦର୍ଶବାଦର କବଳରେ ପଡ଼ିବାରୁ ତାହାର ବି ଆସିଲା ପରିବର୍ତ୍ତନ । ମହାଯାନ ସମ୍ପ୍ରଦାୟ 'ବଜ୍ରଯାନ'ରେ ପରିଣତ ହେଲା । ଅନନ୍ତର ତିବ୍ବତର ବୋନ୍‌ଧର୍ମ (Bon Religion) ପ୍ରଭାବରେ ଏହା ତନ୍ତ୍ରର ଆଶ୍ରୟ ନେଲା ଏବଂ ସହଜ ଧର୍ମର ଏକାନ୍ତ ବିଶ୍ୱାସୀ ହେବାକୁ ଲାଗିଲା । ଆସିଲା ମାତୃଶକ୍ତି ଓ ଡାକିନୀ ପ୍ରଭୃତିଙ୍କ ପୂଜା—ବ୍ୟଭିଚାରିତା ଓ ଉଚ୍ଛୃଙ୍ଖଳତା କ୍ରମେ କ୍ରମେ ସେ ଧର୍ମରେ ଆସନ ଜମେଇ ବସିଲା । ଅତି ସହଜରେ କିପରି ନିର୍ବାଣପ୍ରାପ୍ତି ହେବ, ତାର ସନ୍ଧାନରେ ତନ୍ତ୍ରପନ୍ଥାବଲମ୍ବୀମାନେ ଧାବମାନ ହେଲେ । ମନୁଷ୍ୟର ମୂଲ୍ୟ ଯେ ସର୍ବୋତ୍କୃଷ୍ଟ, ସେମାନେ ଏହାର ସନ୍ଧାନ ପାଇଲେ । ଜାତିଭେଦ ପ୍ରଥା ମୂଳୁ ଭଜିଲା । ଯାଗଯଜ୍ଞରେ ଯେ ଆତ୍ମାର କଲ୍ୟାଣ ନାହିଁ, ସେମାନେ ତାହା ହୃଦୟଙ୍ଗମ କରିପାରିଲେ । କେବଳ ସହଜ ଧର୍ମାନୁଶୀଳନକୁ ହିଁ ସେମାନେ ଶ୍ରେୟ ମନେକଲେ । ଯେ ଧର୍ମବଳରେ ମନୁଷ୍ୟ ଅତି ସହଜରେ କୌଣସି ବିଷୟ ଆହରଣ କରିପାରେ—ଏହି ଭାବରୁ ଯେ ତନ୍ତ୍ରର ନାମକରଣ ହେଲା 'ସହଜିଆ' । ଏହି ସହଜିଆ ଧର୍ମ, ଦୁଃଖର କଥା, ସେମାନଙ୍କୁ

ପଞ୍ଚମକାର ସ୍ୱୀକାର କରିବାକୁ ଏକରକମ ଉତ୍ସାହିତ କଲା । ଏଥିରୁ ସୃଷ୍ଟି ହେଲା ଗୁରୁବାଦ । ଗୁରୁଙ୍କ ଉପଦେଶ ହେଲା ସେମାନଙ୍କର ଜୀବନଯାତ୍ରା ପଥରେ ଆଲୋକ-ବର୍ତ୍ତିକା । ମାତ୍ର ଯୋଗାଭ୍ୟାସ ଏମାନେ ସେପର୍ଯ୍ୟନ୍ତ ଛାଡ଼ି ନ ଥିଲେ । ମୁକ୍ତିର ପଥ ଖୋଜି ପାଇବାକୁ ହେଲେ ଯୋଗାଭ୍ୟାସ ଯେ ଦରକାର, ଏ କଥା ସେମାନେ ଉତ୍ତମ ରୂପେ ବୁଝିପାରିଥିଲେ । ବ୍ୟକ୍ତିସାଧନାରେ ମନ ନ ବଳାଇ ଏମାନେ ସାର୍ବଜନୀନ ମୁକ୍ତିରେ ମନ ବଳାଇଲେ । ତେଣୁ ଜାତିଭେଦ ରହିଲା ନାହିଁ । ଏମାନଙ୍କ ପ୍ରଧାନ ଲକ୍ଷ୍ୟ ହେଲା, ସହଜାନନ୍ଦ ଲାଭ କରିବା । ଯେଉଁ ଆନନ୍ଦରୁ ମନୁଷ୍ୟର ଜନ୍ମ, ପୁଣି ସେହି ଆନନ୍ଦରେ ମନୁଷ୍ୟର ପ୍ରତିଷ୍ଠା । ଯୋଗଦ୍ୱାରା ସେହି ଆନନ୍ଦ ଲାଭ କରିବାକୁ ହେବ । ତେଣୁ ସାଧନ-ସଙ୍ଗିନୀର ପ୍ରୟୋଜନ । କେହି କେହି କହନ୍ତି ଯେ ବୌଦ୍ଧ ସହଜିଆମାନଙ୍କର ସାଧନସଙ୍ଗିନୀ ନ ଥିଲେ; ମାତ୍ର ଏ କଥା ଭ୍ରମାତ୍ମକ । ପୃଥିବୀକୁ ଦୁଃଖରୁ ମୁକ୍ତ କରିବା ଏମାନଙ୍କର ଉଦ୍ଦେଶ୍ୟ । ଶୂନ୍ୟତା ଏବଂ କରୁଣାର ମଧ୍ୟସ୍ଥଳରେ ଏମାନଙ୍କୁ ଚାଲିବାକୁ ହେବ ।

କାଳକ୍ରମେ ବୌଦ୍ଧ ସହଜିଆ ବୈଷ୍ଣବଧର୍ମରେ ଆତ୍ମନିୟୋଗ କଲା । ଅବଶ୍ୟ ବୈଷ୍ଣବଧର୍ମ ତାକୁ ଯଥେଷ୍ଟ ସୁଯୋଗ ଓ ଅବସର ଦେଇଥିଲା । ବୈଷ୍ଣବ ସହଜିଆମାନଙ୍କ ମତରେ ସକଳ ଲୋକର ପ୍ରେମ ଆକର୍ଷଣ କରିବା ବିଧେୟ । ସ୍ତ୍ରୀ ଜାତିର ସ୍ନେହ, ମମତା, କାରୁଣ୍ୟ, କମନୀୟତା ପ୍ରଭୃତି ଗୁଣଗୁଡ଼ିକ ହାସଲ କରିପାରିଲେ ସକଳ ଲୋକର ପ୍ରେମାକର୍ଷଣ ସହଜସାଧ୍ୟ ହେବ ।

ଭକ୍ତି ମୁକ୍ତିଲାଭର ଏକମାତ୍ର ପନ୍ଥା । ବୈଧୀ, ରାଗାନୁଗା ଭେଦରେ ଭକ୍ତି ଦ୍ୱିବିଧ । ରାଗାନୁଗା ଅନ୍ତରାଶ୍ରୟୀ । ବୈଧୀ ଶାସ୍ତ୍ରାନୁମୋଦିତ । ତେଣୁ ରାଗାନୁଗା ଶ୍ରେଷ୍ଠ । ସହଜିଆମାନେ ଏହି ରାଗାନୁଗା ଭକ୍ତିର ଉପାସକ । ଏହି ରାଗାନୁଗା ଭକ୍ତିକୁ ଆଶ୍ରୟ କରି ପରବର୍ତ୍ତୀ କାଳର ବୌଦ୍ଧସହଜିଆ ବୈଷ୍ଣବଧର୍ମରେ ପ୍ରବେଶ ଲାଭ କଲା ।

ପରକୀୟା ରସତତ୍ତ୍ୱ ଏହି ସହଜିଆ ରସତତ୍ତ୍ୱର ଅନ୍ତରରେ ଆତ୍ମନିୟୋଗ କଲା । ସହଜିଆ ଏବଂ ପରକୀୟା ଅନେକ ସମୟରେ ପ୍ରାୟ ଏକ ଅର୍ଥରେ ବ୍ୟବହୃତ ହେଲା । ବୈଷ୍ଣବମାନେ ରାଧାକୃଷ୍ଣ ଲୀଳାକୁ ପରକୀୟା ଲୀଳାରେ ଅଭିହିତ କରିଅଛନ୍ତି ।

ପରକୀୟାର ଶବ୍ଦାର୍ଥ ହେଉଛି ଯାହା ପରର ଅଧିକାର ସ୍ୱୀକାର କରେ । ପରକୀୟା ତତ୍ତ୍ୱ ଯାହା ସହଜିଆ ତତ୍ତ୍ୱ ଦ୍ୱାରା ପରିବର୍ଦ୍ଧିତ । ପରିଣୀତା ପତ୍ନୀ ବ୍ୟତୀତ ଅପର ନାରୀସହ କେତେଗୁଡ଼ାଏ ରହସ୍ୟପୂର୍ଣ୍ଣ ଆଚାର ଅନୁଷ୍ଠିତ କରିବାକୁ ସହଜିଆମାନେ ମୁଖ୍ୟ ଉଦ୍ଦେଶ୍ୟ ବୋଲି ମନେକଲେ । "ଉତ୍କଳନୀଳମଣି" କହେ ଯେ, ଯାହା ସହିତ କାର୍ଯ୍ୟତଃ କୌଣସି ପ୍ରକାର ବିବାହ ଅନୁଷ୍ଠାନ ସମ୍ପାଦିତ ହୋଇ ନାହିଁ, ତାକୁଁ ସାଧନ-

ସଙ୍ଗିନୀ ରୂପେ ଗ୍ରହଣ କରି ରସପଥରେ ଅଗ୍ରସର ହେବାକୁ ହେବ । ପ୍ରେମ ବା ପ୍ରୀତି ପରକୀୟା ରସର ଆଶ୍ରୟସ୍ଥଳ । ଏହି ପ୍ରେମ ସହଜିଆମାନଙ୍କର ପ୍ରଧାନ ଅବଲମ୍ବନ ।

ଯାହାହେଉ, ଉତ୍କଳର ସ୍ୱନାମଧନ୍ୟ ପଞ୍ଚସଖାଙ୍କୁ କେହି କେହି ସହଜିଆ ବୋଲି ଅନୁମାନ କରିଅଛନ୍ତି । ମାତ୍ର ଅଭିନିବେଶ ସହକାରେ ଅନୁଧ୍ୟାନ କଲେ ଏହା ପ୍ରତୀୟମାନ ହୁଏ ଯେ, ଓଡ଼ିଶାର ପଞ୍ଚସଖାମାନେ ସହଜିଆ ଧର୍ମର ପୋଷାକ ନ ଥିଲେ । ଏମାନେ ଚୈତନ୍ୟ ଦେବଙ୍କର ପରମବନ୍ଧୁ ରୂପେ ସମ୍ମାନିତ ହେଉଥିଲେ । ଚୈତନ୍ୟଙ୍କ ପୂର୍ବରୁ ଆମ ଦେଶରେ ବୈଷ୍ଣବଧର୍ମର ପ୍ରସାର ଓ ପ୍ରଚାର ଥିଲା; ଏଥିରେ ସନ୍ଦେହ ନାହିଁ—ମାତ୍ର ସେ ଧର୍ମର ସ୍ୱରୂପ ଥିଲା ଭିନ୍ନ ପ୍ରକାରର । ଅନେକ ବଙ୍ଗୀୟ ସମାଲୋଚକଙ୍କ ମତରେ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ ବୈଷ୍ଣବଧର୍ମରେ ଐଶ୍ୱର୍ଯ୍ୟଭାବାତ୍ମକ ଉପାସନାର ପ୍ରାଧାନ୍ୟ ଥିଲା ଏକ ବିଶିଷ୍ଟ ଅଙ୍ଗ । ଖାଲି ଏତିକି ନୁହେଁ, ଶ୍ରୀକୃଷ୍ଣଙ୍କୁ ଭଗବାନଙ୍କ ପର୍ଯ୍ୟାୟରେ ପ୍ରତିଷ୍ଠିତ କରି ଭକ୍ତିବାଦର ପ୍ରତିଷ୍ଠା ହୋଇଥିଲା । କୃଷ୍ଣଙ୍କ ପ୍ରକୃତି ରୂପରେ ରାଧା ସ୍ୱୀକୃତ ହୋଇ ନ ଥିଲେ । ସ୍ୱକୀୟା ପ୍ରେମର ପ୍ରାଧାନ୍ୟ ସର୍ବତ୍ର ପରିଲକ୍ଷିତ ହେଉଥିଲା । ବିଷ୍ଣୁ, ବାସୁଦେବ ପ୍ରଭୃତି ମୂର୍ତ୍ତିର ପୂଜା ପ୍ରଚଳିତ ଥିଲା । ମାତ୍ର ଚୈତନ୍ୟଙ୍କ ପରେ ବୈଷ୍ଣବଧର୍ମରେ ଆସିଲା ମାଧୁର୍ଯ୍ୟ ଭାବାତ୍ମକ ଉପାସନାର ପ୍ରାଧାନ୍ୟ । କୃଷ୍ଣଙ୍କୁ ମନୁଷ୍ୟର ପର୍ଯ୍ୟାୟରେ ପ୍ରତିଷ୍ଠିତ କରି ଭକ୍ତିବାଦର ପ୍ରତିଷ୍ଠା । ଶ୍ରୀମତୀ ରାଧା କୃଷ୍ଣଙ୍କର ପ୍ରଧାନ ପ୍ରକୃତି ରୂପରେ ଗଣ୍ୟ । ଦୁହିଁଙ୍କ ମଧ୍ୟରେ ପରକୀୟା ପ୍ରେମର ପ୍ରାଧାନ୍ୟ—ମାତ୍ର ଏହା ସତ୍ୟ ନୁହେଁ । ଚୈତନ୍ୟଙ୍କ ବହୁ ପୂର୍ବରୁ ରାଧାକୃଷ୍ଣ ପୂଜା ମଧ୍ୟ ଥିଲା ।

ଚୈତନ୍ୟ କିଛି ନୂତନତ୍ୱ ଦେଖାଇ ନାହାନ୍ତି । ଆଉ କାହାରି ମତରେ ଚୈତନ୍ୟଙ୍କ ପୂର୍ବବର୍ତ୍ତୀ ଯୁଗରେ ରସଶାସ୍ତ୍ରରେ ସ୍ୱକୀୟ ଏକମାତ୍ର ରସ ଏବଂ ପରକୀୟ ରସାଭାସ ବୋଲି ପରିଗଣିତ ହେଉଥିଲା । ଚୈତନ୍ୟଙ୍କ ସମୟରେ ସ୍ୱକୀୟା ଓ ପରକୀୟା ଦୁଇଟି ରସପର୍ଯ୍ୟାୟରେ ଅନ୍ତର୍ଭୁକ୍ତ ହେଲା । କିନ୍ତୁ ଚୈତନ୍ୟଙ୍କ ପରବର୍ତ୍ତୀ ଯୁଗରେ ପରକୀୟା ହିଁ ଏକମାତ୍ର ରସପର୍ଯ୍ୟାୟର ଅନ୍ତର୍ଭୁକ୍ତ ହେବାକୁ ଲାଗିଲା । ଆସିଲା ବଂଶୀଧାରୀ କୃଷ୍ଣଙ୍କ ପୂଜା । ସ୍ୱକୀୟା ରହିଲା ଅନ୍ତରାଳରେ । ପ୍ରକୃତରେ ଆଉ କି ଅତି ପ୍ରାଚୀନ କାଳରୁ ଓଡ଼ିଶାରେ ସ୍ୱକୀୟା ଏବଂ ପରକୀୟା ରସର ପ୍ରସାର ଥିଲା । ତାହାର ପ୍ରମାଣ ହେଉଛି ଜୟଦେବ ଓ ରାମାନନ୍ଦଙ୍କ ମତ । ଏଥିରୁ ପ୍ରତିପନ୍ନ ହୁଏ ଯେ ଇତିପୂର୍ବରୁ ମଧ୍ୟ ଏଇ ଦୁଇ ରସର ସତ୍ତା । ଥିଲା ଭବଭୂତି କହିଛନ୍ତି—"ରସସ୍ତୁ ପରକୀୟାମ୍" । ଓଡ଼ିଶାରେ ପଞ୍ଚସଖାମାନେ କେବଳ ନିବୃତ୍ତି ମାର୍ଗର ଉପାସକ ଥିଲେ । ପ୍ରଥମତଃ ନିବୃତ୍ତି ମାର୍ଗରେ ସାଧନା ପନ୍ଥା ଅବଲମ୍ବନ କରି ପରେ ସାଧକ ଭାବରେ

ପରମାତ୍ମା ରୂପେ କୃଷ୍ଣଙ୍କର ଲୀଳାରସାସ୍ୱାଦନ କଲେ । ତାହାପରେ ନିବୃତ୍ତି ମାର୍ଗରେ ଆଶ୍ରୟ ନେଲେ ।

ଏମାନଙ୍କ ମତରେ କୃଷ୍ଣଙ୍କର ମର୍ତ୍ତ୍ୟଲୀଳାରେ ରାଧାଙ୍କର ପରକୀୟାଭାବ ଏବଂ ନିତ୍ୟରେ ସେହି ରାଧାଙ୍କର ସ୍ୱକୀୟାଭାବ । ଏହି ମତ, ଶ୍ରୀରୂପ ଗୋସ୍ୱାମୀ ମଧ୍ୟ ପୋଷଣ କରିଅଛନ୍ତି; କିନ୍ତୁ ଶ୍ରୀବିଶ୍ୱନାଥ ଚକ୍ରବର୍ତ୍ତୀ ନିତ୍ୟ ଗୋଲକରେ ମଧ୍ୟ ପରକୀୟ ରସକୁ ସ୍ୱୀକାର କରିଅଛନ୍ତି ।

ଯଦି ପଞ୍ଚସଖାଙ୍କୁ ସହଜିଆ ଧର୍ମାବଲମ୍ବୀ ବୋଲି କୁହାଯାଏ, ତାହାହେଲେ ଜଗନ୍ନାଥଙ୍କୁ ସହଜିଆ ଧର୍ମଦେବତା କହିବାକୁ ପଡ଼ିବ । ଚୈତନ୍ୟଙ୍କୁ ମଧ୍ୟ ସହଜିଆ ଧର୍ମର ଗୁରୁ ବୋଲି ସ୍ୱୀକାର କରିବାକୁ ପଡ଼ିବ । କାରଣ ପଞ୍ଚସଖାମାନେ ଚୈତନ୍ୟଙ୍କୁ ତାଙ୍କର ଗୁରୁ ବୋଲି ଧରି ନେଇଛନ୍ତି ଏବଂ ଏମାନେ ଚୈତନ୍ୟଙ୍କର ଯେ ଅନ୍ତରଙ୍ଗ ସଖା ଥିଲେ, ତାହାର ଯଥେଷ୍ଟ ପ୍ରମାଣ ବି ଅଛି । ପଞ୍ଚସଖାମାନେ ସେମାନଙ୍କର କାବ୍ୟରେ ଜଗନ୍ନାଥଙ୍କର ସ୍ତୁତିଗାନ କରିଯାଇଅଛନ୍ତି ଏବଂ ଶ୍ରୀଜଗନ୍ନାଥଙ୍କୁ ସେମାନଙ୍କର ଆରାଧ୍ୟ-ଦେବତା ରୂପେ ସ୍ୱୀକାର କରିଅଛନ୍ତି । ପୁଣି, ଏହି ପଞ୍ଚସଖାମାନେ ତାଙ୍କ ସାହିତ୍ୟରେ କୌଣସି ସ୍ଥଳରେ ନିଜକୁ ସହଜିଆ ବୋଲି କହି ନାହାନ୍ତି । ସହଜିଆଧର୍ମର କେତେକ ଭାବାନୁରୂପ ଭାବ କବୀର, ରାମାନନ୍ଦ, ସୁରଦାସ ପ୍ରଭୃତି ଉତ୍ତରାଞ୍ଚଳ ବୈଷ୍ଣବମାନଙ୍କ ଧର୍ମଗ୍ରନ୍ଥରେ ପରିଦୃଷ୍ଟ ହୁଏ । ତେଣୁ ଏମାନଙ୍କୁ ସହଜିଆ କହିବା ଯୁକ୍ତିଯୁକ୍ତ ହେବ ନାହିଁ । ଯୁକ୍ତି ବଳରେ କୌଣସି ଧର୍ମ ମୂଳର ବିଶୁଦ୍ଧ ରୂପେ ଆତ୍ମରକ୍ଷା କରିପାରେ ନାହିଁ । ଅନ୍ୟ ଧର୍ମର ପ୍ରଭାବ ପଡ଼ିଥାଏ । ଏମାନେ ଜ୍ଞାନମିଶ୍ରା ଭକ୍ତିର ଉପାସକ ଥିଲେ ସତ୍ୟ, ମାତ୍ର ଏମାନେ କଦାପି ସହଜ ଧର୍ମର ସମର୍ଥକ ନ ଥିଲେ । ଜ୍ଞାନମିଶ୍ରା ଭକ୍ତିର ଉପାସକମାନେ ଆବହମାନ କାଳରୁ ବୈଷ୍ଣବ ରୂପେ ପ୍ରସିଦ୍ଧି ଲାଭ କରିଅଛନ୍ତି । ବୌଦ୍ଧଧର୍ମର ଅବସାନ ପରେ ଏହି ସହଜିଆ ଧର୍ମ ଜ୍ଞାନମିଶ୍ରା ଭକ୍ତିର ଉପାସକଙ୍କ ମତକୁ ଗ୍ରହଣ କରି ଗୋଟିଏ ସ୍ୱତନ୍ତ୍ର ମତ ରୂପେ ପରିଚୟ ଲାଭ କଲା । ଏହି ମତର ଉପାସକ ଦେଶର ପ୍ରାୟ ସର୍ବାଂଶରେ ପରିଦୃଷ୍ଟ ହେଉଥିଲେ । ତେଣୁ ଜ୍ଞାନମିଶ୍ରା ଭକ୍ତିର ପୃଷ୍ଠପୋଷକମାନଙ୍କୁ ସହଜିଆ କହିବା ଉଚିତ ନୁହେଁ ।

ଯୋଗ ଓ ତନ୍ତ୍ର ବିଷୟ ସହଜିଆ ଓ ଜ୍ଞାନମିଶ୍ରା ଉଭୟଭକ୍ତି ପଦ୍ଧତିରେ ଦେଖାଯାଏ । ତଥାପି ଉଭୟଙ୍କୁ ସହଜିଆ ବୋଲି କହିବା ଭ୍ରମାତ୍ମକ । ବଙ୍ଗଦେଶର ସହଜିଆମାନଙ୍କର ଆଚାର ବ୍ୟବହାର ଆଉ ଓଡ଼ିଆ ବୈଷ୍ଣବମାନଙ୍କର ଆଚାର-ବ୍ୟବହାରରେ ପାର୍ଥକ୍ୟ ଯଥେଷ୍ଟ । ତେଣୁ ଓଡ଼ିଶାର ବୈଷ୍ଣବମାନଙ୍କୁ ସହଜିଆ ନ କହି ଜ୍ଞାନମିଶ୍ରା ଭକ୍ତିର ଉପାସକଙ୍କ ଧର୍ମପଦ୍ଧତିରେ ଅବଶ୍ୟ କେତେକଙ୍କ ସାମ୍ୟ ପରିଦୃଷ୍ଟ ହୁଏ । ତଥାପି ଉଭୟଙ୍କୁ ଏକ ଧର୍ମର

ଉପାସକ ବୋଲି କହିବା ଅନ୍ୟାୟ । ଓଡ଼ିଶାର ବୈଷ୍ଣବମାନେ ସାକାର ଏବଂ ନିରାକାର —ଉଭୟର ଉପାସକ । ବଙ୍ଗଦେଶର ବୈଷ୍ଣବମାନେ କେବଳ ସାକାର ଉପାସକ । ଓଡ଼ିଶାର ବୈଷ୍ଣବମାନଙ୍କର ଶୂନ୍ୟ ବୁଦ୍ଧଙ୍କ ଶୂନ୍ୟଠାରୁ ପୃଥକ୍ । ବୁଦ୍ଧଙ୍କ ମତରେ ଏହି ଜଗତ କିଛି ନୁହେଁ – ବୁଦ୍ଧଙ୍କର ଏହି ଯେଉଁ ଶୂନ୍ୟ, ଏଥିରେ କୌଣସି ସତ୍ତା ନାହିଁ । ମାତ୍ର ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ମଧ୍ୟରେ ରାଧାକୃଷ୍ଣଙ୍କ ଲୀଳା ହେଉଥିବାର କଥା ଅଚ୍ୟୁତାନନ୍ଦ ନିଜେ ତାଙ୍କ ଗ୍ରନ୍ଥରେ ଜଣାଇ ଅଛନ୍ତି । ସେହି ଶୂନ୍ୟରେ ରାଧାକୃଷ୍ଣଙ୍କ ଲୀଳା ସର୍ବଦା ପ୍ରଚଳିତ । ଯୋଗ ମତରେ ଶୂନ୍ୟକୁ ଆକାଶ ବୋଲି ଧରାଯାଇଛି । ମହାଶୂନ୍ୟରୁ ଏ ଶୂନ୍ୟ ଜାତ ।

ମହାଶୂନ୍ୟର **ଅର୍ଥ** ପୃଥିବୀର ଅନସ୍ତିତ୍ୱଭାବ । ସୃଷ୍ଟି ଯେତେବେଳେ ନ ଥିଲା, କେବଳ ଭଗବାନ ଥିଲେ । ସେ ପ୍ରକୃତିକୁ ସୃଷ୍ଟି କଲେ । ସେହି ପ୍ରକୃତିକୁ ମହାଶୂନ୍ୟ କୁହାଯାଇଛି । ବେଦାନ୍ତର ମତ ମଧ୍ୟ ଠିକ ଏହିପରି । ବେଦାନ୍ତ ମତରେ ସେହି ମହାଶୂନ୍ୟକୁ ଚିହ୍ନି ପାରିଲେ ପରମାତ୍ମାର ଜ୍ଞାନ ହେବ । ସେହି ମହାଶୂନ୍ୟକୁ ବ୍ରହ୍ମମୟ ରୂପ ଧରିବାକୁ ହେବ । ଅନେକଙ୍କ ମତରେ ସାଂଖ୍ୟର ଶୂନ୍ୟ ସହ ବୌଦ୍ଧଶୂନ୍ୟର ସାମାନ୍ୟ ସାମ୍ୟ ଅଛି । ଯାହାହେଉ, ସହଜିଆମାନଙ୍କର ଯେଉଁ ଶୂନ୍ୟୋପଲବ୍ଧି, ତାହା ଓଡ଼ିଶାର ପଞ୍ଚସଖା ଦର୍ଶନରେ ନାହିଁ ।

ସହଜିଆମାନେ ପ୍ରବୃତ୍ତିମାର୍ଗର ଉପାସକ; ମାତ୍ର ପଞ୍ଚସଖାମାନେ ପ୍ରଧାନତଃ ନିବୃତ୍ତିମାର୍ଗର ଉପାସକ ଥିଲେ । ନିଜେ ଅଚ୍ୟୁତାନନ୍ଦ ପ୍ରବୃତ୍ତିକୁ ପରିହାର କରିବା ପାଇଁ ତାଙ୍କ ଲେଖାରେ ନିର୍ଦ୍ଦେଶ ଦେଇ ଯାଇଅଛନ୍ତି । ତାଙ୍କ ଶୂନ୍ୟସଂହିତାରେ ସେ କହିଛନ୍ତି—

"ହିନ୍ଦୁ ଭଜେ ଅଲେଖ,
ତୁରୁକ ଭଜେ ଅଲେଫ" ।

ଏହି ଅଲେଖ କଥାଟି ସହଜିଆଧର୍ମରେ ପ୍ରଚଳିତ ଥିଲା ବୋଲି ଅନେକ ପଣ୍ଡିତଙ୍କର ମତ । ଓଡ଼ିଶାର ପଞ୍ଚସଖାମାନେ ପରମ ଯୋଗୀ ଓ ପରମ ଜ୍ଞାନୀ ଥିଲେ । ଅଚ୍ୟୁତାନନ୍ଦଙ୍କ ପ୍ରଣୀତ ଗୁରୁଭକ୍ତିଗୀତା ପାଠ କଲେ ଜଣାଯାଏ ଯେ, ପଞ୍ଚସଖାମାନେ ଚୈତନ୍ୟଙ୍କର ଅନ୍ତରଙ୍ଗ ବନ୍ଧୁ ଥିବାର ଚୈତନ୍ୟ ବଳରାମଙ୍କୁ ରାମ-ତାରକମନ୍ତ୍ର, ଜଗନ୍ନାଥଙ୍କୁ ଷୋଳକଳା ଓ ବତିଶ ଅକ୍ଷର ମନ୍ତ୍ର, ଯଶୋବନ୍ତଙ୍କୁ ଶ୍ୟାମ ପଞ୍ଚାକ୍ଷର ମନ୍ତ୍ର, ଅନନ୍ତଙ୍କୁ ଏକାକ୍ଷର ମନ୍ତ୍ର ଏବଂ ଅଚ୍ୟୁତଙ୍କୁ ଅଷ୍ଟାକ୍ଷର ମନ୍ତ୍ର ଦେଇଥିଲେ । ଚୈତନ୍ୟ ସ୍ୱୟଂ ସ୍ତ୍ରୀ ମୁଖ ଦର୍ଶନ କରୁ ନ ଥିଲେ ଏବଂ ଜଣେ ଅତି ଉଚ୍ଚକୋଟୀର ଯୋଗୀ ଥିଲେ । ତାଙ୍କର ସଖାମାନେ ବା କାହିଁକି ସହଜ ମାର୍ଗର ପଥିକ ହେବେ ? ଭାରତର ଅନ୍ୟାନ୍ୟ ଅଞ୍ଚଳର ବୈଷ୍ଣବମାନଙ୍କ ସହିତ ଏହି ଉତ୍କଳୀୟ

ବୈଷ୍ଣବମାନଙ୍କ ସାମଞ୍ଜସ୍ୟ ଅଛି, ମାତ୍ର ଗୌଡ଼ୀୟ ବୈଷ୍ଣବମାନଙ୍କ ସହିତ ଏମାନଙ୍କର ତେତେ ସାମଞ୍ଜସ୍ୟ ନାହିଁ । ଯୋଗସାଧନା ଭଗବତ୍ପ୍ରାପ୍ତି ଓ ଜ୍ଞାନାର୍ଜନର ଅନୁକୂଳ । ତେଣୁ ପଞ୍ଚସଖାମାନେ ସେମାନଙ୍କ ଗ୍ରନ୍ଥରେ ବାରମ୍ବାର ଏହି ଯୋଗସାଧନ କଥା ଉଲ୍ଲେଖ କରିଛନ୍ତି । ଗୌଡ଼ୀୟ ବୈଷ୍ଣବଧର୍ମରେ ଯୋଗର ଉଲ୍ଲେଖ ନାହିଁ । ପୂର୍ବରୁ କୁହାଯାଇଛି, ଅଚ୍ୟୁତାନନ୍ଦଙ୍କ ଶୂନ୍ୟରେ ବ୍ରହ୍ମ ଓ ଜ୍ୟୋତିର ଅବଧାରଣା କରାଯାଇଛି ।

ଖାଲି ଏତିକି ନୁହେଁ, ସେମାନଙ୍କ ଭକ୍ତିପଦରେ ପିଣ୍ଡ ବ୍ରହ୍ମାଣ୍ଡର ପରି-କଳ୍ପନା ଦେଖାଯାଏ । ସହଜିଆଧର୍ମରେ ମଧ୍ୟ ଏହି ପିଣ୍ଡବ୍ରହ୍ମାଣ୍ଡବାଦ ଅଛି । ଏହା ପୁଣି ହିନ୍ଦୁମାନଙ୍କର ଯୋଗ ତନ୍ତ୍ରରେ ମଧ୍ୟ ରହିଛି । ଏହି ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ଅବଧାରଣା ଓଡ଼ିଆ ବୈଷ୍ଣବମାନଙ୍କର ଅନ୍ୟତମ ବିଶେଷତ୍ୱ । ପଞ୍ଚସଖାମାନଙ୍କ ସାହିତ୍ୟରେ ଏହାର ଉଲ୍ଲେଖ ବହୁଳ ପରିମାଣରେ ଅଛି । ଏହାଙ୍କ ପୂର୍ବରୁ ମଧ୍ୟ ଏହି ପିଣ୍ଡ ବ୍ରହ୍ମାଣ୍ଡର ପରିଚୟ ଆମ ସାହିତ୍ୟରେ ମିଳେ । ଉଦାହରଣ ସ୍ୱରୂପ ସାରଳା ଦାସ କହିଛନ୍ତି—

"ନାଭିଠାରୁ ଯେ ଉପର ତାଳୁ ଯାକେ
ତେତିଶ କୋଟି ଦେବ ଅଛନ୍ତି ଏକେ ଏକେ ।"

ଗୌଡ଼ୀୟ ବୈଷ୍ଣବମାନଙ୍କ ସାହିତ୍ୟରେ ଏହି ପିଣ୍ଡବ୍ରହ୍ମାଣ୍ଡର ପରିଚୟ କ୍ୱଚିତ୍ ମିଳେ । ଓଡ଼ିଶାର ପଞ୍ଚସଖାମାନେ ବଡ଼ ଉଦାର, ଦୟାଳୁ, ତ୍ରିକାଳଦର୍ଶୀ । ମାତ୍ର ଗୌଡ଼ୀୟ ବୈଷ୍ଣବମାନେ ସେପରି ଉଦାର ନୁହନ୍ତି କି ତ୍ରିକାଳଦର୍ଶୀ ନୁହନ୍ତି । ସେମାନଙ୍କ ମଧ୍ୟରୁ କେହି କେହି ବଡ଼ ଈର୍ଷାପରାୟଣ । ପଞ୍ଚସଖାମାନଙ୍କର ଉଚ୍ଚ ଦାର୍ଶନିକ ଭାବ ଦେଖି କେତେକ ଗୌଡ଼ୀୟ ସହଜିଆ ବୈଷ୍ଣବ ଉତ୍କଳୀୟଙ୍କୁ ଈର୍ଷା ଦୃଷ୍ଟିରେ ଦେଖୁଥିଲେ । ଗୌଡ଼ୀୟ ବୈଷ୍ଣବମାନଙ୍କ କୃତ ବୈଷ୍ଣବଗ୍ରନ୍ଥ ଚୈତନ୍ୟ ଚରିତାମୃତ, ଚୈତନ୍ୟ ଭାଗବତ ଓ ଚୈତନ୍ୟ ମଙ୍ଗଳରେ ପଞ୍ଚସଖାମାନଙ୍କର ଉଲ୍ଲେଖ ନାହିଁ କହିଲେ ଚଳେ ।

ଈଶ୍ୱରଦାସଙ୍କ କୃତ ଓଡ଼ିଆ ଚୈତନ୍ୟ ଭାଗବତ ଗ୍ରନ୍ଥରେ ଅଛି ଯେ, ଚୈତନ୍ୟ ରାମାନନ୍ଦ, ସାର୍ବଭୌମ ଓ ପଞ୍ଚସଖାମାନଙ୍କ ସହିତ ଉତ୍କଳରେ "ନାନା ସ୍ଥାନରେ ଲୀଳା କରିଥିଲେ । ଚୈତନ୍ୟ ଜ୍ଞାନମିଶ୍ରା ଭକ୍ତିର ସମର୍ଥକ ଥିବାର ଅନେକ ପ୍ରମାଣ ଉକ୍ତ ଗ୍ରନ୍ଥରେ ସୁନ୍ଦର ଭାବରେ ସନ୍ନିବେଶିତ ହୋଇଛି ବୋଲି ପଣ୍ଡିତ ପ୍ରବର ୰ ଆର୍ତ୍ତବଲ୍ଲଭ ମହାନ୍ତି ମତ ଦେଇଛନ୍ତି । ମାତ୍ର ଗୌଡ଼ୀୟ ବୈଷ୍ଣବମାନେ ଚୈତନ୍ୟଙ୍କୁ ଶୁଦ୍ଧା-ଭକ୍ତିର ଉପାସକ ବୋଲି କହିଅଛନ୍ତି । ଏଥିରୁ ସହଜରେ

ଅନୁମେୟ ଯେ, ଗୌଡ଼ୀୟ ବୈଷ୍ଣବମାନେ ଚୈତନ୍ୟଙ୍କୁ ଜଣେ ସାଧାରଣ ଧର୍ମ-ପ୍ରଚାରକ ବୋଲି ଗ୍ରହଣ କରିଅଛନ୍ତି । ମାତ୍ର ଓଡ଼ିଶାର ବୈଷ୍ଣବ ତଥା ପଞ୍ଚସଖାମାନେ କହନ୍ତି ଯେ, ଚୈତନ୍ୟ ସର୍ବଧର୍ମର ତଥା ସର୍ବପ୍ରକାର ଭକ୍ତିର ସମର୍ଥକ ଥିଲେ । ଗୌଡ଼ୀୟମାନଙ୍କ ମତରେ ଚୈତନ୍ୟ, ଜଗନ୍ନାଥ, ଅଚ୍ୟୁତ ଓ ବଳରାମ ପ୍ରଭୃତି ପଞ୍ଚସଖାମାନଙ୍କୁ ନବଭକ୍ତମଣ୍ଡଳୀରୁ ବହିଷ୍କୃତ କରିଥିଲେ, ମାତ୍ର ଏହା ସମ୍ପୂର୍ଣ୍ଣ ମିଥ୍ୟା ।

ଚୈତନ୍ୟଙ୍କର ଅପରିହାର୍ଯ୍ୟ ପ୍ରଭାବ ଓଡ଼ିଶାର ପଞ୍ଚସଖାମାନଙ୍କ ଉପରେ ପରିଫଳିତ ହୋଇଅଛି । ସେମାନେ ଚୈତନ୍ୟଙ୍କୁ ଗୁରୁ ବୋଲି ଗ୍ରହଣ କରି ନିଜର ଜୀବନକୁ ଆଦର୍ଶ ଭାବରେ ପରିଚାଳିତ କରିଥିଲେ । ମାତ୍ର ଗୌଡ଼ୀୟ ବୈଷ୍ଣବମାନେ ଚୈତନ୍ୟଙ୍କ ପରେ ସହଜିଆ ଧର୍ମକୁ ସମ୍ପୂର୍ଣ୍ଣରୂପେ ଆଲିଙ୍ଗନ କରିବାକୁ ଲାଗିଲେ । ଆସିଲା ଅସଂଯମର ଲୀଳା । କ୍ରମେ ଯୋଗକୁ ପରିହାର କରିବାଦ୍ୱାରା ସେମାନଙ୍କର ଚରିତ୍ରସଂଯମ ଏକାବେଳକେ ନଷ୍ଟ ହୋଇଗଲା । ଆସିଲା ଧର୍ମରେ ବ୍ୟଭିଚାର । ଶୁଣାଯାଏ, ଏକ ଦିନେ ଅନେକ ସହଜିଆ ବୈଷ୍ଣବ-ବୈଷ୍ଣବୀ ଗୋଟିଏ ମେଳାରେ ନେଡ଼ା-ନେଡ଼ୀରେ ପରିଣତ ହୋଇଗଲେ । ମାତ୍ର ଏହି ପ୍ରକାର ପରିବର୍ତ୍ତନ ଓ ପରିଣତି ଓଡ଼ିଶାର ବୈଷ୍ଣବମାନଙ୍କ ଆଚରଣରେ କଦାପି ପରିଲକ୍ଷିତ ହୁଏ ନାହିଁ । ପଞ୍ଚସଖା-ମାନଙ୍କର ଆଚରଣ ଦେଖିଲେ ମନେହୁଏ, ସେମାନେ ଜଣେ ଜଣେ ଦେବୋପମ ବ୍ୟକ୍ତି ଥିଲେ । ସେମାନେ ପରମାତ୍ମାଙ୍କର ଆଶୀର୍ବାଦ ଲାଭ କରିପାରିଥିଲେ । ତେଣୁ ଏହି ପଞ୍ଚସଖାମାନଙ୍କୁ ସହଜିଆ ବୈଷ୍ଣବ କହିବା ଅଯୌକ୍ତିକ ।



# ଭକ୍ତି ସାହିତ୍ୟ

ପାଦାବଲମ୍ବନପୂର୍ବକ ପ୍ରେମମୁଗ୍ଧ ବାଦ୍ୟ ନୃତ୍ୟାଦି ସାହାଯ୍ୟରେ ଧ୍ୟେୟ ସ୍ୱରୂପର ନିୟନ୍ତ୍ରଣ ହିଁ ଭକ୍ତି ଭାବର ସୂଚକ । ସେବା ଅର୍ଥକ ଭଜ ଧାତୁର ଭାବେ ଅକ୍ତି ପ୍ରତ୍ୟୟ ଦ୍ୱାରା ଏହି ଭକ୍ତି ଶବ୍ଦର ନିଷ୍ପତ୍ତି ହୋଇଅଛି । ଏହା ତ୍ରିବିଧ : କାୟିକ, ବାଚିକ ଓ ମାନସିକ । ସ୍ତୁତିସ୍ତୋତ୍ରାଦି ବାଚିକ । ତାଳ ବାଦ୍ୟାଦି କାୟିକ, ମାତ୍ର ଧ୍ୟାନାଦି ଦ୍ୱାରା ଧ୍ୟେୟ ସ୍ୱରୂପର ଭାବନା ହିଁ ମାନସିକ ଭକ୍ତି ରୂପେ ପରିଗଣିତ । ଭଜନ ଉପାସନା ସାହାଯ୍ୟରେ କାୟମନୋବାକ୍ୟରେ ଏହା ହିଁ ପ୍ରକଟିତ ହୋଇଥାଏ ।

ସାହିତ୍ୟ ସେହିପରି ଶବ୍ଦ ଓ ଅର୍ଥର ସମୁଚିତ ସଂଯୋଗ ତଥା ପ୍ରକାଶ । ହିତକର ବିଷୟମାନଙ୍କର ରସାଳ ପ୍ରକାଶନ ହିଁ ସାହିତ୍ୟ । ପୁରାଣାଦିରେ ଭକ୍ତିମୂଳକ ସାହିତ୍ୟର ସ୍ୱରୂପ ପ୍ରକଟିତ । ଯୋଗ ସୂତ୍ରରେ ଭକ୍ତି ଶବ୍ଦର ଅର୍ଥ ହେଉଛି, "ଈଶ୍ୱରେ ପରାନୁଭକ୍ତି ।" ପରା ଶବ୍ଦର ଅର୍ଥ— ଅନନ୍ୟ ବିଷୟକ ଅନୁରାଗ ବା ପ୍ରେମ । ତାହା ପୁଣି ଦ୍ୱିବିଧ । ପରା ଓ ଅପରା । ଅପରା ଭକ୍ତି ଯାହାକି କାୟ-ବଚନରେ ପାଦ ବନ୍ଦନାଦି ବା ଗୁଣ ସ୍ତବନାଦି ରୂପକର୍ମରେ ସଙ୍ଘଟିତ ହୋଇଥାଏ । କିନ୍ତୁ ପରାଭକ୍ତି କେବଳମାତ୍ର ଆତ୍ମସମର୍ପଣ ରୂପ ସର୍ବେନ୍ଦ୍ରିୟ କର୍ମମାନଙ୍କର ଈଶ୍ୱରାର୍ପଣ । ଅପରା ସୋପାଧିକ; ପରା ନିରୁପାଧିକ । ନାମ ରୂପ ବିହୀନ କେବଳ ଧ୍ୟେୟ ପର ଭାବରେ ନିର୍ମଳ ସକଳ ହୃଷୀକରେ ହୃଷୀକେଶଙ୍କର ଯେଉଁ ସେବା ତାହା ହିଁ ପରା ଭକ୍ତି ବା ଶ୍ରେଷ୍ଠ ଭକ୍ତି ରୂପେ ବିହିତ । ଯଥାର୍ଥରେ ଉକ୍ତି ଅଛି—

"ନାମ ରୂପ ବିନିର୍ମୁକ୍ତଂ ତତ୍ପରତ୍ୱେଃ ନିର୍ମଳଂ
ହୃଷୀକେଣ ହୃଷୀକେଶ ସେବନମ୍ ଭକ୍ତିରୁଚ୍ୟତେ ।"

ଯେକୌଣସି ବିବେଚନୀୟ ତଥା ପ୍ରକୃତ ସାହିତ୍ୟ ତାହା ଭକ୍ତିମୂଳକ । ଆଦିକାବ୍ୟ ରାମାୟଣରେ ବାଲ୍ମୀକିଙ୍କର ନାରଦଙ୍କ ପ୍ରତି ଯେଉଁ ପ୍ରଥମ ପ୍ରଶ୍ନ ତାହା ଈଶ୍ୱରୀୟ ଗୁଣରେ ହିଁ କରାଯାଇଅଛି । ଯହିଁରେ ନାରଦଙ୍କର ରାମଚରିତ କୀର୍ତ୍ତନ ହିଁ ନିହିତ । ପରେ ସେହି ଈଶ୍ୱର ମାତ୍ର ବୃତ୍ତି ଅଦ୍ୱିତୀୟ ଗୁଣ ଗ୍ରାମଣୀ, ବୀର୍ଯ୍ୟ ବୀର୍ଯ୍ୟାତିବାୟ୍ୟ, ଧାର୍ମିକତା କୃତଜ୍ଞତା, ମତଜ୍ଞତା ପ୍ରଭୃତି ନିଖିଳ ଗୁଣସମ୍ପନ୍ନ ପୁରୁଷ ରାମାବତାରଙ୍କ ଶ୍ରବଣ କରି ତାଙ୍କ ପ୍ରେମରେ

ଆକୃଷ୍ଟ ହୋଇ ରାମାୟଣ ପ୍ରଣୟନ କରିଅଛନ୍ତି । ଉକ୍ତ ରାମାୟଣ ଭକ୍ତିମୂଳକ-ରାମଭକ୍ତ-ମାନଙ୍କର ପରମାଦରଣୀୟ । ଏହିପରି ଅନ୍ୟ ପୁରାଣାଦିମାନଙ୍କରେ ଉପକ୍ରମରେ ଯେଉଁ ଅବତରଣିକା ପରିଦୃଷ୍ଟ ହୁଏ ତାହା ସମସ୍ତ ଭକ୍ତିଗର୍ଭିତ । ଏହାବ୍ୟତୀତ ଯେଉଁ ପ୍ରସିଦ୍ଧ କାବ୍ୟାଦି ରହିଛି ତାହା ମଧ୍ୟ ଭକ୍ତ୍ୟାଶ୍ରୟୀ । ନଳଙ୍କଠାରେ ଅସାଧାରଣ ଭାବ ପୋଷଣ ପୂର୍ବକ ଶ୍ରୀହର୍ଷ ନୈଷଧ କାବ୍ୟ ନିର୍ମାଣ କରିଯାଇଅଛନ୍ତି । କାଳିଦାସ ରଘୁବଂଶର ଅନୁପମ ଗୁଣ ଗାରିମାରେ ଆକୃଷ୍ଟ ହୋଇ ରଘୁବଂଶ ଓ ପାର୍ବତୀପରମେଶ୍ୱରଙ୍କଠାରେ ଭକ୍ତି ଭାବାକୃଷ୍ଟ ହୋଇ କୁମାରସମ୍ଭବ ପ୍ରଣୟନ କରିଛନ୍ତି କହିଲେ ଅସମୀଚୀନ ହେବନାହିଁ । ସେହିପରି 'ଶିଶୁପାଳ ବଧ', 'କିରାତାର୍ଜ୍ଜୁନୀୟମ୍' ପ୍ରଭୃତି କାବ୍ୟ ସୃଷ୍ଟି ମୂଳରେ ସେହି ବର୍ଣ୍ଣନୀୟ ମୁଖ୍ୟ ପୁରୁଷଙ୍କ ପ୍ରତି କବିଙ୍କର ପ୍ରବଣ ଭକ୍ତିଭାବ ସନ୍ନିହିତ । ଆନନ୍ଦଲହରୀ, ଗଙ୍ଗାଲହରୀ ଓ ନାନାବିଧ ସହସ୍ର ନାମାବଳୀ ଯେକୌଣସି ସାହିତ୍ୟ ସୃଷ୍ଟିରେ ଯେଉଁ ଭାବ ପ୍ରକଟିତ ତାହାର ମୂଳ ବୀଜ ହିଁ ଭକ୍ତି । କାବ୍ୟସ୍ତୋତ୍ର ଓ ପୁରାଣମାନଙ୍କରେ ପ୍ରାୟଶଃ କାୟିକ ଓ ବାଚିକ ଭକ୍ତିର ପରିଚୟ ମିଳେ । କିନ୍ତୁ ମାନସ ଭକ୍ତିର ସ୍ୱରୂପ ଉପାସନା ଓ କାଣ୍ଡ ଉପନିଷଦମାନଙ୍କରେ ଉନ୍ନୀତ ତଥା ବର୍ଣ୍ଣିତ ହେବାର ପରିଲକ୍ଷିତ ହୁଏ ।

ଅଧିକାଂଶ ଭକ୍ତିସମ୍ବଳିତ ବିଷୟ ଭାରତୀୟ ଆର୍ଯ୍ୟ ସାହିତ୍ୟ ଜଗତରେ ବ୍ୟାପ୍ତ । ଭକ୍ତିର ବ୍ୟାପକତା ତଥା ଉତ୍କର୍ଷ ଦର୍ଶାଇବା ସକାଶେ ଉପନିଷଦରୁ ବହୁ ଉଦାହରଣ ଦିଆଯାଇପାରେ । କାରଣ ଉପନିଷଦ ଭାଗରେ ମୁମୁକ୍ଷୁମାନଙ୍କର ସ୍ୱରୂପ ଶକ୍ତି କେବଳ ଭକ୍ତିନିଷ୍ଠ ନୁହେଁ, ତାହା ଭକ୍ତି-କୁକ୍ଷିଗତ ମଧ୍ୟ । ବର୍ତ୍ତମାନ ସାହିତ୍ୟ ଓ ବିଭିନ୍ନ ଶାସ୍ତ୍ରରେ ଏହି ଭକ୍ତିବାଦ କିପରି ନାନା ରୂପରେ ପରିସ୍ଫୁଟ ତାହା ହିଁ ବିଚାର୍ଯ୍ୟ । ପ୍ରଥମତଃ ଶ୍ରୀମଦ୍‌ଭାଗବତ ମହାପୁରାଣରେ "ସତ୍ୟମ୍ ପରମ୍ ଧୀମହି" ଏହି ଶ୍ଳୋକାଂଶରେ ଅଖଣ୍ଡ ଭକ୍ତିଭାବ ସୁଲକ୍ଷିତ । ଭାଗବତ ଗ୍ରନ୍ଥର ପ୍ରାୟ ସର୍ବତ୍ର ନବଧା ଭକ୍ତିର ବିସ୍ଫୁରଣ ଲକ୍ଷିତ । ଦେବୀ ଭାଗବତରେ "ସର୍ବଚୈତନ୍ୟ ରୂପା ତା—ମାଦ୍ୟାଂ ବିଦ୍ୟାଂ ଚ ଧୀମହି ବୁଦ୍ଧିମ୍ ଯା ନଃ ପ୍ରଚୋଦୟାତ୍" ଏହି ଉଦ୍ଧୃତାଂଶରେ ଭକ୍ତିଭାବ ହିଁ ପରିସ୍ଫୁଟ । ଏହିପରି ସକଳ କର୍ମକାଣ୍ଡରେ ମଧ୍ୟ ଈଶ୍ୱର ପ୍ରପତ୍ତି ରୂପ ଭକ୍ତି ପ୍ରକଟିତ ।

ବ୍ରାହ୍ମଣାଦି ବର୍ଣ୍ଣମାନଙ୍କର ପୂର୍ବୋତ୍ଥାନ ଠାରୁ ଆରମ୍ଭକରି ଶୟନାନ୍ତ ପର୍ଯ୍ୟନ୍ତ ଯାବତୀୟ ନିତ୍ୟ ନୈମିତ୍ତିକ କର୍ମମାନଙ୍କରେ ଭକ୍ତି ଅଭିବ୍ୟଞ୍ଜିତ ହୋଇଯାଏ । ମହାକବିମାନେ ସାହିତ୍ୟ ଜଗତରେ ଧର୍ମାର୍ଥକାମମୋକ୍ଷାଦି ଚତୁର୍ବର୍ଗକୁ ସର୍ବତ୍ର ପରିସ୍ଫୁଟ କରିଅଛନ୍ତି । ଭକ୍ତି ସାହିତ୍ୟ ବା ପୁରାଣାଦିରେ ଯାହା ଉପଜୀବ୍ୟ ବିଷୟ ପରିଦୃଷ୍ଟ ହୁଏ ସେଥିରେ ଭଗବାନଙ୍କ ଗୁଣାନୁବାଦ ବର୍ଣ୍ଣନର ଧର୍ମଭାବ ଏବଂ ତନ୍ମୂଳକ ଇତର ପୁରୁଷାର୍ଥଗୁଡ଼ିକ ସ୍ୱତଃ ପ୍ରାପ୍ତ ହୋଇଥାନ୍ତି । ରାମଚନ୍ଦ୍ରଙ୍କର ଆବିର୍ଭାବରେ ରାବଣାଦିମାନଙ୍କ

ପରି କର ନାହିଁ—ଏହିପରି କର୍ତ୍ତବ୍ୟ ଅକର୍ତ୍ତବ୍ୟ ନିର୍ଦ୍ଦେଶଦ୍ୱାରା ସାହିତ୍ୟ ମାନବ ସମାଜର ହିତସମ୍ପାଦକ ରୂପେ ବିବେଚିତ । ବୈଷ୍ଣବ ପଦାବଳୀ ସାହିତ୍ୟରେ ମଧ୍ୟ ଧର୍ମ ଓ ଭକ୍ତିମୂଳକ ନିର୍ଗୁଣ ବ୍ରହ୍ମାତ୍ମକ ରାମକୃଷ୍ଣାଦି ଅବତାରମାନଙ୍କର ପରିକଳ୍ପନା ହିଁ ଅଭିବାଞ୍ଛିତ ହୋଇଅଛି । ଏଥିରେ ବିବିଧ ଈଶ୍ୱରୀୟ ସୃଷ୍ଟି ଲୀଳାବର୍ଣ୍ଣନାର ପରିସର ବୃଦ୍ଧିଲାଭ କରି କ୍ରମବର୍ଦ୍ଧିଷ୍ଣୁ ହୋଇଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ବିଶ୍ୱରୂପୀ ଭଗବାନଙ୍କର ପ୍ରେମାକୃଷ୍ଟ ହୋଇ ସେହି ପ୍ରେମ-ସମ୍ବନ୍ଧ ବନ୍ଧନରେ ଭକ୍ତଗଣ ରାମକୃଷ୍ଣାଦି ଦେବତାଙ୍କୁ ଦିବ୍ୟ ଭାବରେ ଆରୂଢ଼ କରି ବହୁଧା ବର୍ଣ୍ଣନା କରିବାକୁ କୁଣ୍ଠାବୋଧ କରି ନାହାନ୍ତି । ଅନ୍ୟଥା ନିରାକାର ନିର୍ଗୁଣ ମନାତୀତ ନୀରବସ୍ତୁ ପରମେଶ୍ୱର ପଦାର୍ଥରେ କୌଣସି ପ୍ରକାର ବାକ୍ ପ୍ରସରଣ ହୋଇ-ପାରିବ ନାହିଁ । ଏହି ହେତୁ ସାକାର ରାମକୃଷ୍ଣାଦି ବିଗ୍ରହମାନଙ୍କର ମନଃ ସଂକଳ୍ପିତ ଅନୁପମ ଲୋକୋତ୍ତର ଲାବଣ୍ୟ ଗୁଣଗ୍ରାମ ଶୌର୍ଯ୍ୟବୀର୍ଯ୍ୟାଦିର ବର୍ଣ୍ଣନା କରିବାକୁ କବି-ସମାଜ ଅଧିକାରୀ ହୋଇଅଛନ୍ତି । ଉକ୍ତ ବର୍ଣ୍ଣନାସ୍ଥ ବିଷୟରେ ସାତ୍ତ୍ୱିକ, ରାଜସିକ ଓ ତାମସିକ ଭକ୍ତି ବା ପ୍ରେମଭାବ ପରିଲକ୍ଷିତ ହୁଏ । ଉପନିଷଦ ଭାଗରେ ମୁକ୍ତିକାମର ଯାହା କି ଆଧ୍ୟାତ୍ମ ବିଷୟକ ଉପାସନା, ତାହା ସାତ୍ତ୍ୱିକ ଭକ୍ତି; ବେଦ କର୍ମକାଣ୍ଡରେ ଯାହା କି ଯାଗ ଯଜ୍ଞାଦି ଅନୁଷ୍ଠାନର ପ୍ରକ୍ରିୟା ଭାବରେ ପରିଦୃଶ୍ୟ ତାହା ରାଜସ ଉପାସନା ବା ରାଜସୀ ଭକ୍ତି ଭାବରେ ରୂପିତ ।

ବିଭିନ୍ନ ସରସ କାବ୍ୟାଦିରେ ରାମ ସୀତା, ରାଧାକୃଷ୍ଣଙ୍କ ଭଳି ଦିବ୍ୟାଦିବ୍ୟ ଓ ଅପ୍ରାକୃତ ନାୟକ ନାୟିକାଙ୍କ ଚକ୍ଷୁ ସମକ୍ଷରେ ସାଂସାରିକ ମାନବ ମାନଙ୍କ ସୁଲଭ ହାବଭାବ ଓ ପ୍ରେମାଦି ବର୍ଣ୍ଣନା ରାଜସୀ ଭକ୍ତି ନାମରେ ଅଭିହିତ । ତେଣୁ ଏହା ଗ୍ରାମ୍ୟ ସାଧାରଣ ଅଟେ । ଏଥିରେ ଭଗବତ ଭାବ ଗୁଣୀଭୂତ ହୋଇ ଗ୍ରାମ୍ୟଭାବ ମୁଖ୍ୟ ବା ପ୍ରଧାନ ରୂପରେ ଉଲ୍ଲସିତ ହୁଏ ଏବଂ ଏହାଦ୍ୱାରା ସାଧାରଣ ପାଠକପାଠିକାଙ୍କ ହୃଦୟରେ ଗ୍ରାମ୍ୟ-ଭାବ-ବିଶେଷ ଯେତେ ପରିସ୍ଫୁଟ ହୁଏ ଭଗବତ-ଭାବର ଉଦ୍ରେକ ସେପରି ହୁଏ ନାହିଁ ବା ହେବାର ଅନୁକୂଳ ପରିବେଶ ସୃଷ୍ଟି ହୋଇ ନ ଥାଏ । ଏହି ଭକ୍ତିଭାବ ହିଁ ତାମସ-ଭକ୍ତିର ଅନ୍ତର୍ଗତ । ଏହି ଦୃଷ୍ଟିରୁ ପୁରାଣାଦିରେ ( ଅଗ୍ନିପୁରାଣ ) 'କାବ୍ୟାଲାପାଂଶ୍ଚ ବର୍ଜୟେତ୍' ଏହି ନିଷେଧ ବାଣୀ ଗ୍ରଂଫିତ ହୋଇଅଛି । ଏଥିରେ ଅନ୍ତଃକରଣରେ ଗ୍ରାମ୍ୟ ଭାବାଭିମୁଖୀ ଭାବ ବର୍ଦ୍ଧିଷ୍ଣୁ ହୋଇଥାଏ ।

ଭକ୍ତମାନଙ୍କର ସ୍ୱ ସ୍ୱ ଉପାସ୍ୟ ବିଗ୍ରହ ନେଇ ଯେଉଁ ଆଗ୍ରହ ପ୍ରକାଶିତ ହୁଏ ତାହା ଯେତେବେଳେ ଅନ୍ତର୍ମୁଖୀ ହୁଏ, ତାହା ହିଁ ଭକ୍ତି ରୂପରେ ଆଭାସିତ । ତେଣୁ ସେ ଯେଉଁ ବିଗ୍ରହରେ ଅନୁରକ୍ତ ହୋଇ ତ୍ରିଭାବାତିଶଯ୍ୟବଶତଃ ତାଙ୍କର ବର୍ଣ୍ଣନାରେ ପ୍ରବୃତ୍ତ ହୋଇଥାନ୍ତି ।

ତଦ୍ଦ୍ୱାରା ସେମାନଙ୍କର ଅନ୍ତଃସ୍ଥ ସୁପ୍ତ ବାସନାଦି ଦ୍ୱାରା ଉତ୍ତମ ସଂସ୍କାରମୁଖୀ ହୁଏ ଏବଂ ସ୍ୱହୃଦୟରେ ତଦନୁରୂପ ସଂସ୍କାର ଜନ୍ମ ଲାଭ କରେ । ସେହି ସଂସ୍କାରବଶରୁ ସେମାନେ ତଦୁଚିତ ଫଳ ମଧ୍ୟ ଲାଭ କରନ୍ତି । ଗୀତାରେ ଉକ୍ତ ଅଛି–ଯୋ ଯୋ ଯାଂ ଯାଂ ତନୁଂ ଭକ୍ତଃ ଶ୍ରଦ୍ଧୟା ଅର୍ଚ୍ଚିତୁମ୍ ମିଚ୍ଛତି ତସ୍ୟତସ୍ୟାଚଲାଂ ଶ୍ରଦ୍ଧାଂ ତାମେବ ବିଦଧାମ୍ୟହମ୍ । ସତୟା ଶ୍ରଦ୍ଧୟା ଯୁକ୍ତୋ ତସ୍ୟାରାଧନା– ମୀହତେ ଲଭତେଃ ଚ ତତଃ କମାନ୍ ମୟୈବ ବିହିତାନ୍ ହିତାନ । 'ଶ୍ରଦ୍ଧାମୟୋୟଂ' ପୁରୁଷଃ ଏହା ଉପନିଷଦ ଋଷିଙ୍କ ବାଣୀ; ଶ୍ରଦ୍ଧା ହିଁ ଭକ୍ତିର ରୂପାନ୍ତର, ଶ୍ରଦ୍ଧାହୀନର ସର୍ବକାର୍ଯ୍ୟ ନିଷ୍ଫଳ । ତୁଳସୀ ଦାସ କହିଛନ୍ତି–"ଭବାନୀ ଶଙ୍କରୌ ବନ୍ଦେ ଶ୍ରଦ୍ଧା ବିଶ୍ୱାସ ରୂପିଣୌ ! ଯାଭ୍ୟାନ୍ତ୍ ବିନା ନ ପଶ୍ୟନ୍ତି ସିଦ୍ଧାଃ ସ୍ୱାନ୍ତଃସ୍ଥ ମୀଶ୍ୱରମ୍"

ସାହିତ୍ୟ ଜଗତରେ ଦେଖାଯାଏ ଯେ ଆଦିକାବ୍ୟ ରାମାୟଣ ସୃଷ୍ଟିରେ ଉତ୍ତରୋତ୍ତର କାବ୍ୟ ଜଗତ ପ୍ରବର୍ତ୍ତିତ ହୋଇଅଛି । ରାମାୟଣ ଯଦିଓ ଶୃଙ୍ଗାର ରସ ଶୂନ୍ୟ ନୁହେଁ, ତଥାପି ଏହାର ବର୍ଣ୍ଣିତ ରସ ନବବିଧ ରସମାନଙ୍କରେ ଅନ୍ୟତମ ଭାବରେ ନିହିତ, ଏବଂ ଗ୍ରାମ୍ୟଭାବ ବିପ୍ରକୃଷ୍ଟ । ଭକ୍ତ ରାମାୟଣ ସତ୍କାବ୍ୟ । ଏଥିରେ ଭଗବାନଙ୍କର ଲୋକୋତ୍ତର ଗୁଣାନୁବାଦ, ଧର୍ମନୀତି, ରାଜନୀତି, ବ୍ୟବହାର ନୀତି, ପ୍ରାକୃତିକ ବର୍ଣ୍ଣନା ଆଦିମାନ ଯେପରି ଭାବରେ ସନ୍ନିବେଶିତ ହୋଇଅଛି ତାହା ଅନୁକରଣ କରିବାକୁ ଯାଇ ଅର୍ବାଚୀନ ଭକ୍ତ ସାହିତ୍ୟ ଜଗତ ବା କାବ୍ୟଜଗତ ତଦନୁକରଣ ନ ହୋଇ କେବଳ ଲୋକରଞ୍ଜନାର୍ଥ ଲୋକସ୍ୱଭାବ ସିଦ୍ଧ ବହିର୍ମୁଖ ତମସ୍ତର ବିଷୟ ପ୍ରବଣ ହୋଇଅଛି । କାବ୍ୟ-ଯୁଗର ଅଙ୍ଗୀକୃତ ବିଷୟବସ୍ତୁ ଉଭୟ ଲୋକୋପକାରୀ ବା ଅଶୁଭାପହାରୀ ଏବଂ ଅନ୍ତଃକରଣ ଶାନ୍ତିଦାୟକ ନ ହେବାରୁ ଏ ଅସତ୍ କାବ୍ୟାନ୍ତର୍ଗତ ।

ଶ୍ରୀମଦ୍ ଭାଗବତରେ ରାସଲୀଳାଦି ବିଷୟରେ କୃଷ୍ଣଲୀଳା ବର୍ଣ୍ଣିତ ହୋଇଅଛି । ସେଥିରେ ଆଦିରସର ଯାହା ପରିପୁଷ୍ଟି, ତାହା ଅଲୌକିକ-ଲୋକସାଧାରଣ ପ୍ରଯୁଜ୍ୟ ନୁହେଁ । ଏଥିରେ ତର୍କର ଅବକାଶ ନାହିଁ । କୃଷ୍ଣ ଚରିତ ଅଲୌକିକ ନିତ୍ୟାନନ୍ଦ ଲୀଳାର ବିକାଶ ସ୍ୱୟଂ ଭଗବାନ ଗୋପୀମାନଙ୍କ ସହ ପ୍ରକାଶ କରିଅଛନ୍ତି । ସଂସାରୀମାନଙ୍କ ମଧ୍ୟରେ କେହି ଦାବାନଳପାନ କିମ୍ବା ସହସ୍ର ସହସ୍ର ଗୋପିକାମାନଙ୍କ ସହ ପ୍ରେମରସ ପରିପୁଷ୍ଟି କରିବାକୁ ଯାଇ ବହୁ ସଂଖ୍ୟକ ମୂର୍ତ୍ତି ହୋଇପାରିବେ ନାହିଁ, ବା କାଳୀୟ ଦଳନ ପ୍ରଭୃତି ଅସାଧାରଣ କାର୍ଯ୍ୟ କିମ୍ବା ମୃତ ଗୁରୁପୁତ୍ରଙ୍କୁ ପୁନର୍ଜନ୍ମ ଦାନ ପରି ଅସାମାନ୍ୟ କାର୍ଯ୍ୟ କେହି କରିପାରିବେ ନାହିଁ । ନରକାସୁର ନିର୍ବନ୍ଧିଷ୍ଟ ଷୋଡ଼ଶ ସହସ୍ର ଦେବ କନ୍ୟାମାନଙ୍କୁ ଉଦ୍ଧାର କରିପାରିଲା ଭଳି ଶକ୍ତି ମାନବୀୟ ଜଗତରେ କାହାର ଅଛି କି ? ଅଲୌକିକ ଭାବର ଆଚରିତ ଏହି ଲୋକ ଲୀଳା ଅସାଧାରଣ, ଅଚିନ୍ତ୍ୟମୟ ଓ ଅନନ୍ୟ ।

ଈଶ୍ୱରାଣାଂ ବଚଃସତ୍ୟମ୍ ତଥୈବା ଚରିତଂ କ୍ୱଚିତ୍

( ଭାଗବତ ରାସପଞ୍ଚାଧ୍ୟାୟୀ )

ଈଶ୍ୱରଙ୍କ ବଚନ ହିଁ ସତ୍ୟ, କିନ୍ତୁ ଆଚରଣ ସର୍ବଦା ଅନୁକରଣୀୟ ନୁହେଁ । ପୁନଶ୍ଚ ତାହା ନିନ୍ଦନୀୟ ବା ସମାଲୋଚନୀୟ ନୁହେଁ; ତାହା ଅସାଧାରଣ, ଯଥାର୍ଥରେ ଭକ୍ତ ଅଛୁ ।

'ମହାତ୍ମାନାଂ ଚରିତଂ ନ ପୁରସ୍କରଣୀୟମ୍
ନ ପି ତିରସ୍କରଣୀୟମ୍ ।



# ସାହିତ୍ୟରେ ରସବାଦ

ଆନନ୍ଦବାଦ, ଦୁଃଖବାଦ ଓ ରହସ୍ୟବାଦ ପରି ସାହିତ୍ୟରେ ରସବାଦ ଏକ ପ୍ରାଚୀନତମ ଆବିଷ୍କାର । ପାଠକ କାବ୍ୟପାଠ ସମୟରେ ମନରେ ଯେଉଁ ଅନନୁଭୂତ ଆନନ୍ଦ ଅନୁଭବ କରେ, ତାହା ହିଁ ରସ । ସବୁ ଶ୍ରେଣୀର ପାଠକ ରସର ଆସ୍ୱାଦନ କରି-ପାରନ୍ତି ନାହିଁ । ବିଦଗ୍ଧ ବା ସହୃଦୟ ବ୍ୟକ୍ତି ଯେତେବେଳେ କାବ୍ୟର ବିଷୟବସ୍ତୁ ସହିତ ସ୍ୱ ଏକାଗ୍ରତାର ସମନ୍ୱୟ ସୃଷ୍ଟି କରେ, ସେତେବେଳେ ସେ ଏକ ନୈର୍ବ୍ୟକ୍ତିକ ଆଦର୍ଶ ଜଗତରେ ପହଞ୍ଚେ, ଯାହା ଫଳରେ ସେହି କାବ୍ୟର ଭାବାନୁଭୂତି ସହିତ ତା'ର ଆତ୍ମୀୟତା ସୃଷ୍ଟି ହୁଏ । ସେତେବେଳେ ସେ ନିଜକୁ ଭୁଲେ, ତାର ପାରୀପାର୍ଶ୍ୱିକ ଅବସ୍ଥାକୁ ବିସ୍ମୃତ ହୁଏ । ତାର ଦ୍ୱୈତବାଦୀ ମନ ଅଦ୍ୱୈତବାଦରେ ପହଞ୍ଚେ । ପଠିତ କାବ୍ୟ ସହିତ ନିଜକୁ ଏକାକାର କରିଦେଇଥିବାରୁ ତାର ଆତ୍ମବିଲୁପ୍ତି ଘଟେ । ଏତିକବେଳେ ତାର ମନରେ ଯେଉଁ ଶାଶ୍ୱତ ଅନୁଭୂତି ଜାଗ୍ରତ ହୁଏ, ତାର ଏକ ଅନାବିଳ ସ୍ୱଚ୍ଛ ପରିପ୍ରକାଶ ହିଁ ରସ । 'ରସ' ଧାତୁର ଅର୍ଥ ଆସ୍ୱାଦନ । 'ରସ୍ୟତେ ଅନେନ ଇତି ରସଃ' ଅର୍ଥାତ୍ ଯାହା ଆସ୍ୱାଦ୍ୟ ତାହା ହିଁ ରସ । "ଏହି ରସ ବାଚ୍ୟ ନୁହେଁ, 'ସ ଏଷ ପରମ ବ୍ୟଂଗ୍ୟଃ' ଅର୍ଥାତ୍ ବ୍ୟଂଜନା ଦ୍ୱାରା ରସବୋଧ ହୋଇଥାଏ । ସତକଥା କହିବାକୁ ଗଲେ ରସ ଏବଂ ରସପ୍ରତୀତି, ଏହି ଦୁଇଟି ବସ୍ତୁ ଭିନ୍ନ ରୂପେ ଚିନ୍ତା କରାଯାଏ ନାହିଁ । କାରଣ ଯାହାର ରସାନୁଭୂତି ବା ରସପ୍ରତୀତି ହୁଏ ନାହିଁ, ସେ ରସ କାହାକୁ କୁହାଯାଏ, ବୁଝି-ପାରେନା ।" (୧)

ରସ କାବ୍ୟର ଆତ୍ମା ସ୍ୱରୂପ । ଏକ ସମୟରେ ସାହିତ୍ୟର ଫଳ୍ଗୁ ନିର୍ଣ୍ଣୟ କରିବାକୁ ଯାଇ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଆଳଙ୍କାରିକମାନଙ୍କ ମଧ୍ୟରେ ବହୁ ମତବାଦ ସୃଷ୍ଟି ହୋଇଥିଲା । ସେହିସବୁ ମତାମତର ଅରଣ୍ୟ ଅତି ଗହନ । ପ୍ରାଚ୍ୟ ଆଳଙ୍କାରିକମାନଙ୍କ ମଧ୍ୟରୁ କେହି ରୀତିକୁ କାବ୍ୟର ଆତ୍ମା ବୋଲି (୨) କହୁଥିବା ବେଳେ, ଅନ୍ୟ କେହି ବକ୍ରୋକ୍ତିକୁ କବିତାର ପ୍ରାଣବୋଲି (୩) ମତ ଦେଇଛନ୍ତି । ପୁଣି କେତେ କାବ୍ୟରେ ଧ୍ୱନିର ପ୍ରାଧାନ୍ୟ

(୧) ସାହିତ୍ୟ ଦର୍ଶନ—ଶ୍ରୀ ଶଚୀନ୍ଦ୍ର ଦାସ ୪୯ ପୃଷ୍ଠା (୨) 'ରୀତିରାତ୍ମା କାବ୍ୟସ୍ୟ' (୩) 'ବକ୍ରୋକ୍ତି କାବ୍ୟ ଜୀବିତଃ'

(୧) ସେ ଯଥେଷ୍ଟ ବେଶି—ଏହା ମଧ୍ୟ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । କିନ୍ତୁ ପ୍ରସିଦ୍ଧ ଆଳଙ୍କାରିକ ବିଶ୍ୱନାଥ କବିରାଜ କହିଛନ୍ତି—"ବାକ୍ୟ ରସାତ୍ମକ କାବ୍ୟଂ ।" ଆଳଙ୍କାରିକମାନଙ୍କର ମତଭିତରୁ ବିଶ୍ୱନାଥ କବିରାଜଙ୍କର ଏହି ଉକ୍ତି ପରବର୍ତ୍ତୀ ସମୟରେ ବିଶେଷ ଭାବରେ ଆଦୃତ ହୋଇଛି । ଏହି ରସର ସ୍ୱରୂପ ନିର୍ଣ୍ଣୟ କରିବାକୁ ଯାଇ ସେ କହିଅଛନ୍ତି ଯେ, ଏହା (ରସ) ପ୍ରତ୍ୟେକଙ୍କର ସ୍ୱ ଅନୁଭବର ବିଷୟ । ନିଜେ ପାନ ନ କଲେ ଯେପରି ପ୍ରପାନକର ସ୍ୱାଦ ବୁଝାଯାଏ ନାହିଁ, ସେହିପରି ନିଜେ କାବ୍ୟରସ ଅନୁଭବ ନ କଲେ, ତାହା କେହି ଅନୁଭବ କରିପାରିବେ ନାହିଁ । ମନୁଷ୍ୟ ହୃଦୟରେ ସତ୍ତ୍ୱଗୁଣର ଉଦ୍ରେକ ହେତୁ ଯେଉଁ ଅଖଣ୍ଡ ଆନନ୍ଦ ସଞ୍ଚାରିତ ହୁଏ, ତାହା ହିଁ ରସର ଆସ୍ୱାଦନ । ଭକ୍ତ ଏକାନ୍ତଭାବରେ ଭଗବାନଙ୍କୁ ପ୍ରାର୍ଥନା କଲାବେଳେ, ମୁନି ଋଷିମାନେ ଏକାଗ୍ର ଚିତ୍ତରେ ଇଷ୍ଟଦେବଙ୍କୁ ଧ୍ୟାନ କଲାବେଳେ ହୃଦୟରେ ତାଙ୍କର ସ୍ୱରୂପ ଅନୁଭବ କରି ଯେଉଁ ଆନନ୍ଦ ଉପଭୋଗ କରନ୍ତି, ରସାସ୍ୱାଦନ ବେଳେ ଠିକ୍ ସେହିପରି ଆନନ୍ଦ ମିଳିଥାଏ । ସୁତରାଂ ଏହା ମସ୍ତିଷ୍କର ନ ହୋଇ ହୃଦୟର ପରିପ୍ରକାଶ ହୋଇଥାଏ । ତେଣୁ ଯଥାର୍ଥରେ କୁହାଯାଇଅଛି—The object of poetry as of all the time arts is to produce an emotional delight, a pure and elevated pleasure"

ରସର ସ୍ୱରୂପ ଉଦ୍‌ଘାଟନ କରି ମମ୍ମଟ ଭଟ୍ଟ କହିଛନ୍ତି—
"କାରଣାନ୍ୟଥ କାର୍ଯ୍ୟାଣି ସହକାରୀଣି ଯାନିଚ,
ଇତ୍ୟାଦେଃ ସ୍ଥାୟିନୋ ଲୋକେ ତାନି ଚେନ୍ନାଟ୍ୟ କାବ୍ୟୟୋଃ
ବିଭାବା ଅନୁଭାବା ସ୍ତତ୍ତ୍ୱ କଥ୍ୟଂତେ ବ୍ୟଭିଚାରିଣଃ
ବ୍ୟକ୍ତଃ ସତୈ ର୍ବିଭାବାଦ୍ୟୈଃ ସ୍ଥାୟି ଭାବୋ ରସଃସ୍ମୃତ ।"

ମମ୍ମଟଙ୍କର ଏହି ଉକ୍ତିରୁ ରସର ସ୍ୱରୂପ ସମ୍ବନ୍ଧରେ ସ୍ପଷ୍ଟ ସୂଚନା ମିଳିଥିଲେ ମଧ୍ୟ ରସ ସୃଷ୍ଟି ସାଧାରଣତଃ ଯେଉଁ ସବୁ କାରଣ ଯୋଗୁଁ ହୋଇଥାଏ, ତାହା ହିଁ ଏଥିରେ ପ୍ରକାଶିତ । ସେ ରସ ସୃଷ୍ଟିର କାରଣ ଆଲୋଚନା କରିବାକୁ ଯାଇ କାବ୍ୟରେ ରସର ସ୍ଥାନ ନିରୂପଣରେ ବିଶେଷ ମନୋଯୋଗୀ ହୋଇ ନାହାନ୍ତି । ଅପରପକ୍ଷରେ ବିଶ୍ୱନାଥ କବିରାଜ କାବ୍ୟରେ ରସର ସ୍ଥାନ ଯେ ବହୁ ଉଚ୍ଚରେ, ତାହା ହିଁ ପ୍ରକାଶ କରିଯାଇଛନ୍ତି । ବିଶ୍ୱନାଥଙ୍କର ଉକ୍ତି ମମ୍ମଟଙ୍କ ଉକ୍ତିର ଏକ ସଂକ୍ଷିପ୍ତ ପ୍ରତିଧ୍ୱନି ହେଲେ ହେଁ କାବ୍ୟଦୃଷ୍ଟିରେ ରସର ମୌଳିକ ସ୍ଥାନ ନିରୂପଣ ହିଁ ବିଶ୍ୱନାଥଙ୍କର ମତର ନିର୍ଯ୍ୟାସ । କିନ୍ତୁ ମମ୍ମଟ

(୪) 'କାବ୍ୟସ୍ୟାତ୍ମା ଧ୍ୱନିଃ,

ରସବାଦର ମୂଳତତ୍ତ୍ୱ ବିଶ୍ଳେଷଣ କରି ଆଧୁନିକ ଆଲୋଚକ ହିସାବରେ ସର୍ବଶେଷ ସମ୍ମାନର ଅଧିକାରୀ ହୋଇଅଛନ୍ତି ।

ଆନନ୍ଦବର୍ଦ୍ଧନଙ୍କ ମତରେ ରସ ଉଦ୍ରେକ ହିଁ କବିର ଏକମାତ୍ର ଉଦ୍ଦେଶ୍ୟ । ଯଦିଓ ସାହିତ୍ୟରେ ରସକୁ ବାଦଦେଲେ ଆଖ୍ୟାନ ବସ୍ତୁ ଓ ଅଳଙ୍କାର ଆଦି ଦୁଇ ବିଭାଗ ରହିଚ, କିନ୍ତୁ ତାହା 'ରସ' ପରି ମୁଖ୍ୟ ନୁହେଁ । କାରଣ ଆଖ୍ୟାନ ବସ୍ତୁ ଯେତେ ଚମତ୍କାର ଓ ଅଳଙ୍କାର ପ୍ରୟୋଗରେ କାବ୍ୟକାର ଯେତେ କୃତିତ୍ୱ ଦେଖାଇଲେ ମଧ୍ୟ ରସ ବ୍ୟତିରେକେ ତାହା ଉପଭୋଗ୍ୟ ହୋଇପାରିବ ନାହିଁ । କାବ୍ୟର ମୌଳିକ ଲକ୍ଷ୍ୟ ବିମଳ ଆନନ୍ଦ ପରିବେଷଣ କରିବା ଏଠାରେ ବ୍ୟାହତ ହେବା ସ୍ୱାଭାବିକ । 'ଏହି ରସ ପରିତ୍ୟକ୍ତ ବିଶେଷଃ' । ପୁଣି ସଂସ୍କୃତ ଆଳଙ୍କାରିକ ଭରତ ରସକୁ ସାହିତ୍ୟର ବୀଜ ଓ ଫଳ ବୋଲି ବର୍ଣ୍ଣନା କରି କହିଅଛନ୍ତି —

''ଯଥା ବୀଜାଦ୍ ଭବେଦ୍ ବୃକ୍ଷୋ ବୃକ୍ଷାତ୍ପୁଷ୍ପଂ ଫଳଂ ତଥା
ତଥା ମୂଳଂ ରସାଃ ସର୍ବେ ତେଭ୍ୟୋ ଭାବା ବ୍ୟବସ୍ଥିତାଃ ।''

ପୁଣି ରସକୁ 'ଲୋକୋତ୍ତର ଚମତ୍କାର ପ୍ରାଣଃ' ବୋଲି କୁହାଯାଇଅଛି । କାରଣ ବ୍ୟକ୍ତି ଯେତେବେଳେ ରସ ଉପଲବ୍ଧି କରି ନିଜକୁ କାବ୍ୟ ମଧ୍ୟରେ ହଜେଇଦିଏ, ସେତେବେଳେ ସେ ଏକ ଲୋକୋତ୍ତର ଚମତ୍କାର ଜଗତରେ ପହଞ୍ଚେ ଏବଂ ସେହି ଜଗତ ମଧ୍ୟରେ ହିଁ ସେ ପାଏ ବ୍ରହ୍ମାନନ୍ଦର ସନ୍ଧାନ । ରସ ସେହି ବ୍ରହ୍ମାନନ୍ଦର ମୂଳ ଉତ୍ସ । ବାସ୍ତବରେ ବ୍ରହ୍ମାନନ୍ଦବଲ୍ଲୀରେ ଉକ୍ତ ଅଛି ''ରସୌବୈସଃ ହ୍ୟେବାୟଂଲବ୍ଧାନନ୍ଦୀ ଭବତି'' ଅଥବା ଅନ୍ୟ ଏକ ଗ୍ରନ୍ଥରେ ରସରୂପ ପରମାତ୍ମା ବଡ଼ରୂପ ମାୟା— ରସ ଓ ପରମାତ୍ମାଙ୍କୁ ଉପନିଷଦ ଏବଂ ଆଳଙ୍କାରିକ ଗ୍ରନ୍ଥ ଅଭିନ୍ନ ରୂପରେ ଦେଖିଛନ୍ତି ।

ଆଉ କେତେକ ଆଳଙ୍କାରିକ କହନ୍ତି ଯେ, କାବ୍ୟରସରୁ ଧର୍ମ, ଅର୍ଥ, କାମ, ମୋକ୍ଷ—ଏହି ଚତୁର୍ବର୍ଗ ଫଳ ପ୍ରାପ୍ତି ହୁଏ । କାରଣ କାବ୍ୟ କବିର ଯଶ, ସମ୍ପଦ ଓ ଅର୍ଥ ବୃଦ୍ଧି କରେ, କାବ୍ୟ ମାଧ୍ୟମରେ ଦେବ ଅର୍ଚ୍ଚନା କରି କବି ଧର୍ମ ଲାଭକରେ । ପୁଣି ଧର୍ମର ଫଳ ସ୍ୱରୂପ ସେ ମୋକ୍ଷ ଲାଭକରେ । ଅତଏବ 'ରସ' ଯେ କାବ୍ୟର ଆତ୍ମାସ୍ୱରୂପ ଏଥିରେ ସନ୍ଦେହର ଅବକାଶ ନାହିଁ ।

'ରସ'—ବ୍ରହ୍ମାନନ୍ଦର ଏକ ଅବସ୍ଥା ବିଶେଷ । କାବ୍ୟପାଠ ସମ୍ବନ୍ଧରେ ପାଠକ ଯେଉଁ ଆନନ୍ଦ ଲାଭକରେ, ତାହା ବ୍ରହ୍ମାନନ୍ଦ । କାରଣ ପାଠକର ତନ୍ମୟତା ଓ ଆତ୍ମବିସ୍ମୃତି ମଧ୍ୟରୁ ସେହି ଆନନ୍ଦର ଜନ୍ମ । ଭକ୍ତ ଭଗବାନଙ୍କୁ ପାଇବାପାଇଁ ଏହିପରି ତନ୍ମୟ ହୋଇ ଆତ୍ମଭୋଳା ହୋଇପଡ଼େ । ଫଳତଃ ତାର ଏକାଗ୍ର ସାଧନା ତାକୁ ତାର ଲକ୍ଷ୍ୟପଥରେ

ପହଞ୍ଚାଇଦିଏ । ସେ ସେଠାରେ ପରମାତ୍ମାର ସନ୍ଧାନ ପାଏ । ପରମାତ୍ମା ହିଁ ରସର ଭଣ୍ଡାର । ଅନ୍ତର ମଧ୍ୟରେ ପରମାତ୍ମାଙ୍କର ସ୍ୱରୂପ ଅନୁଭବ ହିଁ ରସାନୁଭବ ।

ତେଣୁ ଯଥାର୍ଥରେ Hamilton କହିଅଛନ୍ତି "Poetry as such is to be judged simply by the quality of imaginative experience it gives and not by the test of moral goodness or of truth in reference to something outside itself."

ସଂସ୍କୃତ ଆଳଙ୍କାରିକ ରସ ସହିତ ଗୁଣର ସମ୍ପର୍କ ସ୍ଥାପନ କରି କହିଅଛନ୍ତି— "ଗୁଣ୍ୟଂ ତେ ଆସ୍ୱାଦ ପ୍ରକର୍ଷିସ୍ୟାସ୍ୟାଂ ଉତ୍କର୍ଷୀ କିସ୍ୟଂତେ ରସା ଏଭିରିତ ଗୁଣାଃ ।" ଏହି ବ୍ୟୁତ୍ପତ୍ତିରୁ ଉତ୍କର୍ଷ ବିଶେଷ ଭାବରେ ସ୍ପଷ୍ଟ ହୋଇଯାଉଛି । କିନ୍ତୁ ଆଳଙ୍କାରିକ ପରମ୍ପରା ପ୍ରତି ସିଂହାବଲୋକନ କଲେ ଗୁଣ ସହିତ ରସର ସମ୍ପର୍କ ଖ୍ରୀଷ୍ଟୀୟ ନବମ ଶତାବ୍ଦୀରେ ହିଁ ସ୍ଥାପିତ ହୋଇଛି । କାରଣ ଭରତ କହିଛନ୍ତି—'ଗୁଣା ବିପର୍ଯ୍ୟସ୍ତା ଦୋଷାନ୍'—ଅର୍ଥାତ୍ ଦୋଷର ବିପରୀତ ଧର୍ମ ଗୁଣ । ପୁଣି ଅଗ୍ନିପୁରାଣରେ ଅଛି, "ଯଃ କାବ୍ୟେ ମହତୀଂ ଛାୟାମନୁ ଗୃହ୍ଣାତ୍ୟସୌ ଗୁଣଃ ।" ଦଣ୍ଡୀଙ୍କ ମତରେ—'ଏତେ ବୈଦର୍ଭମାର୍ଗସ୍ୟ ପ୍ରାଣା' । ବାମନ କହିଛନ୍ତି—'କାବ୍ୟ ଶୋଭାୟାଃ କର୍ତ୍ତାରଃ ଗୁଣାଃ' । କିନ୍ତୁ ଧ୍ୱନ୍ୟାଲୋକକାର ଯେତେବେଳେ ଗୁଣାଳଙ୍କାରଠାରୁ ଉତ୍କୃଷ୍ଟ 'ଧ୍ୱନି'କୁ କାବ୍ୟର ଆତ୍ମାରୂପେ ଘୋଷଣା କଲେ, ସେତେବେଳେ ପୂର୍ବବର୍ତ୍ତୀ ମତ ବଦଳିଗଲା । ବିଶ୍ୱନାଥ କବିରାଜ କହିଲେ, ରସ ଓ ରଚନାର ପରିପୋଷକ ଶ୍ରବଣେନ୍ଦ୍ରିୟର ଆନନ୍ଦବିଧାୟକ ଧର୍ମ ହିଁ ଗୁଣ । ଏହାଦ୍ୱାରା କାବ୍ୟ ବ୍ୟବହୃତ ପଦକଦମ୍ବର ସୌକୁମାର୍ଯ୍ୟ, ଓଜସ୍ୱିତା ଓ ପ୍ରସନ୍ନତା ବ୍ୟକ୍ତ ହୁଏ । ଶୌର୍ଯ୍ୟ, ବୀର୍ଯ୍ୟାଦି ମାନବୀୟ ଗୁଣସମୂହ ଯେପରି ମାନବାତ୍ମାର ଉତ୍କର୍ଷର ଦ୍ୟୋତକ, ସେହିପରି ମାଧୁର୍ଯ୍ୟାଦି ଗୁଣ ସମୂହ କାବ୍ୟର ଆତ୍ମାଭୂତରସର ଉତ୍କର୍ଷବ୍ୟଞ୍ଜକ । ତେଣୁ 'କାବ୍ୟପ୍ରକାଶ'କାର ଲେଖିଲେ—

'ରସସ୍ୟାଙ୍ଗିତ୍ୱମାପ୍ତସ୍ୟ ଧର୍ମାଃ ଶୌର୍ଯ୍ୟାଦୟୋ ଯଥା ଉତ୍କର୍ଷହେତବସ୍ତେସ୍ୟୁରଚଳସ୍ଥିତୟୋଗୁଣାଃ ।" ଅର୍ଥାତ୍ ଗୁଣ ହେଲା କାବ୍ୟାତ୍ମଭୂତ ରସର ସ୍ଥାୟୀ ବା ଅନ୍ତରଙ୍ଗ ଧର୍ମ । ଏହା ସମବାୟ ବୃତ୍ତିରେ ( ଅଳଙ୍କାର ପରି ସଂଯୋଗ ବୃତ୍ତିରେ ନୁହେଁ ) ଉତ୍କର୍ଷ ସାଧନ କରେ । ଗୁଣ ରସର ସ୍ଥାୟୀ ଧର୍ମ ହେତୁ ଏହା ପ୍ରତ୍ୟକ୍ଷ ସମ୍ବନ୍ଧରେ ରସରେ ରହେ । ଶବ୍ଦ ବା ପଦରେ ଏହାର ସମ୍ପର୍କ ଗୌଣ ବା ପରମ୍ପରାଗତ । ଗୁଣ ଓ ରସର ସମ୍ବନ୍ଧ ସର୍ବଦା ଅବିଚ୍ଛେଦ୍ୟ ।

ଖ୍ରୀଷ୍ଟୀୟ ୨ୟ ଶତାବ୍ଦୀରେ ନାଟ୍ୟାଚାର୍ଯ୍ୟ ଭରତ ରସର ସଂଜ୍ଞା ନିରୂପଣ କରିବାକୁ ଯାଇ ରସକୁ ଆଠ ଭାଗରେ ବିଭକ୍ତ କରିଛନ୍ତି । ସେ କହିଛନ୍ତି—

"ଶୃଙ୍ଗାର ବୀର କରୁଣ ହାସ୍ୟ ରୌଦ୍ରଭୟାନକାଃ
ବୀଭତ୍ସୋଦ୍‌ଭୂତ ଇତ୍ୟଷ୍ଟୌ ରସାସ୍ତୁନାଟ୍ୟକେଷୁ ତାଃ"

ତତ୍ପରେ ମମ୍ମଟ ଭଟ୍ଟ ଶାନ୍ତୋଽପି ନବମୋରସଃ' କହି ନବମ ରସକୁ ସ୍ୱୀକୃତ ଦେଲେ । କିନ୍ତୁ ଅଳଙ୍କାରିକ ବିଶ୍ୱନାଥ କବିରାଜ ଦଶମ ରସର ପ୍ରାଧାନ୍ୟ ସ୍ୱୀକାର କରି କହିଲେ—"ବତ୍ସଳଂ ଚରସଂ ବିଦୁଃ ।" ପୂର୍ବସୂରୀମାନେ ଏହି ବାତ୍ସଲ୍ୟରସକୁ ଗୁରୁ, ରାଜାନୁରକ୍ତି ପରି ଏକଭାବ ରୂପରେ ପରିକଳ୍ପନା କରିଥିଲେ । ବିଶ୍ୱନାଥ ଇତର ରସମାନଙ୍କ ପରି ଏହି ରସର ପୁଷ୍ଟି ସିଦ୍ଧତାକୁ ବିଶ୍ଳେଷଣ କରି ଏହାକୁ ଦଶମ ରସ ରୂପେ ଗ୍ରହଣ କଲେ । ବିଶ୍ୱନାଥଙ୍କର ଏହି ମତ ଭଗବାନ ଶୁଦ୍ଧୋଦନଙ୍କ ଅଳଙ୍କାର ଗ୍ରନ୍ଥରେ ସ୍ୱୀକାର କରାଯାଇଛି ଏବଂ ଅପ୍‌ପୟଦୀକ୍ଷିତ ମଧ୍ୟ ଏହାକୁ ସ୍ୱୀକାର କରିଅଛନ୍ତି ।

ପାଠକ ମନରେ ରସ ସୃଷ୍ଟିରୁ ଏକପ୍ରକାର ସ୍ଥାୟୀ ଭାବ ଥାଏ । ଏହି ସ୍ଥାୟୀ ଭାବ ରସ ଆସ୍ୱାଦନର ଅଙ୍କୁର ସ୍ୱରୂପ । ଅର୍ଥାତ୍ ଯାହା ଯେଉଁ ରସର ପରିଣାମ, ତାହା ହିଁ ସେହି ରସର ସ୍ଥାୟୀ ଭାବ । ପ୍ରତ୍ୟେକ ମୁହୂର୍ତ୍ତରେ ଯେକୌଣସି ରସରେ ଏହି ସ୍ଥାୟୀ ଭାବ ମଧ୍ୟରୁ ଗୋଟିଏ ଅବସ୍ଥାନ କରେ ଏବଂ କୌଣସି ବିରୁଦ୍ଧଭାବ ଦ୍ୱାରା ତାହା ଅନ୍ତର୍ହିତ ହୁଏ ନାହିଁ । ସ୍ଥାୟୀ ଭାବ ନଅ ଭାଗରେ ବିଭକ୍ତ । ଯଥା— ଉତ୍ସାହ, ଶୋକ, ବିସ୍ମୟ,କ୍ରୋଧ, ଭୟ, ଅନୁରାଗ, ହାସ, ଜୁଗୁପ୍‌ସା ଓ ଶମ । ଇଂରାଜୀରେ ମଧ୍ୟ ଏହି ନବଧା ସ୍ଥାୟୀ ଭାବକୁ ସ୍ୱୀକାର କରାଯାଇଅଛି, ଯଥା—Sexemotional Mirth, Sorrow, Magnanimity, Regitment, Terror, Surprise, Disgust ଓ Quietism. ସ୍ଥାୟୀଭାବ ନଅ ପ୍ରକାର ଥିବାରୁ ସାହିତ୍ୟରେ ନବମ ରସର ପ୍ରାଧାନ୍ୟ ବିଶେଷ ସ୍ୱୀକାର କରାଯାଇଥାଏ ।

## ବିଭିନ୍ନ ରସର ସଂଜ୍ଞା ଓ ଉଦାହରଣ—

ରସାନୁଭୂତିର ୪ଟି ସାମଗ୍ରୀ ମଧ୍ୟରୁ ସ୍ଥାୟୀଭାବ ଅନ୍ୟତମ ହେଲେ ମଧ୍ୟ ବିଭାବ, ଅନୁଭାବ ଓ ସଞ୍ଚାରୀଭାବର ପ୍ରାଧାନ୍ୟ ଯେ ଯଥେଷ୍ଟ ବେଶୀ—ଏହା ଅସ୍ୱୀକାର କରାଯାଇ-ପାରିବ ନାହିଁ । ଯେଉଁ ସବୁ କାରଣ ସ୍ଥାୟୀଭାବମାନଙ୍କର ଉଦ୍‌ବୋଧକ, ତାହା ହିଁ ବିଭାବ । ଏହି ବିଭାବ ପୁଣି ଦୁଇ ପ୍ରକାର । ଅାଲମ୍ବନ ବିଭାବ ଓ ଉଦ୍ଦୀପନ ବିଭାବ । ଯାହାକୁ ଅବଲମ୍ବନ କରି କାବ୍ୟରେ ରସ ଉନ୍ମେଷ ଘଟେ, ତାହା ଆଲମ୍ବନ ବିଭାବ ଓ ଯେଉଁ ସବୁ କାରଣ ପାଇଁ ଏହା ଘଟେ, ତାହା ଉଦ୍ଦୀପନ ବିଭାବ । କାବ୍ୟରେ ନାୟକ ନାୟିକାଙ୍କୁ କେନ୍ଦ୍ର କରି କାବ୍ୟ ସୃଷ୍ଟି ହେଉଥିବାରୁ ସେମାନେ ହେଉଛନ୍ତି ଆଲମ୍ବନ ବିଭାବ ଓ ରୂପ, ରସ ଗନ୍ଧ ସେମାନଙ୍କର ରସ ଉଦ୍ଦୀପିତ କରନ୍ତି ବୋଲି ସେମାନେ ଉଦ୍ଦୀପନ ବିଭାବ । ଆଲମ୍ବନ

ଓ ଉଦ୍ଦୀପନ ବିଭାବଦ୍ୱାରା ପ୍ରକାଶିତ ସ୍ଥାୟୀଭାବ ଯାହାଦ୍ୱାରା ପ୍ରତୀୟମାନ ହୁଏ, ତାହାକୁ ଅନୁଭବ କୁହାଯାଏ । ବସ୍ତୁତଃ ସ୍ଥାୟୀଭାବର କାର୍ଯ୍ୟକୁ ଅନୁଭାବ ଓ କାରଣକୁ ବିଭାବ ବୋଲାଯାଏ । ଯେଉଁ ଭାବ ମନରେ ଉଦୟ ହୋଇ କ୍ଷଣକ ମଧ୍ୟରେ ପୁଣି ଅସ୍ତ ହୋଇଯାଏ, ତାହାକୁ ବ୍ୟଭିଚାରୀ ବା ସଞ୍ଚାରୀ ଭାବ କୁହାଯାଏ । ସଞ୍ଚାରୀ ଭାବ ୩୩ ଭାଗରେ ବିଭକ୍ତ, ଯଥା—ନିର୍ବେଦ, ଆବେଗ, ଦୈନ୍ୟ, ଜଡ଼ତା, ଉଗ୍ରତା, ମୋହ, ମଦ, ଅପସ୍ମାର, ନିଦ୍ରା, ଚପଳତା, ବିବୋଧ, ବିଷାଦ, ଶ୍ରମ, ଔତ୍ସୁକ୍ୟ, ସ୍ମୃତି, ମରଣ, ଆଲସ୍ୟ, ସ୍ୱପ୍ନ, ଚିନ୍ତା, ଗ୍ଲାନି, ଧୃତି, ଅସୂୟା, ଉନ୍ମାଦ, ଶଙ୍କା, ଅବହିତ୍ଥା, ହର୍ଷ, ଲଜ୍ଜା, ମତି, ଗର୍ବ, ବ୍ୟାଧି, ସନ୍ତ୍ରାସ, ଅକର୍ମ ଇତ୍ୟାଦି ।

‘ରସ’ କାବ୍ୟର ଆତ୍ମା ବୋଲି ଆଲଙ୍କାରିକମାନେ ସ୍ୱୀକାର କରିଯାଇଥିଲେ ହେଁ ଏହା ବସ୍ତୁତଃ ସାହିତ୍ୟର ଆଭ୍ୟନ୍ତରୀଣ ବିସ୍ତରର ଦ୍ୟୋତକ, ଏଥିରେ କାବ୍ୟର ଶାରୀରିକ ଗଠନ ରୂପରେଖର ନିର୍ଯାସ ନାହିଁ, ହେଲେ ମଧ୍ୟ ସାହିତ୍ୟରେ ରସବାଦର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ରସର ଏଇ ସାମଗ୍ରିକ ମହତ୍ତ୍ୱ ସ୍ୱୀକାର କରି ପାଠକ ନିଜକୁ କାବ୍ୟ ମଧ୍ୟରେ ହଜେଇ ଦେଇପାରିଲେ ସେ ପଠନର ସାର୍ଥକତା ଲାଭ କରେ । ବୀଣାର ଝଙ୍କାର ପରି, ଘଣ୍ଟାର ଅନୁରଣନ ପରି କାବ୍ୟପ୍ରଭାବ ତା’ ମନରେ ଯେଉଁ ଶାଶ୍ୱତ, ଯେଉଁ ଦିବ୍ୟଭାବନା ଜାଗ୍ରତ କରେ, ତାହା କେବଳ ‘ରସ’ ଯୋଗୁ ହିଁ ସମ୍ଭବ ହୁଏ । ଅତଏବ ସାହିତ୍ୟରେ ରସର ଭୂମିକା ଅସ୍ୱୀକାର କରିହେବ ନାହିଁ ।



# ସାହିତ୍ୟରେ ଧ୍ୱନିବାଦ

ସଂସ୍କୃତ ସାହିତ୍ୟରେ ସମୀକ୍ଷା ଶାସ୍ତ୍ରକୁ ଅଳଙ୍କାର ଶାସ୍ତ୍ର ବୋଲି କୁହାଯାଇଛି । ସାହିତ୍ୟର ପରିସର ଏତେ ବ୍ୟାପକ ଯେ ପାଶ୍ଚାତ୍ୟ ସମାଲୋଚନାରେ ଭାଷାରେ ଲିଖିତ ସକଳ ପ୍ରକାର ଗ୍ରନ୍ଥର ସମଷ୍ଟି ହିଁ ସାହିତ୍ୟ ପଦବାଚ୍ୟ । କିନ୍ତୁ ସଂସ୍କୃତରେ ସାହିତ୍ୟ କହିଲେ କାବ୍ୟ, କବିତା ଓ ସେମାନଙ୍କର ସମୀକ୍ଷା ଶାସ୍ତ୍ରର ସମଷ୍ଟିକୁ ହିଁ ବୁଝାଇଥାଏ । ଅତି ପ୍ରାଚୀନ କାଳରୁ ସଂସ୍କୃତ ସାହିତ୍ୟର ସମୀକ୍ଷା ଶାସ୍ତ୍ରରେ ସାହିତ୍ୟକୁ 'କାବ୍ୟ' ନାମରେ ନାମିତ କରାଯାଇଅଛି; ଯଥା—'କାବ୍ୟାଳଙ୍କାର ସୂତ୍ରାଣି', 'କାବ୍ୟ ଜାନକୀ' 'କାବ୍ୟାଲୋକ', 'କାବ୍ୟମୀମାଂସା', 'କାବ୍ୟାଦର୍ଶ' ଓ 'କାବ୍ୟପ୍ରକାଶ' ଇତ୍ୟାଦି । କିନ୍ତୁ ଚତୁର୍ଦ୍ଦଶ ଶତାବ୍ଦୀରେ ଉତ୍କଳୀୟ କାବ୍ୟଶାସ୍ତ୍ର-ସମୀକ୍ଷକ କବିରାଜ ବିଶ୍ୱନାଥ ମହାପାତ୍ର ତାଙ୍କର ସମୀକ୍ଷା ଶାସ୍ତ୍ରକୁ 'ସାହିତ୍ୟ ଦର୍ପଣ' ବୋଲି ନାମିତ କରିଛନ୍ତି । ଏହାଙ୍କ ପୂର୍ବରୁ ଭର୍ତ୍ତୃହରି ତାଙ୍କ "ନୀତି ଶତକ"ରେ—

"ସଙ୍ଗୀତ ସାହିତ୍ୟ ରସାନଭିଜ୍ଞଃ
ସାକ୍ଷାତ୍ ପଶୁପୁଚ୍ଛ ବିଷାଣ ହୀନଃ"

—ଏହି ଉକ୍ତିରେ ସଙ୍ଗୀତ ଓ ସାହିତ୍ୟ ଉଭୟ ଶବ୍ଦର ପ୍ରୟୋଗ କରିଥିଲେ । ଏଠାରେ ବିଚାର୍ଯ୍ୟ ବିଷୟ ଏହି ଯେ, ଯଦି ଭାଷା ଲିଖିତ ସକଳ ପ୍ରକାର ଗ୍ରନ୍ଥକୁ ସାହିତ୍ୟ ଆଖ୍ୟା ଦିଆଯାଏ, ତେବେ ସଙ୍ଗୀତ ଓ ସାହିତ୍ୟକୁ ପୃଥକ୍ ଶବ୍ଦରେ ବ୍ୟବହାର କରିବାର କୌଣସି ଯାଥାର୍ଥ୍ୟ ନାହିଁ । ଅମର ପୂର୍ବାଚାର୍ଯ୍ୟମାନେ ମଧ୍ୟ ଏହି ସିଦ୍ଧାନ୍ତରେ ଉପନୀତ ହୋଇଛନ୍ତି ଯେ, କାବ୍ୟ ଓ ସାହିତ୍ୟ ମଧ୍ୟରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଯାହା ସାହିତ୍ୟ, ତାହା ମୂଳ ରୂପରେ କାବ୍ୟ ଏବଂ ଯାହା କାବ୍ୟ ସାମଗ୍ରିକ ଭାବରେ ତାହା ହିଁ ସାହିତ୍ୟ; ଅର୍ଥାତ୍ ତା'ର ଅଙ୍ଗୀଭୂତ ସମୀକ୍ଷା ଶାସ୍ତ୍ର ଓ କାବ୍ୟ—ଏହି ଉଭୟଙ୍କର ସମଷ୍ଟିକୁ ସାହିତ୍ୟ କୁହାଯାଏ । ସେଥିପାଇଁ "ରଘୁବଂଶ"କୁ କାବ୍ୟ କହିଲାବେଳେ କାଳିଦାସଙ୍କର ସମଗ୍ର ରଚନାକୁ "କାଳିଦାସ ସାହିତ୍ୟ" ବୋଲି କୁହାଯାଇଅଛି । ବ୍ୟଷ୍ଟି ରୂପରେ ଯାହା କାବ୍ୟ, ସମଷ୍ଟି ରୂପରେ ତାହା ହିଁ ସାହିତ୍ୟ । ଯଥାର୍ଥରେ ରାଜଶେଖର ସ୍ୱୀୟ "କାବ୍ୟ-ମୀମାଂସା"ରେ କହିଅଛନ୍ତି, "ସାହିତ୍ୟଂ ପଞ୍ଚମୀ ବିଦ୍ୟା ସାତୁ ସର୍ବବିଦ୍ୟାନାମ୍ ନିଷ୍ୟନ୍ଦଃ ।"

ରାଜଶେଖରଙ୍କ ପୂର୍ବରୁ କୌଟିଲ୍ୟ ତାଙ୍କ ଅର୍ଥଶାସ୍ତ୍ରରେ ସାହିତ୍ୟ ବା କାବ୍ୟର ନାମ ଉଲ୍ଲେଖ କରି ନାହାନ୍ତି । ସେ କହିଛନ୍ତି—

"ଆନ୍ୱୀକ୍ଷିକୀ ତ୍ରୟୀ ବାର୍ତ୍ତା ଦଣ୍ଡନୀତିଶ୍ଚ ଶାଶ୍ୱତୀ
ଏତା ବିଦ୍ୟା ଚତସ୍ରସ୍ତୁ ଲୋକସଂସ୍ଥିତି ହେତବଃ ।"

ଅର୍ଥାତ୍ ଆନ୍ୱୀକ୍ଷିକୀ ( Metaphysics ), ତ୍ରୟୀ (ବେଦ), ବାର୍ତ୍ତା ( Agricultural Economics ), ଦଣ୍ଡ ( Political Science ) ଏହିପରି ଚାରିଟି ବିଦ୍ୟା ଲୋକଙ୍କର ଜୀବିକା ନିର୍ବାହ ସକାଶେ ଜଗତରେ ସୃଷ୍ଟି ହୋଇଥିଲା । ତାହା ହେଲେ ଏଥିରୁ ମନେହେଉଛି ଯେ, ଉପରୋକ୍ତ ଶାସ୍ତ୍ରମାନ ମନୁଷ୍ୟର ପ୍ରୟୋଜନ ନିମନ୍ତେ ସୃଷ୍ଟି । ମାତ୍ର ସାହିତ୍ୟର ରାଜ୍ୟ ଅପ୍ରୟୋଜନର ରାଜ୍ୟ । ତେଣୁ ସାହିତ୍ୟ ଯଥାର୍ଥରେ ପଞ୍ଚମ ବିଦ୍ୟାର ଧର୍ମ ଗ୍ରହଣ କରିଅଛି ।

ପ୍ରତ୍ୟେକ ଶାସ୍ତ୍ରର ସ୍ୱକୀୟ ସମୀକ୍ଷା ଗ୍ରନ୍ଥ ଦେଖିବାକୁ ମିଳେ । ସାହିତ୍ୟର ମଧ୍ୟ ସେହିପରି ସମୀକ୍ଷା ଶାସ୍ତ୍ର ଅତି ପ୍ରାଚୀନ କାଳରୁ ରଚିତ ହୋଇଅଛି, ଯାହାର ଆଦ୍ୟ ପ୍ରମାଣ ଅଗ୍ନିପୁରାଣରେ ଦେଖିବାକୁ ମିଳେ । ତାପରେ ଭରତ ମୁନିଙ୍କ ନାଟ୍ୟ ଶାସ୍ତ୍ରରେ ମଧ୍ୟ କାବ୍ୟତତ୍ତ୍ୱମାନଙ୍କର ବିଶେଷ ବିମର୍ଷ ପରିଲକ୍ଷିତ । ପରବର୍ତ୍ତୀ ସମୟରେ ଭାମହ, ଉଦ୍ଭଟ, ରୁଦ୍ରଟ, ବାମନ, ଦଣ୍ଡୀ, ମମ୍ମଟ ପ୍ରଭୃତି ସମୀକ୍ଷକମାନେ କାବ୍ୟର ବିଭିନ୍ନ ଅଙ୍ଗକୁ ସମୀକ୍ଷା ଦୃଷ୍ଟିରୁ ବିଭିନ୍ନ ଭାବରେ ନିରୀକ୍ଷଣ କରିଅଛନ୍ତି । ଭାମହଙ୍କଠାରୁ ଆରମ୍ଭ କରି ଆନନ୍ଦବର୍ଦ୍ଧନଙ୍କ ପୂର୍ବବର୍ତ୍ତୀ ଆଚାର୍ଯ୍ୟଗଣ କାବ୍ୟରେ ଅଳଙ୍କାରର ପ୍ରାଧାନ୍ୟ ଦର୍ଶାଇଅଛନ୍ତି । ସେଥିପାଇଁ ସମୀକ୍ଷା ଶାସ୍ତ୍ରକୁ ପ୍ରାଚୀନ କାଳରୁ ଅଳଙ୍କାର ଶାସ୍ତ୍ର ଆଖ୍ୟା ଦିଆଯାଇଛି । ଆନନ୍ଦବର୍ଦ୍ଧନଙ୍କ ସମୟ ବେଳକୁ ଧ୍ୱନିତତ୍ତ୍ୱର ସମୀକ୍ଷାର ଆବିଷ୍କାର ସେପରି ବିଧିବଦ୍ଧ ଭାବରେ ହୋଇ ନାହିଁ । ଆନନ୍ଦବର୍ଦ୍ଧନଙ୍କ ଆବିର୍ଭାବ ପରେ, ସେ ନିଜର ସୂକ୍ଷ୍ମଦର୍ଶୀ ପ୍ରତିଭାରେ ଦେଖିଲେ ଯେ, କାବ୍ୟରେ ଆଉ ଏକ ଚମତ୍କାରୀ ତତ୍ତ୍ୱ ଅନ୍ତର୍ନିହିତ ରହିଅଛି, ଯାହାକୁ କି ଏପର୍ଯ୍ୟନ୍ତ ସମୀକ୍ଷକମାନେ ଆବିଷ୍କାର କରିପାରି ନାହାନ୍ତି । ଏହା ହିଁ ପ୍ରସ୍ତୁତ ବିଷୟରେ ଆଲୋଚ୍ୟ ଧ୍ୱନିତତ୍ତ୍ୱ । ଆନନ୍ଦବର୍ଦ୍ଧନଙ୍କ ପ୍ରତିପାଦ୍ୟ ବିଷୟ ଏହି ଯେ, କାବ୍ୟପୁରୁଷ ବା କବିତାକାମିନୀର ଯେପରି ଗୋଟିଏ ଶରୀର-ପକ୍ଷ ରହିଛି, ସେପରି ଗୋଟିଏ ଆତ୍ମପକ୍ଷ ମଧ୍ୟ ରହିଛି । ପୂର୍ବବର୍ତ୍ତୀ ଆଚାର୍ଯ୍ୟମାନେ ଅଳଙ୍କାରର ପ୍ରାଧାନ୍ୟ ଦର୍ଶାଇ ଓ କେତେକ ଆଚାର୍ଯ୍ୟ ବିଭିନ୍ନ ଦୋଷଗୁଣ ବିବେଚନା କରି କାବ୍ୟର ଶରୀର-ପକ୍ଷକୁ ଯଥାସମ୍ଭବ ଉତ୍କୃଷ୍ଟ ବୋଲି ପ୍ରମାଣ କରିବାରେ ପ୍ରୟାସ କରିଅଛନ୍ତି । କିନ୍ତୁ ମୃତ ଶରୀରରେ ବା ପ୍ରାଣହୀନ ପୁତ୍ତଳିକା ଶରୀରରେ ଯେତେ ଅଳଙ୍କାର ଦେଲେ ବା ତାର ଶରୀରକୁ ଯେତେ ନିର୍ଦ୍ଦୋଷ କଲେ ମଧ୍ୟ, ତାହା ଯେପରି ସହୃଦୟର ହୃଦୟକୁ ଆକର୍ଷଣ କରିପାରେ

ନାହିଁ, ସେହିପରି ଆତ୍ମପକ୍ଷହୀନ, କେବଳ ଶରୀରପକ୍ଷ ଦ୍ୱାରା ସମୃଦ୍ଧ କାବ୍ୟକବିତା ସହୃଦୟ ପାଠକ ମନରେ କୌଣସି ରେଖାପାତ କରିପାରେ ନାହିଁ । ତାଙ୍କ ମତରେ 'ଶବ୍ଦ ଓ ଅର୍ଥ' କାବ୍ୟରେ ଶରୀର ସ୍ଥାନୀୟ, ଉପମା, ଅନୁପ୍ରାସ ପ୍ରଭୃତି କାବ୍ୟରେ ମନୁଷ୍ୟ ଶରୀରଗତ ଅଳଙ୍କାର ସ୍ଥାନୀୟ, ରୀତିଗୁଡ଼ିକ ଅବୟବମାନଙ୍କର ଯଥାର୍ଥ ସନ୍ନିବେଶ ସ୍ଥାନୀୟ ଏବଂ ପ୍ରାଚୀନ ସମ୍ମତ ଗୁଣଗୁଡ଼ିକ ମଧ୍ୟ ମନୁଷ୍ୟ ଶରୀରସ୍ଥ ଅଳଙ୍କାରାତିରିକ୍ତ ଅନ୍ୟ ସୌନ୍ଦର୍ଯ୍ୟ ସ୍ଥାନୀୟ । କିନ୍ତୁ ମନୁଷ୍ୟମାନେ ପ୍ରାଣୀ ହେଲେ ମଧ୍ୟ ସମସ୍ତଙ୍କର ଆତ୍ମା ଏକ ଜାତୀୟ ନୁହେଁ । କେହି ଶୂର, କେହି ଭୀରୁ, କେହି ଭକ୍ତିପ୍ରବଣ, କେହି ଉଦାର, କେହି ଅନୁଦାର, କେହି ସଙ୍କୀର୍ଣ୍ଣମନା, କେହି ଉଚ୍ଚ ହୃଦୟ ବିଶିଷ୍ଟ । ତେଣୁ ଆତ୍ମପକ୍ଷର ଉତ୍କର୍ଷ ଦ୍ୱାରା ହିଁ ମନୁଷ୍ୟ ସମାଜରେ ଯେପରି ଏକ ସାଧାରଣ ପୁରୁଷ ମହାପୁରୁଷ କୋଟୀକୁ ଉନ୍ନୀତ ହୁଏ, କାବ୍ୟରେ ମଧ୍ୟ ସେହିପରି ଆତ୍ମପକ୍ଷର ଉତ୍କର୍ଷ ଯେତେ ବେଶୀ ହେବ, ସେ କାବ୍ୟ ସେତେ ଉତ୍କୃଷ୍ଟ ବୋଲି ପରିଗଣିତ ହେବ । ଆତ୍ମପକ୍ଷର ଉତ୍କର୍ଷ ବିଶିଷ୍ଟ କାବ୍ୟ ରଚନା କରିବାର ସାମର୍ଥ୍ୟ ସମସ୍ତଙ୍କର ନ ଥାଏ । ଯାହାଙ୍କଠାରେ ଏ ପ୍ରତିଭା ଥାଏ, ସେ ମହାକବି ପଦବାଚ୍ୟ । ଆନନ୍ଦବର୍ଦ୍ଧନ ସ୍ୱୀୟ 'ଧ୍ୱନ୍ୟାଲୋକ'ରେ କହିଛନ୍ତି :

"ହେନାସ୍ମିନ୍ ଅତି ବିଚିତ୍ର କବି ପରମ୍ପରାବାହିନି ସଂସାରେ କାଳିଦାସ ପ୍ରଭୃତୟଃ ଦ୍ୱିତ୍ରାଃ ପଞ୍ଚଷାବା ମହାକବୟଃ ଏବ ଗଣ୍ୟନ୍ତେ ।"

ସେହି ବୈଶିଷ୍ଟ୍ୟ ଯୋଗୁଁ ହିଁ ଆଜି ମହାକବି କାଳିଦାସ, ବରେଣ୍ୟ ସେକ୍ସପିୟର, କବି ରବୀନ୍ଦ୍ର ବିଶ୍ୱକବି ରୂପେ ପରିଚିତ । କାରଣ ସେମାନଙ୍କର ସାହିତ୍ୟରେ ଏହି ଆତ୍ମପକ୍ଷର ଉତ୍କର୍ଷ ଲୋକୋତ୍ତର ହୋଇଉଠିଛି । ଆଉ ଏକ ସ୍ଥାନରେ ମଧ୍ୟ ଆନନ୍ଦବର୍ଦ୍ଧନ କହିଛନ୍ତି—

"ନହି କବେ ଇତିବୃତ୍ତ ମାତ୍ର ନିର୍ବାହେଣ ଆତ୍ମଲାଭଃ
ଇତିହାସାଦେରେବ ତତ୍ସିଦ୍ଧେଃ ।"

ଅର୍ଥାତ୍ କବି କେବଳ ଇତିବୃତ୍ତ ବା ଇତିହାସ ବିଷୟ ଲେଖିଲେ ତା'ର ଲକ୍ଷ୍ୟ ସିଦ୍ଧ ହୁଏ ନାହିଁ । ଯେଣୁ ଇତିବୃତ୍ତମାନଙ୍କର ବର୍ଣ୍ଣନା ଇତିହାସ ପ୍ରଭୃତିରେ ସିଦ୍ଧ ହୋଇପାରେ । ସେଥିଯୋଗୁଁ ସେହି ଆତ୍ମପକ୍ଷକୁ ସେ ନିଜର ସୁବିଖ୍ୟାତ ଗ୍ରନ୍ଥରେ ଉଦାହରଣ, ପ୍ରତି ଉଦାହରଣ ଓ ବିଭିନ୍ନ ଯୁକ୍ତିତର୍କ ଛଳରେ ସବିସ୍ତର ଆଲୋଚନା କରିଯାଇଅଛନ୍ତି । ତାଙ୍କ ମତରେ ଧ୍ୱନି ହିଁ କାବ୍ୟର ଆତ୍ମା ।

ଏହି ଧ୍ୱନି ତିନି ଭାଗରେ ବିଭକ୍ତ । ବସ୍ତୁ ଧ୍ୱନି, ରସ ଧ୍ୱନି ଓ ଅଳଙ୍କାର ଧ୍ୱନି । ଏହି ତ୍ରିବିଧ ଧ୍ୱନି ମଧ୍ୟରେ ରସଧ୍ୱନି ହିଁ ସର୍ବୋତ୍କୃଷ୍ଟ । କିନ୍ତୁ ସବୁ କ୍ଷେତ୍ରରେ ରସ ଧ୍ୱନିର

ନିବେଶ କବି ପକ୍ଷରେ ସମ୍ଭବ ନୁହେଁ । ତେଣୁ ଯେଉଁ ସ୍ଥଳରେ ରସଧ୍ୱନି ସମ୍ଭବ ନୁହେଁ, ସେ ସ୍ଥଳରେ କବିମାନେ ଅନ୍ତତଃ ପକ୍ଷେ ଅଳଙ୍କାର ଧ୍ୱନି ବା ବସ୍ତୁ ଧ୍ୱନି ରସ ସନ୍ନିବେଶ ଦେଖାଇବାକୁ ଚେଷ୍ଟା କରିଥାଆନ୍ତି । ଯେପରି ପ୍ରାଣହୀନ ଶରୀରର କୌଣସି ମୂଲ୍ୟ ନାହିଁ, ସେହିପରି ଧ୍ୱନିହୀନ କାବ୍ୟର କୌଣସି ଉତ୍କର୍ଷ ନ ଥାଏ । ଯଦି ଧ୍ୱନିତତ୍ତ୍ୱ କାବ୍ୟରେ ଉଚ୍ଚସ୍ଥାନ ଅଧିକାର କରିଥାଏ, ତେବେ ଅଳଙ୍କାରାଦି ଦ୍ୱାରା ସୁଶୋଭିତ କାବ୍ୟର ଶରୀର ପକ୍ଷ ଦୁର୍ବଳ ହେଲେ ମଧ୍ୟ ତାହା ପ୍ରଶଂସନୀୟ ଓ ଉଚ୍ଚକୋଟୀର ବୋଲି ବିବେଚିତ ହୁଏ । ଉଦାହରଣ ସ୍ୱରୂପ, ଅନ୍ୟ କବିମାନଙ୍କର କାବ୍ୟକବିତାରେ ଅଳଙ୍କାରାଦିର ନିବେଶ ଯେତେ ଦେଖିବାକୁ ମିଳେ ମହାକବି କାଳିଦାସଙ୍କ କବିତାରେ ତା'ର ସମାବେଶ ବେଶି ଦେଖିବାକୁ ମିଳେ ନାହିଁ, କେବଳ ଆତ୍ମପକ୍ଷ (ରସାଦି)ର ଉତ୍କର୍ଷ ଯୋଗୁଁ ମହାକବି କାଳିଦାସଙ୍କ ସାହିତ୍ୟ ଆଜି ସାରା ବିଶ୍ୱରେ ସମାଦୃତ । ଯେପରି ସୁନ୍ଦରୀ ସ୍ତ୍ରୀର ଅଳଂକୃତ ଶରୀରଠାରୁ ଲାବଣ୍ୟ ବୋଲି ଆଉ ଏକ ପୃଥକ ତତ୍ତ୍ୱ ନିହିତ ଥାଏ ଏବଂ ତାହା ହିଁ ସହୃଦୟମାନଙ୍କର ଚିତ୍ତାକର୍ଷଣ କରିବାରେ ସମର୍ଥ, ସେହିପରି କାବ୍ୟରେ ଅଳଙ୍କୃତ ଶବ୍ଦାର୍ଥ ବ୍ୟତୀତ ଅଙ୍ଗନା ଶରୀରର ଲାବଣ୍ୟ ତୁଲ୍ୟ ଆଉ ଏକ ବସ୍ତୁ ସହୃଦୟମାନଙ୍କ ହୃଦୟକୁ ଆକୃଷ୍ଟ କରିଥାଏ—ତାହାକୁ ହିଁ ଧ୍ୱନି କୁହାଯାଏ । ସେହି-ଲାବଣ୍ୟ ବିଶେଷ ବା କାବ୍ୟତତ୍ତ୍ୱ ଏହି ତ୍ରିବିଧ ଧ୍ୱନିରୁ ସମାଗତ ହୋଇଥାଏ । ସେହି ଧ୍ୱନି କାବ୍ୟର ଗୋଟିଏ ଆଭ୍ୟନ୍ତରୀଣ ଅର୍ଥ । ଯେପରି ଶରୀର ମଧ୍ୟରେ ଆତ୍ମା ଥାଇ ମଧ୍ୟ ତାହା କାହାରି ପ୍ରତ୍ୟକ୍ଷୀଭୂତ ହୁଏ ନାହିଁ, କେବଳ ବିବେକୀମାନେ ସେହି ଆତ୍ମସତ୍ତା ଉପଲବ୍ଧି କରିଥାଆନ୍ତି ସେହିପରି କାବ୍ୟରେ ଧ୍ୱନିତତ୍ତ୍ୱ ବହିର୍ଦୃଷ୍ଟିରେ ଦର୍ଶନଯୋଗ୍ୟ ବା ଉପଲବ୍ଧ ନୁହେଁ । କେବଳ ସହୃଦୟ-ମାନେ ହିଁ ସେହି ତତ୍ତ୍ୱକୁ ଉପଲବ୍ଧ କରିପାରିବେ । ଏଠାରେ ଗୋଟିଏ କଥା ସ୍ମରଣ କରାଯାଇପାରେ ଯେ, ଶବ୍ଦ ଓ ଅର୍ଥ କାବ୍ୟର ଶରୀର ସ୍ଥାନୀୟ । ଶବ୍ଦକାବ୍ୟର ବହିଃଶରୀର ଓ ଅର୍ଥ କାବ୍ୟର ଅନ୍ତଃଶରୀର । ମନୁଷ୍ୟ ଶରୀରରେ ଯେପରି ମାଂସ, ଚର୍ମ ପ୍ରଭୃତି ବହିଃଶରୀର ଓ ଅସ୍ଥି ମଜ୍ଜା ଅନ୍ତର୍ଶରୀର, ସେହିପରି ଶବ୍ଦ କାବ୍ୟର ବହିର୍ଶରୀର ଏବଂ ଅର୍ଥ କାବ୍ୟର ଅନ୍ତର୍ଶରୀର । କିନ୍ତୁ ଧ୍ୱନି ଏହି ବହିର୍ଶରୀର ଓ ଅନ୍ତଃଶରୀରଠାରୁ ଢେର୍ ଉଚ୍ଚରେ । ମନୁଷ୍ୟ ଶରୀରରେ ଏହି ବହିଃଶରୀର ଓ ଅନ୍ତଃଶରୀରଠାରୁ ଆତ୍ମାଟି ଯେପରି ପୃଥକ୍ ବସ୍ତୁ ସେହିପରି କାବ୍ୟର ବହିଃ ଶରୀର ଓ ଅନ୍ତଃଶରୀର ଅପେକ୍ଷା ଧ୍ୱନିତତ୍ତ୍ୱ ମଧ୍ୟ ଏକ ପୃଥକ୍ ବସ୍ତୁ । କାବ୍ୟର ଆତ୍ମତତ୍ତ୍ୱକୁ ଏକ ଅର୍ଥବିଶେଷ ରୂପେ ବର୍ଣ୍ଣନା କରାଯାଇଅଛି । ଯେପରି ଜଗତରେ ଶବ୍ଦ ଭିନ୍ନ ଯାହା କିଛି ଅଛି, ତାହା ସବୁ ଅର୍ଥ ପଦବାଚ୍ୟ, ସେହିପରି ଧ୍ୱନିତତ୍ତ୍ୱ ମଧ୍ୟ ଶବ୍ଦଠାରୁ ଭିନ୍ନ ବୋଲି ତାହା ଏକ ଅର୍ଥବିଶେଷ ରୂପେ ପରିଗଣିତ । ସେହି ଅର୍ଥକୁ କେବଳ "ପ୍ରତୀତିମାତ୍ର ଗୋଚର" ବୋଲି ତାହାକୁ ପ୍ରତୀୟମାନ ଅର୍ଥ ବୋଲି କୁହାଯାଇଅଛି । ଏହାର ଅପର ନାମ ବ୍ୟଂଗ୍ୟାର୍ଥ । ଲୌକିକ ବ୍ୟବହାରରେ ମଧ୍ୟ ଏହି ବ୍ୟଙ୍ଗ୍ୟ ଅର୍ଥ ( ପ୍ରତୀୟମାନ ଅର୍ଥ )କୁ ବିଦଗ୍ଧ ବ୍ୟକ୍ତିମାନେ ବହୁଳ ଭାବରେ ବ୍ୟବହାର କରିଥାଆନ୍ତି । ସାଧାରଣତଃ ଘର-କୋଣରେ

ଚତୁର ସ୍ତ୍ରୀମାନେ ମଧ୍ୟ ନିଜ ନିଜ ଉକ୍ତିରୁ ଅପର ଶ୍ରୋତାମନରେ ଏକ ପ୍ରତୀୟମାନ ଅର୍ଥର ସଞ୍ଚାର କରାଇ ତାହାକୁ "ଚମତ୍କାର ପ୍ରଧାନ" କରିଥାଆନ୍ତି । ସେହି ଚମତ୍କାରିତା ଯଦି ଶବ୍ଦ ଓ ତାହାର ପ୍ରସିଦ୍ଧ ବାଚ୍ୟାର୍ଥଠାରୁ ଅଧିକ ହୁଏ, ତେବେ ତାହାକୁ ଧ୍ୱନିକାବ୍ୟ କୁହାଯାଏ । ଧ୍ୱନିକାର ନିଜେ ତାଙ୍କ ଗ୍ରନ୍ଥରେ ଏହି ଧ୍ୱନିର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ କହିଅଛନ୍ତି—

"ଯତ୍ରାର୍ଥ ଶବ୍ଦୌ ବାତମର୍ଥଂ ଉପସର୍ଜନୀକୃତ ସ୍ୱାର୍ଥୌ । ବ୍ୟଙ୍ଗ୍ୟ କାବ୍ୟ ବିଶେଷ୍ୟ ସଃ ଧ୍ୱନିରିତି ସୂରିଭିଃ କଥିତଃ" – ଅର୍ଥାତ୍ ଯହିଁରେ ଅର୍ଥ, ଅର୍ଥାତ୍ ବାଚ୍ୟାର୍ଥ ନିଜକୁ ଗୁଣୀଭୂତ କରେ ଓ ଶବ୍ଦ ନିଜର ବାଚ୍ୟାର୍ଥକୁ ଗୁଣୀଭୂତ କରେ ଏବଂ ଏହି ଗୁଣୀକୃତ ଶବ୍ଦ ଅର୍ଥ ଉଭୟେ ଯେଉଁ ପ୍ରତୀୟମାନ ଅର୍ଥ ବିଶେଷକୁ ଉପସ୍ଥାପିତ କରନ୍ତି (ଅର୍ଥାତ୍ ସେହି ପ୍ରତୀୟମାନ ଅର୍ଥ-ଉକ୍ତ ଶବ୍ଦ-ଅର୍ଥଠାରୁ ବାଚ୍ୟାର୍ଥ ଉତ୍କୃଷ୍ଟ ହୋଇଉଠେ) ତାହାକୁ ପଣ୍ଡିତମାନେ ଧ୍ୱନିକାବ୍ୟ କହନ୍ତି । କେଉଁ କାରଣରୁ ତାହାକୁ ଧ୍ୱନି ଶବ୍ଦରେ ବ୍ୟବହାର କରାଯାଏ, ତାହାର ହେତୁ ଦର୍ଶାଇବାକୁ ଯାଇ ଆନନ୍ଦବର୍ଦ୍ଧନ କହିଛନ୍ତି ଯେ ସାହିତ୍ୟିକମାନେ ବିଶେଷତଃ ବ୍ୟାକରଣ ସମୀକ୍ଷକମାନେ ଶବ୍ଦକୁ ଧ୍ୱନି ଆଖ୍ୟା ଦେଇଅଛନ୍ତି । ବାସ୍ତବିକ୍ ବ୍ୟାକରଣ ଦର୍ଶନରେ ଯାହାକୁ ଦୁନିଆରେ ଶବ୍ଦ ବୋଲି କୁହାଯାଏ, ତାହାକୁ ଧ୍ୱନି ଆଖ୍ୟା ଦିଆଯାଇଅଛି । ବ୍ୟାକରଣ ଦର୍ଶନରେ ଶବ୍ଦ କହିଲେ ଶବ୍ଦବ୍ରହ୍ମକୁ ହିଁ ବୁଝାଏ, ଯାହାର ଅପର ନାମ ସ୍ଫୋଟ । ସେହି ସ୍ଫୋଟ ହିଁ ଅର୍ଥବୋଧ ହେବାରେ ଏକମାତ୍ର କାରଣ ଏବଂ ତାର ଅଭାବରେ ଅର୍ଥବୋଧ ଅସମ୍ଭବ ହୋଇପଡ଼େ । ବ୍ୟାକରଣରେ ସ୍ଫୋଟ ଶବ୍ଦର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି– "ସ୍ଫୁଟତି ଅଭିବ୍ୟକ୍ତ ଭବତି ଅର୍ଥଃ ଅସ୍ମାତ୍ ଇତି ସ୍ଫୋଟ ।" ବ୍ୟାକରଣ ଦର୍ଶନରେ ଏହା ସବିସ୍ତାର ପ୍ରତିପାଦିତ ହୋଇଅଛି ଯେ ଯେପରି ବେଦାନ୍ତିକ ମତରେ ସର୍ବଂ ବ୍ରହ୍ମମୟଂ ଜଗତ୍, ସେହିପରି ବ୍ୟାକରଣ ଦର୍ଶନ ମତରେ ସର୍ବଂ ସ୍ଫୋଟମୟଂ ଜଗତ୍ । ଏହି ସ୍ଫୋଟ "ଶବ୍ଦ ବ୍ରହ୍ମ" ହୋଇଥିବାରୁ ଜଳ, ସ୍ଥଳ ଓ ଗଗନ ସର୍ବତ୍ର ବ୍ୟାପ୍ତ, ମନୁଷ୍ୟ ମୁଖରୁ ଯେଉଁ ଶ୍ରବଣେନ୍ଦ୍ରିୟ ଗ୍ରାହ୍ୟ ବସ୍ତୁ ବାହାରେ ତାହାର ନାମ ଧ୍ୱନି । ତାହା ଶବ୍ଦ ପଦବାଚ୍ୟ ନୁହେଁ । ସେହି ଧ୍ୱନି ମନୁଷ୍ୟମୁଖରୁ ନିର୍ଗତ ହୋଇ ସର୍ବତ୍ର ବ୍ୟାପକ ରୂପେ ବିଦ୍ୟମାନ ଥିବା ସ୍ଫୋଟରେ ଆଘାତ କରି ସ୍ଫୋଟର ଅର୍ଥ ଦ୍ୟୋତିତ କରାଏ । ତେଣୁ ବ୍ୟାକରଣ ଦର୍ଶନ ମତରେ ସ୍ଫୋଟ ପ୍ରଧାନ ଓ ତାର ଉଦ୍‌ବୋଧକ ବା ଅଭିବ୍ୟଞ୍ଜକ ଶବ୍ଦ (ଧ୍ୱନି) ଅପ୍ରଧାନ । ତେଣୁ ଏହା ସିଦ୍ଧାନ୍ତିତ ହେଲା ଯେ, ପ୍ରଧାନଭୂତ ସ୍ଫୋଟ ଅଭିବ୍ୟଞ୍ଜକ ଅପ୍ରଧାନ ବସ୍ତୁ ଧ୍ୱନି ପଦବାଚ୍ୟ । ସେହିପରି କାବ୍ୟରେ ପ୍ରଧାନଭୂତ ପ୍ରତୀୟମାନ ଅର୍ଥ ବିଶେଷ ରୂପୀ ପ୍ରଧାନଭୂତ ବସ୍ତୁର ଅଭିବ୍ୟଞ୍ଜକ ଶବ୍ଦ ଓ ଅର୍ଥ ଉଭୟ ଧ୍ୱନି ପଦବାଚ୍ୟ । ତେଣୁ କାବ୍ୟ କହିଲେ ସେହି କାବ୍ୟକୁ ବୁଝାଇବ ଯେଉଁଠି ପ୍ରତୀୟମାନ ଅର୍ଥ ପ୍ରଧାନ ଓ ତାହାର ଅଭିବ୍ୟଞ୍ଜକ ଶବ୍ଦ ଓ ଅର୍ଥ ଅପ୍ରଧାନ ହୋଇ ରହିଥାଆନ୍ତି । କାବ୍ୟରେ ଯେଉଁ

ତତ୍ତ୍ୱ ସର୍ବପ୍ରଧାନ, ତାହା ଯଦି ନ ରହେ, ତା'ହେଲେ ସେ କାବ୍ୟ ଉତ୍କୃଷ୍ଟ କାବ୍ୟ ପଦବାଚ୍ୟ ହୋଇପାରେ ନାହିଁ । ଏଠାରେ ଆଉ ଏକ ବିଷୟ ସ୍ମରଣୀୟ, ଧ୍ୱନିତତ୍ତ୍ୱ ଲିଖିତ ସିଦ୍ଧାନ୍ତକୁ ଜଗତ ସମକ୍ଷରେ ପ୍ରତିଷ୍ଠା କରିବା ନିମନ୍ତେ ଆଚାର୍ଯ୍ୟ ଅଭିନବ ଗୁପ୍ତ ଯେଉଁ ପ୍ରୟାସ କରିଅଛନ୍ତି, ତାହା ଅଦ୍ୟାପି ଅତୁଳନୀୟ । ସେ କହନ୍ତି ଯେ ଯେଉଁ ଶବ୍ଦ ଓ ଅର୍ଥ ପ୍ରତୀୟମାନ ଅର୍ଥକୁ ଅଭିବ୍ୟଞ୍ଜିତ କରନ୍ତି, ସେହି ଶବ୍ଦ ଓ ଅର୍ଥ ଧ୍ୱନି ପଦବାଚ୍ୟ । ଯେଉଁ ପ୍ରତୀୟମାନ ଅର୍ଥ ତାହା ମଧ୍ୟ ଧ୍ୱନି ପଦବାଚ୍ୟ ଏବଂ ଯେଉଁ କାବ୍ୟରେ ଏହି ପ୍ରତୀୟମାନ ଅର୍ଥ ପ୍ରତୀତ ହୁଏ, ତାହା ମଧ୍ୟ ଧ୍ୱନି ପଦବାଚ୍ୟ ଏବଂ ଶବ୍ଦର ଯେଉଁ ଶକ୍ତି ବା ସାମର୍ଥ୍ୟ ବଳରେ ସେହି ପ୍ରତୀୟମାନ ଅର୍ଥ ପ୍ରତୀତ ହୁଏ, ଶବ୍ଦର ସେହି ଶକ୍ତି ବା ସାମର୍ଥ୍ୟ ମଧ୍ୟ ଧ୍ୱନି ପଦବାଚ୍ୟ । ଏଣୁ ତାଙ୍କ ମତରେ (୧) ବ୍ୟଞ୍ଜକ ଶବ୍ଦ (୨) ବ୍ୟଞ୍ଜକ ଅର୍ଥ (୩) ବ୍ୟଙ୍ଗ୍ୟ ଅର୍ଥ (୪) ବ୍ୟଙ୍ଗ୍ୟାର୍ଥ ପ୍ରଧାନ ବିଶିଷ୍ଟ କାବ୍ୟ (୫) ବ୍ୟଙ୍ଗ୍ୟାର୍ଥ ପ୍ରତ୍ୟାୟନକାରୀ ଶବ୍ଦର ସାମର୍ଥ୍ୟ ବିଶେଷ (ଯାହାକୁ ସାହିତ୍ୟରେ ବ୍ୟଞ୍ଜନା କୁହାଯାଏ) ଏହି ପାଞ୍ଚଟି ବସ୍ତୁ ହିଁ ଧ୍ୱନି ।

ତେଣୁ କାବ୍ୟରେ ଧ୍ୱନିର ପ୍ରାଧାନ୍ୟ ଅନସ୍ୱୀକାର୍ଯ୍ୟ । ଏହା ଯେ କାବ୍ୟର ଆତ୍ମା ସ୍ୱରୂପ, ଏଥିରେ ସନ୍ଦେହ ନାହିଁ । ଯେତେ ସୁନ୍ଦର ଶରୀର ହେଲେ ମଧ୍ୟ ସେ ଯେପରି ଆତ୍ମାବିହୀନ ହୋଇ ନିଷ୍ଫଳ ଭାବେ ପଡ଼ିରହେ ପକ୍ଷାନ୍ତରେ ଆତ୍ମା ସେହି ଶରୀର ମଧ୍ୟରେ ଆଣିଦିଏ ଜୀବନର ସ୍ପନ୍ଦନ, ସେହିପରି ଧ୍ୱନି କାବ୍ୟକୁ ଦିଏ ଜୀବନର ସନ୍ଧାନ । ସୁତରାଂ କାବ୍ୟରେ ଧ୍ୱନିର ପ୍ରାଧାନ୍ୟ ଯେ କେତେ ବେଶି, ତାହା ପ୍ରତ୍ୟେକ ସହୃଦୟ କାବ୍ୟ ପାଠକ ଗଭୀର ଭାବରେ ଉପଲବ୍ଧି କରିପାରିବେ ।





# ରସ, ରୀତି ଓ ଗୁଣ

କାବ୍ୟ ଲକ୍ଷଣରେ ଆଚାର୍ଯ୍ୟମାନେ ବିଭିନ୍ନ ମତ ପୋଷଣ କରିଛନ୍ତି । କବିରାଜ ବିଶ୍ୱନାଥଙ୍କ ମତରେ "ବାକ୍ୟଂ ରସାତ୍ମକ କାବ୍ୟମ୍", ପଣ୍ଡିତରାଜ ଜଗନ୍ନାଥଙ୍କ ମତରେ "ରମଣୀୟାର୍ଥ ପ୍ରତିପାଦକଃ ଶବ୍ଦଃ କାବ୍ୟମ୍" । ବାମନ ପ୍ରଥମେ କାବ୍ୟର ଆତ୍ମା ନିରୂପଣ କରିବାକୁ ଯାଇ କହିଛନ୍ତି, "ରୀତିରାତ୍ମା କାବ୍ୟସ୍ୟ ।" ଆନନ୍ଦବର୍ଦ୍ଧନାଚାର୍ଯ୍ୟଙ୍କ ମତରେ "କାବ୍ୟସ୍ୟାତ୍ମା ଧ୍ୱନିଃ"—କୁନ୍ତକଙ୍କ ମତରେ "ବକ୍ରୋକ୍ତିଃ—କାବ୍ୟଜୀବିତମ୍" ଆଚାର୍ଯ୍ୟ ଦଣ୍ଡୀ "ଇଷ୍ଟାର୍ଥ ବ୍ୟବଚ୍ଛିନ୍ନା ପଦାବଳୀ କାବ୍ୟମ" କ୍ଷେମେନ୍ଦ୍ରଙ୍କ ମତରେ "ଔଚିତ୍ୟଂ ରସସିଦ୍ଧ ସ୍ଥିରଂ କାବ୍ୟସ୍ୟ ଜୀବିତମ୍" । ଆଚାର୍ଯ୍ୟ ମମ୍ମଟ ଭଟ୍ଟଙ୍କ ପୂର୍ବରୁ କାବ୍ୟର ଜୀବନ ସମ୍ବନ୍ଧରେ ଆଲୋଚକମାନେ ଶବ୍ଦ ଓ ଅର୍ଥ ଏହି ଉଭୟଙ୍କୁ ଗ୍ରହଣ କରିଥିଲେ ସୁଦ୍ଧା ମମ୍ମଟ ଦୃଢ଼ଯୁକ୍ତି ଓ ବିଚାରବୁଦ୍ଧି ବଳରେ ଏହାକୁ ପ୍ରତିଷ୍ଠା କରି ଯାଇଛନ୍ତି । ପ୍ରାକ୍ ମମ୍ମଟ ଆଚାର୍ଯ୍ୟମାନେ ଯେଉଁ ମତପୋଷଣ କରିଛନ୍ତି, ତାହା ଏଠାରେ ଆଲୋଚ୍ୟ ।

ଭାମହ "ଶବ୍ଦାର୍ଥୌ ସହିତୌ କାବ୍ୟମ୍"

ବାମନ—"କାବ୍ୟଶବ୍ଦୋଽୟଂ ଗୁଣାଲଂକାର ସଂସ୍କୃତୟୋଃ ଶବ୍ଦାର୍ଥୟୋର୍ବର୍ତ୍ତତେ ।"

ରୁଦ୍ରଟ—"ଶବ୍ଦାର୍ଥୌ କାବ୍ୟମ୍"

ହେମେନ୍ଦ୍ର—"ଅଦୋଷୌ ସଗୁଣୌ ସାଲଂକାରୌଚ ଶବ୍ଦାର୍ଥୌ କାବ୍ୟମ୍ ।"

ବାଗ୍‌ଭଟ—"ଶବ୍ଦାର୍ଥୌ ନିର୍ଦ୍ଦୋଷୌ ସଗୁଣୌ ପ୍ରାୟଃ ସାଲଂକାରୌ ଚ କାବ୍ୟମ୍" ।

ବିଦ୍ୟାନାଥ—"ଗୁଣାଳଂକାର ସହିତୌ ଶବ୍ଦାର୍ଥୌ ଦୋଷ ବର୍ଜିତୌ ।"
ବିଦ୍ୟାଧର—"ଶବ୍ଦାର୍ଥୌ ବପୁରସ୍ୟ ତତ୍ର ବିବୁଧୈରାତ୍ମାଭ୍ୟଧାୟି ଧ୍ୱନିଃ ।"
ଧ୍ୱନ୍ୟାଲୋକ ବୃତ୍ତି—"ଶବ୍ଦାର୍ଥ ଶରୀରଂ ତାବତ୍ କାବ୍ୟମ୍"

ରୁଦ୍ରଟ—"ଶବ୍ଦାର୍ଥୌ ସହିତୌ ବକ୍ର କବିବ୍ୟାପାରଶାଳିନି ବନ୍ଧେ ବ୍ୟବସ୍ଥିତୌ କାବ୍ୟମ୍ ।"

କାବ୍ୟର କାରଣ ଓ କାବ୍ୟର ଲକ୍ଷଣ ସମ୍ପର୍କରେ ମତର ବିଭିନ୍ନତା ଥିଲେ ମଧ୍ୟ ରସ ଯେ କାବ୍ୟର ଆତ୍ମା ଏ ସମ୍ବନ୍ଧରେ କାହାରି ବୈମତ୍ୟ ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ ।

ରସର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ପ୍ରାଚୀନ ଆଚାର୍ଯ୍ୟମାନେ ବିଭିନ୍ନ ମତ ବ୍ୟକ୍ତ କରିଥିଲେ ସୁଦ୍ଧା ତାହା ଯୁକ୍ତିଦ୍ୱାରା ପରିପୁଷ୍ଟ ହୋଇପାରି ନାହିଁ । ପ୍ରାମାଣିକ ଆଚାର୍ଯ୍ୟ ଅଭିନବ ଗୁପ୍ତ ଓ ତାଙ୍କର ପଦାଙ୍କ ଅନୁସରଣ କରିଥିବା ଆଚାର୍ଯ୍ୟ ମମ୍ମଟ ଓ ବିଶ୍ୱନାଥ ମହାପାତ୍ର ରସ ସମ୍ବନ୍ଧରେ ଯେଉଁ ମତ ବ୍ୟକ୍ତ କରିଛନ୍ତି, ଅଧିକାଂଶ ସାହିତ୍ୟିକ ବିଦ୍ୱାନମାନେ ସେହି ମତକୁ ହିଁ ଯଥାର୍ଥ ବୋଲି ଗ୍ରହଣ କରିନେଇଛନ୍ତି ।

ଆଚାର୍ଯ୍ୟ ମମ୍ମଟଙ୍କ ମତରେ ରସର ଲକ୍ଷଣ ହେଉଛି, "କାରଣାନ୍ୟଥ କାର୍ଯ୍ୟାଣି ସହକାରୀଣି ଯାନିଚ ଗୁଣାଦେଃ ସ୍ଥାୟିନୋ ଲୋକେ ତାନିଚେତ୍ ନାଟ୍ୟ କାବ୍ୟୟୋଃ" । ବିଭାବା ଅନୁଭାବାସ୍ତତ୍ କଥ୍ୟନ୍ତେ ବ୍ୟଭିଚାରିଣଃ ବ୍ୟକ୍ତଃ ସତୈର୍ବି-ଭାବର୍ଦ୍ୟୈଃ ସ୍ଥାୟୀ ଭାବୋରସସ୍ମୃତଃ ।" ଏହାର ବିଶଦାର୍ଥ ହେଉଛି ଯେ, ମାନବ ଜୀବନରେ ବିଭିନ୍ନ ପରିସ୍ଥିତିବଶତଃ ବିଭିନ୍ନ ଚିତ୍ତବୃତ୍ତିର ଉଦ୍ରେକ ହେଉଛି । ଏହି ଚିତ୍ତବୃତ୍ତିଗୁଡ଼ିକ ଆଶୁ ବିନାଶୀ ହେତୁ କ୍ଷଣିକ । ସେଥି ମଧ୍ୟରୁ ରତି (ଅନୁରାଗ), ହାସ, ଶୋକ, କ୍ରୋଧ, ଉତ୍ସାହ, ଭୟ, ଘୃଣା, ବିସ୍ମୟ ଓ ନିର୍ବେଦ—ଏହି ନଅଟି ଚିତ୍ତବୃତ୍ତି ମନୁଷ୍ୟ ଜୀବନରେ ଅନ୍ୟାନ୍ୟ ଚିତ୍ତବୃତ୍ତିମାନଙ୍କ ଅପେକ୍ଷା ସମୟ ବିଶେଷରେ ଓ ପରିସ୍ଥିତି ବିଶେଷରେ ଅଧିକବାର ଉଦ୍ରିକ୍ତ ହୋଇଥାନ୍ତି । ପ୍ରତ୍ୟେକ ବ୍ୟକ୍ତି ନିଜ ଜୀବନ ବ୍ୟତୀତ ଅନ୍ୟର ଜୀବନରେ ମଧ୍ୟ ଏହି ଭାବଗୁଡ଼ିକର ଆନୁଭବିକ ପ୍ରତ୍ୟକ୍ଷ କରିଥାଏ । ତେଣୁ ବାରମ୍ବାର ଏହି ଚିତ୍ତବୃତ୍ତିଗୁଡ଼ିକୁ ଅନୁଭବରେ ଆଣିବା ଫଳରେ ଏଗୁଡ଼ିକ ପ୍ରତ୍ୟେକ ସହୃଦୟ ମନରେ ସଂସ୍କାର ରୂପରେ ରହିଯାନ୍ତି । ଚିତ୍ତବୃତ୍ତିଗୁଡ଼ିକ ଆପାତତଃ ଆଶୁ ବିନାଶୀ ହେଲେ ପୂର୍ବୋକ୍ତ ଭାବରେ ସଂସ୍କାର ରୂପରେ ସର୍ବଦା ଅବସ୍ଥାନ କରୁଥିବାରୁ ଏମାନଙ୍କୁ ସ୍ଥାୟୀଭାବ ଆଖ୍ୟା ଦିଆଯାଇଛି । ଏଥିମଧ୍ୟରୁ ଶୃଙ୍ଗାର ରସର ସ୍ଥାୟୀଭାବ ରତି (ଅନୁରାଗ)କୁ ଦୃଷ୍ଟାନ୍ତରୂପେ ଗ୍ରହଣ କରାଯାଇପାରେ । ସେହି ଦୃଷ୍ଟାନ୍ତରେ ଅନ୍ୟାନ୍ୟରସମାନଙ୍କର ସ୍ଥାୟୀଭାବର କଥା ମଧ୍ୟ ଆଲୋଚ୍ୟ । କୌଣସି ନାୟିକାକୁ ଦେଖି ନାୟକ ମନରେ ଯଦି ରତି ଭାବର ଉଦ୍ରେକ ହେଲା, ତେବେ ସେହି ନାୟିକା ତାହାର ରତିଭାବର ଆଲମ୍ବନ କାରଣ ବୋଲି କୁହାଯାଏ । ଏବଂ ନାୟକର ହୃଦୟରେ ଉତ୍ପନ୍ନ ହୋଇଥିବା ରତି ଭାବକୁ ଉଦ୍ଦୀପ୍ତ କରିବା ପାଇଁ ଚନ୍ଦ୍ର, ଚନ୍ଦନ, ଭ୍ରମର,

ଝଙ୍କାର ଓ ମଳୟ ମରୁତ ପ୍ରଭୃତି ପ୍ରଯୋଜକ ବୋଲି ଏମାନଙ୍କୁ ଉଦ୍ଦୀପନ କାରଣ ବୋଲି କୁହାଯାଇଥାଏ । ନାୟକର ହୃଦୟରେ ରତିଭାବ ଆସିଲେ, ତାର କାର୍ଯ୍ୟ ସ୍ୱରୂପ କଟାକ୍ଷ, ହସ୍ତ ସଙ୍କେତ, ଭ୍ରୂବିକ୍ଷେପାଦି ପ୍ରକାଶ ପାଏ । ଏଗୁଡ଼ିକ ଉଦ୍‌ବୁଦ୍ଧ ସ୍ଥାୟୀ ଭାବର କାର୍ଯ୍ୟ । ଏତଦ୍‌ବ୍ୟତୀତ ନାୟକ ବା ନାୟିକା ହୃଦୟରେ ରତିଭାବ ସୃଷ୍ଟି ହେଲେ ପରସ୍ପର ମିଳନର ଯେଉଁ ଆଶା ଜାଗ୍ରତ ହୁଏ ଏବଂ ତଜ୍ଜନ୍ୟ ସାମୟିକ ଚିନ୍ତା, ଗ୍ଲାନି, ଜଡ଼ତା, ବ୍ୟାଧି ପ୍ରଭୃତି ବିଭିନ୍ନ ଆନୁସଙ୍ଗିକ ଭାବର ଯେତେବେଳେ ଉନ୍ମେଷ ହୁଏ, ସେତେବେଳେ ସେଗୁଡ଼ିକୁ ସହକାରୀ ଆଖ୍ୟା ଦିଆଯାଏ । ଏହିଗୁଡ଼ିକ ଯଦି କାବ୍ୟ ବା ନାଟକରେ କବିର ବର୍ଣ୍ଣନାରେ ବା ନଟର ଅଭିନୟରେ ପ୍ରକାଶିତ ହୁଅନ୍ତି, ତେବେ ସେହି କାରଣ, କାର୍ଯ୍ୟ ଓ ସହକାରୀମାନଙ୍କୁ ବିଭାବ, ଅନୁଭାବ ଓ ସଞ୍ଚାରୀଭାବ ଆଖ୍ୟା ଦିଆଯାଏ । ଏହି ବିଭାବ, ଅନୁଭାବ ଓ ବ୍ୟଭିଚାରୀ-ଭାବମାନଙ୍କର ପ୍ରତ୍ୟକ୍ଷ କରିବା ପରେ କାବ୍ୟ ପାଠକ ବା ନାଟ୍ୟ ଦର୍ଶକ ସହୃଦୟ ବା ସାମାଜିକ ହୃଦୟରେ ସଂସ୍କାର ରୂପରେ ବିଦ୍ୟମାନ ଥିବା ରତିଭାବ ଉଦ୍‌ବୁଦ୍ଧ ହୁଏ । ଯେପରି ଅମ୍ଳ ସମ୍ପର୍କରୁ ଦୁଗ୍ଧ ଦଧି ରୂପରେ ପରିଣତ ହୁଏ, ସେହିପରି ଏହି ଉଦ୍‌ବୁଦ୍ଧ ହେବା ରତିଭାବ, ବିଭାବ, ଅନୁଭାବ ଓ ବ୍ୟଭିଚାରୀ ଭାବମାନଙ୍କର ସମ୍ପର୍କରୁ ରସ ରୂପରେ ପରିଣତ ହୋଇଥାନ୍ତି । ତେଣୁ ରସ ସମ୍ବନ୍ଧରେ ଏହି ନିଷ୍କର୍ଷ ସ୍ଥୂଳତଃ ଏହି ରୂପରେ ଗ୍ରହଣ କରାଯାଇପାରେ ଯେ, ବିଭାବ, ଅନୁଭାବ, ଓ ବ୍ୟଭିଚାରୀ ଭାବମାନଙ୍କଦ୍ୱାରା ଅଭିବ୍ୟକ୍ତ ଓ ସେହିମାନଙ୍କ ସହିତ ଅଭିବ୍ୟକ୍ତ ଇତ୍ୟାଦି ରୂପ ସ୍ଥାୟୀଭାବ "ଅନେକ-କାନନ୍ଦମୟ ଜ୍ଞାନ ବିଶେଷରୂପେ ସହୃଦୟ ହୃଦୟରେ ଅବର୍ଭାବ ହୁଏ ଏବଂ ଆବିର୍ଭୂତ ବିଭାବାଦି ସମୂହାଲମ୍ବନାତ୍ମକ ଅଲୌକିକ ଆନନ୍ଦ-ଚମତ୍କାରମୟ ଜ୍ଞାନ ବିଶେଷର ନାମ ହିଁ ରସ । ସାହିତ୍ୟଦର୍ପଣରେ ବିଶ୍ୱନାଥ କବିରାଜ ରସର ସ୍ୱରୂପକଥନ ଗର୍ଭକ ଅସ୍ୱାଦନ ପ୍ରକାର ବର୍ଣ୍ଣନା କରିଛନ୍ତି—

> ସତ୍ତ୍ୱୋଦ୍ରେକାଦଖଣ୍ଡସ୍ୱ ପ୍ରକାଶାନନ୍ଦ ଚିନ୍ମୟଃ ।
> ବେଦ୍ୟାନ୍ତର ସ୍ପର୍ଶଶୂନ୍ୟୋ ବ୍ରହ୍ମ ସ୍ୱାଦ ସହୋଦରଃ ॥
> ଲୋକୋତ୍ତର ଚମତ୍କାର ପ୍ରାଣଃ କୈଶ୍ଚିତ୍ ପ୍ରମାତୃଭିଃ ।
> ସ୍ୱାକାର ବଦଭିନ୍ନତ୍ୱେନାୟ ମାସ୍ୱାଦ୍ୟ ତେ ରସଃ ॥

ଗୀତ:—ପ୍ରାଚୀନ ଆଚାର୍ଯ୍ୟମାନେ କାବ୍ୟ ସମ୍ବନ୍ଧରେ ନିର୍ବିବାଦରେ ଏହି ମତ ବ୍ୟକ୍ତ କରିଯାଇଥିଛନ୍ତି ଯେ, "କାବ୍ୟସ୍ୟ ଶବ୍ଦାର୍ଥୌ ଶରୀରମ୍ ରସାଦିଶ୍ଚ ଆତ୍ମା ଦୋଷାଃ କାଣତ୍ୱ ଖଞ୍ଜତ୍ୱାଦିବତ ଗୁଣାଃ ଶୌର୍ଯ୍ୟାଦିବତ୍ ଆଳଂକାରାଃ କଟକ କୁଣ୍ଡଳାଦିବତ୍ ରୀତୟଃ ଅବୟବ ସଂସ୍ଥାନ ବିଶେଷବତ୍ ।" ତେଣୁ ସାହିତ୍ୟଦର୍ପଣକାର ବିଶ୍ୱନାଥ ମହାପାତ୍ର

ସ୍ୱପ୍ରଣୀତ "ସାହିତ୍ୟ ଦର୍ପଣ" ଗ୍ରନ୍ଥରେ ରୀତିର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ କହିଛନ୍ତି "ପଦସଂଘଟନା ରୀତିଃ ଅଙ୍ଗସଂସ୍ଥା ବିଶେଷବତ୍ ଉପକର୍ତ୍ତ୍ରୀ ରସାଦୀନାଂ" ଅର୍ଥାତ୍ ମନୁଷ୍ୟ ଶରୀରରେ ହସ୍ତପଦାଦି ଅବୟବର ଯଦି ଯଥାରୀତି ସନ୍ନିବେଶ ନ ହୋଇ ବିକୃତଭାବରେ ହୁଏ, ତେବେ ମନୁଷ୍ୟର ଶରୀର ସ୍ୱାଭାବିକ ନ ହୋଇ ବିକୃତ ହୋଇଯିବ । ସେହିପରି କାବ୍ୟ ପୁରୁଷର ଶବ୍ଦରୂପ ଶରୀରର ଯଦି ଯଥାରୀତି ସନ୍ନିବେଶ କରା ନ ଯାଏ, ତେବେ ସେହି କାବ୍ୟ ଏକ କିମ୍ଭୂତକିମାକାର ବିକୃତ ବସ୍ତୁ ରୂପେ ପରିଣତ ହେବ । କାବ୍ୟରେ ଯେଉଁ ନଅଟି ରସକୁ 'ଆତ୍ମଭୂତ' ବୋଲି ସ୍ୱୀକାର କରାଯାଇଛି, ସେହି ନଅଟି ରସର ଆନୁକୂଲ୍ୟ ଅନୁସାରେ ବିଭିନ୍ନ ସ୍ଥଳରେ କବିକୁ ବିଭିନ୍ନ ରୀତିର ଅନୁସରଣ କରିବାକୁ ପଡ଼େ । ଯଦି ସେହି ରସର ଆନୁକୂଲ୍ୟକୁ ଅପେକ୍ଷା ନ କରି କବି ଯଥେଚ୍ଛା ପଦବିନ୍ୟାସ କରିଯାଏ, ତେବେ ତାଦୃଶ ପଦବିନ୍ୟାସ ରସର ଉତ୍କର୍ଷକ ନ ହୋଇ ବରଂ ଅପକର୍ଷକ ହୁଏ । ଏଥିପାଇଁ ସଂସ୍କୃତ ଅଳଙ୍କାର ସାହିତ୍ୟରେ ବୈଦର୍ଭୀ, ଗୌଡ଼ୀ, ପାଞ୍ଚାଳୀ ଓ ଲାଟୀ ନାମକ ଚାରୋଟି ରୀତିକୁ ସ୍ୱୀକାର କରାଯାଇଛି । 'ଲାଟୀ' ରୀତିରେ ବିଶେଷ କିଛି ପାର୍ଥକ୍ୟ ବା ବୈଶିଷ୍ଟ୍ୟ ନ ଥିବାରୁ ତାହା ପାଞ୍ଚାଳୀର ଅନ୍ତର୍ଗତ ବୋଲି ବହୁ ଆଚାର୍ଯ୍ୟ ମତ ପୋଷଣ କରିଛନ୍ତି । ତେଣୁ ବୈଦର୍ଭୀ, ପାଞ୍ଚାଳୀ ଓ ଗୌଡ଼ୀ—ଏହି ତିନୋଟି ରୀତି ହିଁ ସର୍ବସମ୍ମତ । ପ୍ରାଚୀନମାନେ ଏହି ରୀତିମାନଙ୍କର ବିଭିନ୍ନ ସଂଜ୍ଞା ସ୍ୱ ସ୍ୱ ମତରେ ନିର୍ଦ୍ଦିଷ୍ଟ କରିଯାଇଅଛନ୍ତି । ବୈଦର୍ଭୀ ରୀତିକୁ ପ୍ରାଚୀନମାନେ "ଉପନାଗରିକ ବୃତ୍ତି" ଏବଂ ଗୌଡ଼ୀ ରୀତିକୁ ପୁରୁଷାବୃତ୍ତି ଓ ପାଞ୍ଚାଳୀକୁ କୋମଳାବୃତ୍ତି ବୋଲି କହିଛନ୍ତି । ମାଧୁର୍ଯ୍ୟବ୍ୟଞ୍ଜକ ବର୍ଣ୍ଣମାନଙ୍କୁ ବୈଦର୍ଭୀ ରୀତିରେ ବ୍ୟବହାର କରାଯାଏ । ଯେଉଁ ରସ ଅର୍ଥାତ୍ "ଶୃଙ୍ଗାର, କରୁଣ, ଶାନ୍ତ" ଇତ୍ୟାଦି ମାଧୁର୍ଯ୍ୟଗୁଣ ବିଶିଷ୍ଟ ସେହି ରସମାନଙ୍କରେ ବୈଦର୍ଭୀ ରୀତିର ପ୍ରଚଳନ ପ୍ରତି କବିମାନଙ୍କର ସତର୍କ ରହିବା ଉଚିତ । ଓଜୋଗୁଣ ବ୍ୟଞ୍ଜକ ବର୍ଣ୍ଣମାନଙ୍କୁ ଗୌଡ଼ୀ ରୀତିରେ ବ୍ୟବହାର କରାଯାଏ । ବୀର, ବୀଭତ୍ସ, ରୌଦ୍ର ଓ ଅଦ୍ଭୁତ ପ୍ରଭୃତି ରସମାନଙ୍କରେ ଓଜୋଗୁଣ ସ୍ୱୀକାର କରାଯାଇଛି, ସେହି ରସମାନଙ୍କରେ କବି ବିଶେଷ କରି ଗୌଡ଼ୀ ରୀତିର ଅବଲମ୍ବନ କରିଥାନ୍ତି । ଏହା ବ୍ୟତୀତ କବିଙ୍କ ଓଜଃ ଓ ମାଧୁର୍ଯ୍ୟ ଗୁଣବ୍ୟଞ୍ଜକ ବର୍ଣ୍ଣମାନଙ୍କୁ ପାଞ୍ଚାଳୀ ରୀତିରେ ବ୍ୟବହାର କରିବାକୁ ପଡ଼ିଥାଏ । ତେଣୁ କବି ଔଚିତ୍ୟର ଅନୁସରଣ କରି ସର୍ବରସରେ ପାଞ୍ଚାଳୀ ରୀତିର ବ୍ୟବହାର କରିପାରିବେ । ଏହି ରୀତିମାନଙ୍କରେ ମତ ଭେଦରେ ରଚନା, ସଂଘଟନା ରୀତି, ଓ ମାର୍ଗ ସଂଜ୍ଞା ବିଭିନ୍ନ ଆଚାର୍ଯ୍ୟମାନେ ବ୍ୟବହାର କରିଯାଇ ଅଛନ୍ତି । ଏଣୁ ରୀତିର ଯଥାଯଥ ଅନୁସରଣ କାବ୍ୟ ସକାଶେ କେତେ ଏବଂ କିପରି ଉପଯୋଗୀ, ତାହା ସମୀକ୍ଷକମାନେ ସହଜରେ ହୃଦୟଙ୍ଗମ କରିପାରିବେ ।

ପଣ୍ଡିତ କୁଳମଣି ଦାସ ତାଙ୍କ ପ୍ରଣୀତ "ଅଳଙ୍କାର ତରଙ୍ଗିଣୀ"ରେ ଉପରୋକ୍ତ ରୀତିର ଓଡ଼ିଆ ନାମାମାନ୍ତର କରିଅଛନ୍ତି । ଯଥା ସାଳଙ୍କାର, ସାଡ଼ମ୍ବର ଓ ସୁଚୀବୋଧ ରୀତି । ସାଳଙ୍କାର ରୀତିରେ ଓ ପାଞ୍ଚାଳୀ ରୀତିର ସାଡ଼ମ୍ବରରେ ଗୌଡ଼ୀ ରୀତିର ଏବଂ ସୁଖବୋଧ ରୀତିରେ ବୈଦର୍ଭୀ ରୀତିରସାଧର୍ମ୍ୟ ରହିଅଛି । ସାଡ଼ମ୍ବର ରୀତିରେ ସମାସର ଆଧିକ୍ୟ ଠ, ଡ, ଢ, ଥ, ଧ, ଫ, ଭ, ପ୍ରଭୃତି ମହାପ୍ରାଣ ବର୍ଣ୍ଣଗୁଡ଼ିକର ବହୁଳ ବ୍ୟବହାର ଏବଂ ବର୍ଣ୍ଣନାର ଆଡ଼ମ୍ବର ପରିଦୃଷ୍ଟ ହୁଏ । ଏହି ରୀତିରେ ବୀର ରୌଦ୍ର ଏବଂ ବୀଭତ୍ସ ରସର ଶକ୍ତ ଅଭିବ୍ୟଞ୍ଜନା ହୋଇଥାଏ । ଯଥା –

ସଂଗ୍ରାମ ସଙ୍କେତ ଶଂସୀ ନାଦିଲ ଭୈରବେ
ଏକାଳେ ସଂଗ୍ରାମଶିଂଘା ଢକ୍କା,ତୁରୀ ଭେରୀ ।
ଜଗଝମ୍ପା ଝଂଝର୍ଝ୍ର ଦାମାମା ଦୁନ୍ଦୁଭି,
ପ୍ରତିଧ୍ୱନି ଉପୁଜାଇ କକୁଭକୁହରେ ।

×          ×          ×

ଭବନ,ପାତେଶ୍ୱ, ପୀଡ଼ା ଖରତର ସ୍ରୋତେ
ଜ୍ୱଳନ୍ତ ଯମୁନାପାଣି ସୁରଧନୀ ମୁଖେ
ପ୍ରଜାପତି ଯଜ୍ଞଧ୍ୱଂସେ ବୀରଭଦ୍ର ରୂପୀ
ବଶ୍ୱନାଶୀ ରୌଦ୍ର ଜ୍ୱର ପ୍ରଶ୍ୱାସ ପରସ୍ୱେ ।
( ମହାଯାତ୍ରା )

ସାଳଙ୍କାର ରୀତିରେ ଅଳଙ୍କାରଗୁଡ଼ିକର ମଞ୍ଜୁଳ ପ୍ରୟୋଗ, ଅନୁନାସିକ ଯୁକ୍ତାକ୍ଷର ଗୁଡ଼ିକର ସନ୍ନିବେଶ ଓ ବର୍ଣ୍ଣନାର ମାଧୁର୍ଯ୍ୟ ପରିଦୃଷ୍ଟ ହୁଏ ।

ଯଥା—

ଅର୍ଦ୍ଧେନ୍ଦୁ ଲଲାଟ ସିନ୍ଦୁର ବିନ୍ଦୁ ରମଇ ଆଖି,
ନୁହଇ ସିନ୍ଦୁର. ରହିଛି ସ୍ମର ହୃଦସ୍ଥ ଲଖି ।
ଦଂଶନ-ଅଂଶୁକ ମିଶଇ ନଶାମଣି-ଅଂଶୁକେ,
ମୃଗମଦ ବିନ୍ଦୁ ସୁନ୍ଦର ଶୋଭେ ସ୍ମରୁ ଚିବୁକେ ।
( ଚନ୍ଦ୍ରଭାଗା )

ସୁଚୀବୋଧ ରୀତିରେ ସହଜ ଅନାୟାସରେ ଅର୍ଥାବବୋଧ ହୋଇଥାଏ । ଏହା ଅଯଥା ଅଳଙ୍କାରଦ୍ୱାରା ଭାରାକ୍ରାନ୍ତ ନୁହେଁ । ଏଥିରେ ବର୍ଣ୍ଣନା ପ୍ରଭୃତିର ଆଡ଼ମ୍ବର ନ ଥାଏ । ଏହା ମଧ୍ୟ ସବୁ ରସର ଉଦ୍‌ବୋଧକ ହୋଇପାରେ ।

ଗୃଧା ଧର ମର୍ଷି କର ।
ବୋଲନ୍ତ ଆନଙ୍ଗ ଅଭ୍ର ନ କର ଗୋ ।
ଲଜ ଭଯ୍ ସ୍ଥୁଡ଼ଲ ନକର । ସଜନୀ ଗୋ ( ୧ )

ଘନଶ୍ୟାମ ଗୁଣମାନ ।
ରଖିଅଛୁ କ ମୋ ଧୈର୍ଯ୍ୟ ଗୁମାନ ଗୋ ।
ମନ ଦହୁଛୁ ତା ସନମାନ ସଜନୀ ଗୋ । ( ୨ )
(ବ୍ରଦଗୁଧ ଚନ୍ଦ୍ରାମଣି )

ଗୁଣ —

ପ୍ରାଚୀନ ଆଗୃର୍ଯ୍ୟ ଭୋଜରାଜ କାବ୍ୟରେ ଚବଶଟି ( ୨୪ଟି ) ଗୁଣ ସ୍ୱୀକାର କରଯାଇଅଛନ୍ତ । ତାଙ୍କ ପରବର୍ତ୍ତୀ ଆଗୃର୍ଯ୍ୟ ବାମନ ୧୦ଟି ଗୁଣ କାବ୍ୟରେ ସ୍ୱୀକାର କରଛନ୍ତ । ବସ୍ତୁତଃ ସେ ନାମମାତ୍ର ଦଶଗୋଟି ଗୁଣ ସ୍ୱୀକାର କଲେ ମଧ୍ୟ କାର୍ଯ୍ୟତଃ କୋଡ଼ିଏ ଗୋଟି ଗୁଣ ସ୍ୱୀକାର କରଛନ୍ତ । ଅର୍ଥାତ୍ ଯେଉଁ ଦଶଗୋଟି ଗୁଣ ସେ ସ୍ୱୀକାର କଲେ, ତାହା ଶବ୍ଦଗତ ଏବଂ ଅର୍ଥଗତ । ଏହପର ଦୁଇ ପ୍ରକାର ଗୁଣ ସ୍ୱୀକାର କରବା ଫଳରେ ଦଶୋଟି ଗୁଣରେ ସଙ୍ଖ୍ୟା କଲେ ମଧ୍ୟ ଅର୍ଥପାଇଁ ଦଶସଙ୍ଖ୍ୟାର ଭିନ୍ନ ଲକ୍ଷଣ ଓ ଶବ୍ଦଗତ ଗୁଣମାନଙ୍କର ଦଶସଙ୍ଖ୍ୟାର ଭିନ୍ନ ଲକ୍ଷଣ ଗ୍ରହଣ କରଥିବାରୁ ସେ କାର୍ଯ୍ୟତଃ କୋଡ଼ିଏ ଗୋଟି ଗୁଣ ସ୍ୱୀକାର କଲେ । ଭାମହାଗୃର୍ଯ୍ୟ ଏହ ଗୁଣମାନଙ୍କୁ ତନସଙ୍ଖ୍ୟା ମଧ୍ୟରେ ସୀମାବଦ୍ଧ କରରଖିଲେ । ଗୋଟିଏ ପ୍ରାଚୀନ ଶ୍ଳୋକରୁ ଏହା ସ୍ପଷ୍ଟ ପ୍ରମାଣିତ ହୁଏ ।

"ରାଜା ଭୋଜୋ ଗୁଣାନାହ ବିଂଶତଚତୁରଶ୍ଚ ଯାନ
ବାମନୋ ଦଶତାନ ବାଗ୍ମୀ ଭଞ୍ଚ ସ୍ୱିନେବ ଭାମହଃ ।"

ସେ ଯାହା ହେଉନା କାହିଁକ ଏମାନେ ସମସ୍ତେ ଗୁଣଗୁଡ଼ିକୁ ଶବ୍ଦ ଓ ଅର୍ଥର ଧର୍ମ ବୋଲ ସ୍ୱୀକାର କରଛନ୍ତ । କନ୍ତୁ ଧ୍ୱନ୍ୟାଲୋକ ପ୍ରଣେତା ଆନନ୍ଦ ବର୍ଦ୍ଧନାଗୃର୍ଯ୍ୟଙ୍କ ଗ୍ରନ୍ଥରୁ ଗୁଣଗୁଡ଼ିକ ରସର ଧର୍ମ ବୋଲ ଆଭାସ ମିଳେ । ତପୃରେ ମମ୍ମଟ ଆଗୃର୍ଯ୍ୟଙ୍କ ସର୍ବଜନସମ୍ମାନିତ "କାବ୍ୟପ୍ରକାଶ" ଗ୍ରନ୍ଥରେ ଗୁଣଗୁଡ଼ିକ ଯେ ନିଶ୍ଚିନ୍ତରୂପେ ରସର ଧର୍ମ, କଦାପି ସେମାନେ ଶବ୍ଦାର୍ଥର ଧର୍ମ ନୁହନ୍ତ, ଏହା ପ୍ରତପାଦତ ହୋଇଛୁ ।

ସେ ମହାଶୟ ସୁଦୃଢ଼ ଯୁକ୍ତିବଳରେ ବାମନ ପ୍ରଭୃତ ପ୍ରାଚୀନ ଆଗୃର୍ଯ୍ୟଙ୍କର ସିଦ୍ଧାନ୍ତକୁ ଖଣ୍ଡନ କର ଏହା ଦର୍ଶାଇଛନ୍ତ ଯେ, ମାଧୁର୍ଯ୍ୟ, ଓଜଃ ପ୍ରସାଦ ଏହ ତନୋଟି ମାତ୍ର ଗୁଣ କାବ୍ୟରେ ରହିଛୁ ଏବଂ ଏହା ରସର ଧର୍ମ ସିନା; ମାତ୍ର ଶବ୍ଦାର୍ଥର ଧର୍ମ ନୁହନ୍ତ ।

"ଇଦାନୀଂ ଗୁଣାନାଂ ଭେଦମାହ

ସୂ ୮୯—ମାଧୁର୍ଯ୍ୟୌଜଃ ପ୍ରାସାଦଖ୍ୟାସ୍ତ୍ରୟସ୍ତେ ନ ପୁନର୍ଦଶ ପ୍ରାଚୀନ । ଆଚାର୍ଯ୍ୟ-ମାନଙ୍କର ବହୁ ଗୁଣକୁ ଆଚାର୍ଯ୍ୟ ମମ୍ମଟ ନିଜ ସ୍ୱୀକୃତ ତିନୋଟି ଗୁଣ ମଧ୍ୟରେ ଅନ୍ତର୍ଭୁକ୍ତ କରିଛନ୍ତି ଏବଂ କେତେକ ପ୍ରାଚୀନସମ୍ମତ ଗୁଣଗୁଡ଼ିକୁ ଗୁଣ ବୋଲି ନ କହି "ଦୋଷାଭାବ" ବୋଲି ଗ୍ରହଣ କରିଛନ୍ତି । ଆହୁରି ମଧ୍ୟ ସେ ପ୍ରାଚୀନମାନଙ୍କର ଅଙ୍ଗୀକୃତ ଗୁଣମାନଙ୍କୁ ସ୍ଥଳେ ସ୍ଥଳେ ଦୋଷ ବୋଲି ପ୍ରତିପାଦନ କରିଛନ୍ତି । ସେ କହନ୍ତି—

"କେଚଦନ୍ତର୍ଭବନ୍ତ୍ୟେଷୁ ଦୋଷତ୍ୟାଗାତ୍ପରେଶ୍ରିତାଃ
ଅନ୍ୟେ ଭଜନ୍ତି ଦୋଷତ୍ୱଂ କୁତ୍ରଚିନ୍ନ ତତୋଦଶ ।"

ଶୃଙ୍ଗାର, କରୁଣ ଓ ଶାନ୍ତ ଓଜଃ ସହିତ ମିଶ୍ରିତ ହୋଇ କିଞ୍ଚିତ୍ ଅଧିକ ମାତ୍ରାରେ ହାସ୍ୟ ରସରେ ମାଧୁର୍ଯ୍ୟଗୁଣ ଅବସ୍ଥାନ କରିଥାଏ ।

"ଆହ୍ଲାଦକତ୍ୱଂ ମାଧୁର୍ଯ୍ୟଶୃଙ୍ଗାରେ ଦ୍ରୁତିକାରଣମ୍ ।"

ବୀର, ବୀଭତ୍ସ, ରୌଦ୍ର ଓ ଅଦ୍ଭୁତରେ ଓଜଃ ଗୁଣର ପ୍ରଭାବ ପରିଲକ୍ଷିତ ହୁଏ ।

ଦୀପ୍ତ୍ୟାତ୍ମ ବିସ୍ତୃତେର୍ହେତୁରୋଜୋ ବୀରରସ ସ୍ଥିତି
ତସ୍ୟ ବୃଦ୍ଧିର ରୂପ ଦୀପ୍ତତ୍ୱ ଜନକତ୍ୱୌଜଃ ।

କିନ୍ତୁ ପ୍ରସାଦ ଗୁଣ ସମସ୍ତ ରସପାଇଁ ଓ ସମସ୍ତ ରଚନାପାଇଁ ଅନୁକୂଳ ବୋଲି ଆଚାର୍ଯ୍ୟମାନେ ମତବ୍ୟକ୍ତ କରିଅଛନ୍ତି । ଏହି ଗୁଣମାନଙ୍କର ବିଭିନ୍ନ ଲକ୍ଷଣ ମଧ୍ୟ "ଧ୍ୱନ୍ୟାଲୋକ, କାବ୍ୟପ୍ରକାଶ, ଓ ସାହିତ୍ୟ ଦର୍ପଣ"ରେ ନିର୍ଦ୍ଦିଷ୍ଟ ହୋଇଅଛି । ଧ୍ୱନିକାର ଓ ପ୍ରକାଶକାରଙ୍କ ମତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । କିନ୍ତୁ ଦର୍ପଣକାରଙ୍କ ମତରେ ଏହି ଗୁଣମାନଙ୍କର ଲକ୍ଷଣରେ କିଞ୍ଚିତ୍ କିଞ୍ଚିତ୍ ଭେଦ ପରିଲକ୍ଷିତ ହୁଏ ଏବଂ ନିରପେକ୍ଷ ସମୀକ୍ଷକଙ୍କର ଦୃଷ୍ଟିରେ ଦର୍ପଣକାରଙ୍କ ମତ ଅପେକ୍ଷା ପ୍ରକାଶକାରଙ୍କ ମତ ଅଧିକ ଯୁକ୍ତିଯୁକ୍ତ ଓ ବଳିଷ୍ଠ ବୋଲି ପ୍ରତୀତ ହୁଏ । ଏହି ଗୁଣମାନଙ୍କର ଅଭିବ୍ୟଞ୍ଜକ ରୂପେ ବିଭିନ୍ନ ବର୍ଣ୍ଣ, ବିଭିନ୍ନ ପ୍ରକାର ସମାସ ଓ ରଚନା ଅନୁକୂଳ ବୋଲି ନିର୍ଦ୍ଦେଶିତ ହୋଇଅଛି । ଯଦି କୌଣସି କବି ପ୍ରମାଦବଶତଃ ମାଧୁର୍ଯ୍ୟ ଗୁଣ ବିଶିଷ୍ଟ ରସ ସ୍ଥଳରେ ଓଜଃ ଗୁଣ ବ୍ୟଞ୍ଜକ ବର୍ଣ୍ଣ ଓ ଓଜଃ ଗୁଣ ବିଶିଷ୍ଟ ରସରେ ମାଧୁର୍ଯ୍ୟବ୍ୟଞ୍ଜକ ବର୍ଣ୍ଣନା କୋମଳ ପଦାବଳୀ ସନ୍ନିବିଷ୍ଟ କରନ୍ତି, ତେବେ ସେ ସ୍ଥାନରେ "ପ୍ରତିକୂଳବର୍ଣ୍ଣତ୍ୱ" ନାମକ ଦୋଷ ଦେଖାଯିବ ବୋଲି ଆଚାର୍ଯ୍ୟମାନେ ସ୍ୱୀକାର କରିଛନ୍ତି । ଉକ୍ତ ଦୋଷ ସତ୍ତ୍ୱେ ଓ ସେ ସ୍ଥଳରେ ସେହି ରସପାଇଁ ନିର୍ଦ୍ଦିଷ୍ଟ ଗୁଣ ହିଁ ସ୍ୱୀକାର କରାଯିବ ସିନା, କିନ୍ତୁ ମାଧୁର୍ଯ୍ୟବ୍ୟଞ୍ଜକ ବର୍ଣ୍ଣଯୋଗୁଁ ମାଧୁର୍ଯ୍ୟ ଗୁଣ ସ୍ୱୀକାର କରାଯାଇ ନ ପାରେ । ସେହିପରି ଓଜଃ ଗୁଣ ବ୍ୟଞ୍ଜକ ବର୍ଣ୍ଣମାନଙ୍କ ଯୋଗୁ ଓଜଃ ଗୁଣ ସ୍ୱୀକାର କରାଯାଇ ନ ପାରେ । ସେଇଥିପାଇଁ ଆଚାର୍ଯ୍ୟମାନେ ଗୁଣ-

ମାନଙ୍କର ଯଥାଯଥ ବ୍ୟଞ୍ଜକ ବର୍ଣ୍ଣମାନଙ୍କୁ ନିର୍ଦ୍ଦିଷ୍ଟ କରି ଯାଇଅଛନ୍ତି । ମାଧୁର୍ଯ୍ୟଗୁଣରେ ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ମମ୍ମଟ ଭଟ୍ଟ କହିଛନ୍ତି, ଆହ୍ଲାଦକତ୍ୱଂ ମାଧୁର୍ଯ୍ୟଂ ଶୃଙ୍ଗାରେ ଦ୍ରୁତିକାରଣମ୍ ।

ଅର୍ଥାତ୍ ଚିତ୍ତଦ୍ରବୀଭାବର କାରଣ ରସର ଆହ୍ଲାଦ ସ୍ୱରୂପତ୍ୱକୁ ମାଧୁର୍ଯ୍ୟ କୁହାଯାଏ । ଏହା ସମ୍ଭୋଗ ଶୃଙ୍ଗାରରେ ତଦପେକ୍ଷା କରୁଣରେ ଓ ତଦପେକ୍ଷା ବିପ୍ରଲମ୍ଭ ଶୃଙ୍ଗାରରେ ଓ ତଦପେକ୍ଷା ଶାନ୍ତରସରେ ଅଧିକମାତ୍ରାରେ ଅବସ୍ଥାନ କରିଥାଏ । ଓଜଃ ଗୁଣର ଲକ୍ଷଣ ନିର୍ଦ୍ଦେଶ କରିବାକୁ ଯାଇ ପ୍ରକାଶକାର ପୁଣି ଲେଖିଛନ୍ତି "ଚିତ୍ତସ୍ୟ ବିସ୍ତାରରୂପ ଦୀପ୍ତତ୍ୱ ଜନକମୋଜଃ"ଅର୍ଥାତ୍ ଚିତ୍ତର ପ୍ରଜ୍ୱଳିତତ୍ୱ ପ୍ରାପ୍ତ ଅବସ୍ଥାର ହେତୁଭୂତ ରସର ଧର୍ମକୁ ଓଜଃ ଗୁଣ ବୋଲି କୁହାଯାଏ । ପୁନଶ୍ଚ ସେ ଲେଖିଛନ୍ତି "ଦୀପ୍ତାତ୍ମ ବିସ୍ତୃତେ ହେତୁ ର୍ବୋଜୋ ବୀର ରସ ସ୍ଥିତି"—ଏହା ବୀର ରସରେ ତଦପେକ୍ଷା ଅଧିକ ମାତ୍ରାରେ ବୀଭତ୍ସ ରସରେ ଓ ତଦପେକ୍ଷା ଅଧିକ ମାତ୍ରାରେ ରୌଦ୍ର ରସରେ ଅନୁଭୂତ ହୁଏ ।

ପ୍ରସାଦ ଗୁଣର ଲକ୍ଷଣ ସେ ଏହିପରି ନିର୍ଦ୍ଦେଶ କରିଛନ୍ତି ।
ଶୁଷ୍କେନ୍ଧନାଗ୍ନି ବତ୍ ସ୍ୱଚ୍ଛଜଳବତ୍ ସହସୈବଯଃ
ବ୍ୟାପ୍ନୋତ୍ୟନ୍ୟତ୍ ପ୍ରସାଦୋଽସୌସର୍ବତ୍ର ବିହିତ ସ୍ଥିତିଃ ।

ଅର୍ଥାତ୍ ଶୁଷ୍କ କାଷ୍ଠରେ ଅଗ୍ନି ପରି ଓ ସ୍ୱଚ୍ଛବସ୍ତ୍ରରେ ଜଳପରି ଯେ ଅର୍ଥାତ୍ ରସର ଯେଉଁ ଧର୍ମ ହଠାତ୍ ଚିତ୍ତ ସ୍ଥଳକୁ ବ୍ୟାପିଯାଏ ତାହା ପ୍ରସାଦଗୁଣ ଏବଂ ଏହା ସବୁ ରସରେ ଅବସ୍ଥାନ କରିଥାଏ । ଏହା ମଧ୍ୟ ସକଳପ୍ରକାର ରଚନା ପାଇଁ ଅନୁକୂଳ । ମାଧୁର୍ଯ୍ୟ ପ୍ରଭୃତି ଗୁଣର ବ୍ୟଞ୍ଜକ ବର୍ଣ୍ଣମାନଙ୍କୁ ସେ ଯେପରି ନିର୍ଦ୍ଦିଷ୍ଟ କରି ଯାଇଅଛନ୍ତି, ତାହା ପ୍ରଣିଧାନ୍ୟଯୋଗ୍ୟ । ଟ, ଠ, ଡ, ଢ, ଭିନ୍ନ 'କ' ଠାରୁ 'ମ' ପର୍ଯ୍ୟନ୍ତ ବର୍ଣ୍ଣଗୁଡ଼ିକ ନିଜ ବର୍ଗର ଅନ୍ତିମ ବର୍ଣ୍ଣ ସହିତ ଯୁକ୍ତ ହେଲେ ଏବଂ 'ର' ଓ 'ଣ' କାର ଯଦି ହ୍ରସ୍ୱ ବର୍ଣ୍ଣ ସହିତ ବ୍ୟବହୃତ ହୋଇଥାନ୍ତି, ତାହା ହେଲେ କାବ୍ୟରେ ସମାସର ଅଭାବ ଅଥବା କ୍ଷୁଦ୍ର ସମାସଯୁକ୍ତ ହେଲେ ବୈଦର୍ଭୀ ରୀତି ମାଧୁର୍ଯ୍ୟ ଗୁଣର ବ୍ୟଞ୍ଜକ ହୋଇଥାଏ । ଓଜଃ ବର୍ଣ୍ଣର ପ୍ରଥମ ତୃତୀୟ ବର୍ଣ୍ଣ ସହିତ କ୍ରମଶଃ ଦ୍ୱିତୀୟ ଓ ଚତୁର୍ଥ ବର୍ଣ୍ଣର ସମ୍ମିଶ୍ରଣ ଉପରେ ତଳେ ବା ଉଭୟତ୍ର 'ର' ର ଯୋଗ ଅର୍ଥାତ୍ ( ସର୍ବ, ଭଦ୍ର, ଆର୍ଦ୍ର ) ଯେକୌଣସି ତୁଲ୍ୟ ବର୍ଣ୍ଣଦ୍ୱୟର ସଂଯୋଗ 'ଣ' କାର ବର୍ଜିତ ସମସ୍ତ ଟ ବର୍ଗ ତାଲବ୍ୟ ଶ ଓ ମୂର୍ଦ୍ଧନ୍ୟ ଷକାର ଦୀର୍ଘ ସମାସ ହେତୁ ଗୌଡ଼ୀ ରୀତି ଓଜଃ ଗୁଣର ବ୍ୟଞ୍ଜକ ଅଟନ୍ତି । ପ୍ରସାଦ ଗୁଣ

ପାଇଁ କୌଣସି ନିର୍ଦ୍ଦିଷ୍ଟ ବର୍ଣ୍ଣ ବା ସମାସର ଉଲ୍ଲେଖ ନାହିଁ । କେବଳ ମାତ୍ର ଅର୍ଥ ପ୍ରତ୍ୟାୟକ ଶବ୍ଦ ହିଁ ପ୍ରସାଦ ଗୁଣ ପାଇଁ ଅନୁକୂଳ ବୋଲି ମତ ଦିଆଯାଇଛି । ଏଣୁ କବି ପ୍ରସଙ୍ଗାନୁସାରେ ଯେଉଁ ସ୍ଥଳରେ ଯେଉଁ ରସର ପରିପୁଷ୍ଟି ସାଧନ କରିବାକୁ ଚାହିଁବେ, ସେ ସ୍ଥାନରେ ସେହି ରସର ଧର୍ମଭୂତ ଗୁଣରେ ଅନୁକୂଳ ବ୍ୟଞ୍ଜକ ବର୍ଣ୍ଣ ଓ ସମାସ ଏବଂ ରୀତିକୁ ବ୍ୟବହାର କଲେ ନିଜ କୃତିକୁ ସାଫଲ୍ୟମଣ୍ଡିତ କରିପାରିବେ । ଅନ୍ୟଥା ତାଙ୍କର କାର୍ଯ୍ୟ ଉପହାସାସ୍ପଦ ହେବ-ଏଥିରେ ଆଉ ସନ୍ଦେହ ନାହିଁ ।

ଓଡ଼ିଆ ସାହିତ୍ୟରେ ବିଭିନ୍ନ ରଚନାରେ ଏହି ଗୁଣଗୁଡ଼ିକର ବ୍ୟବହାର ପରିଦୃଷ୍ଟ ହୁଏ । ଓଜଃ ଗୁଣ ବ୍ୟଞ୍ଜକର ଅତ୍ୟୁତ୍କୃଷ୍ଟ ଉଦାହରଣ ରାଧାନାଥଙ୍କ ମହାଯାତ୍ରାରେ ବହୁଳ ପରିମାଣରେ ପରିଲକ୍ଷିତ ହୁଏ ।

"ଆସନ୍ତୁ ଅମିତଚ୍ଛେଦୀ ଚେଦି ମହାଗିରେ
ମହୋଚ୍ଚ୍ଚଳ ମରକତ ଅବତଂସ ଧାରି,
ଘନ ତାଳୀବନାକୀର୍ଣ୍ଣ ଜଳଦୁର୍ଗବାସୀ
ଅଜସ୍ର କ୍ଷେପଣୀ କ୍ଷେପେ ବଜ୍ର ଦୃଢ଼ ବପୁଃ,
ଗାଙ୍ଗେୟ ତରଙ୍ଗେ ଚଲ ମତ୍ସ୍ୟଭେଦେ ପଟୁ,
ସାବେଲ, ଭାସ୍କର ବଳି ହାବେଲିର ଶିଖା,
ସ୍କନ୍ଧେ ଥୋଇ ଆସୁଅଛି ଅମଳ ବିକ୍ରମେ
ବଙ୍ଗଦେଶୀ ରଣରଙ୍ଗ ରସିକ ପୃତନା ।

( ମହାଯାତ୍ରା )

ମାଧୁର୍ଯ୍ୟ ଗୁଣବ୍ୟଞ୍ଜକ ରଚନା, ଯଥା—

ଶ୍ରୀରାଧା ବାତୁଳ ପ୍ରେମରତ୍ନ ତୁଳ ଯେବେ ଚନ୍ଦ୍ରାବ ଗ୍ରାହକମାନେ
କୃଷ୍ଣ ଅତି ପୀନେ ଦୃଢକାକୁ ଦିନେ ପଗ୍ରରନ୍ତ କର ଧରି ଛନ୍ଦେ
ପ୍ରାଣବନ୍ଧୁ ରୀତି । କହି ମୋ ଶ୍ରୁତିକ କରଗତ
ହସି ଦୃତି ଭାଷେ, ପ୍ରେମଜଳେ ଭାସେ ବହୁଳିତ ମତ ଦିବାରତି ।୧।
କାଳିଆ-କମଳ ଦେଖିଲେ କମଳ ନୟନରେ ଦ୍ରୋଏ ଜରଜର
ଦେଖି ନବଘନ ତାଚ ଅପଘନ ପୁଲକ ହୁଅଇ ଥର ଥର ।
ଘନ ସୁନ୍ଦର ହେ, ଯମୁନା ଯିବାକୁ ଡର ଡର ।
ଏ ଅତି ବିଚିତ୍ର କଜ୍ଜଳରେ ଚିତ୍ର ଲେଖି ଚୁମ୍ବ ଦିଏ ବାର ବାର ।୨।

( ବିଦଗ୍ଧ ଚିନ୍ତାମଣି )

ପ୍ରସାଦ ଗୁଣବିଶିଷ୍ଟ ରଚନାର ଉଦାହରଣ ସେହିପରି ବହୁ କାବ୍ୟରେ ମିଳିଥାଏ ।

ଧୀରେ ଘେନ କାନନରେ କୃଷ୍ଣ ବଳମୂର୍ତ୍ତି
ବାତ୍ସଲ୍ୟ ମମତା ଘେନ ଭଲୁଛନ୍ତି ମାତ କଳା ମାଣିକରେ ।୧।
ନିଧନ ଶଙ୍ଖାଳି ମୋର (ରେ) ଦରିଦ୍ର ପଦାର୍ଥ
ଅନ୍ଧର ଲଉଡ଼ି ବାବୁରେ ହୃଦ ରତ୍ନହାର କଳା ମାଣିକରେ ।୨।

( ବିଦଗ୍ଧ ଚିନ୍ତାମଣି )



## ତୃତୀୟ ସର୍ଗ

# କବି ଓ କାବ୍ୟ

- କବି ସାରଳା ଦାସ
- କବି ଜଗନ୍ନାଥ ଦାସ
- ରହସ୍ୟ ମଞ୍ଜରୀ ଓ କବି ଦେବଦୁର୍ଲ୍ଲଭ
- ଦୀନକୃଷ୍ଣ ଓ ରସକଲ୍ଲୋଳ
- ବିଦଗ୍ଧ କବି ଅଭିମନ୍ୟୁ
- କବି ଭକ୍ତଚରଣ ଓ ମଥୁରାମଙ୍ଗଳ
- କବି ଗୋପାଳକୃଷ୍ଣ
- ପ୍ରେମ ପଞ୍ଚାମୃତ
- କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ
- ଓଡ଼ିଆ ସମର ସାହିତ୍ୟକୁ ବ୍ରଜନାଥଙ୍କ ଦାନ

# କବି ସାରଳା ଦାସ

ସିଦ୍ଧସାଧକ ସିଦ୍ଧେଶ୍ୱର ପରିଡ଼ା ଆମ ଓଡ଼ିଆ ସାହିତ୍ୟର ଚିରପରିଚିତ ସାରଳା ଦାସ । ଡାକ ନାମ ତାଙ୍କର ଥିଲା ସିଦ୍ଧେଶ୍ୱର ପରିଡ଼ା । ସାରଳା ଦେବୀଙ୍କଠାରୁ ବରପ୍ରାପ୍ତ ହୋଇ ସିଦ୍ଧି ଲାଭ କରିସାରିଲା ପରେ ତାଙ୍କ ନାମ ହେଲା ସାରଳା ଦାସ । ଝଙ୍କଡ଼ର ସାରଳା ଠାକୁରାଣୀ ଏକ ପ୍ରସିଦ୍ଧ ଦେବୀ । ଏ ଦେବୀଙ୍କର ଆଶୀର୍ବାଦ ଲାଭକରି ସାରଳା ଦାସ କବିତ୍ୱ ଶକ୍ତି ପାଇଲେ । ସେ ହେଲେ ମହାକବି । ଲେଖିଲେ ମହାକାବ୍ୟ ମହାଭାରତ । ସାରଳା ମହାଭାରତ କେବଳ ମହାକାବ୍ୟ ନୁହେଁ—ପୁରାଣ ନୁହେଁ, ପରନ୍ତୁ ଆମ ଓଡ଼ିଆ ଜାତିର ଏକ ପରିପୂର୍ଣ୍ଣ ବିରାଟ ଇତିହାସ—ଜାତୀୟ ସଂସ୍କୃତିର ଇତିହାସ—ଏ ଗୋଟିଏ ବିଶ୍ୱକୋଷ । ପୌରାଣିକ ଯୁଗରେ ଯେତେ ଯେତେ ପ୍ରାଦେଶିକ ଭାଷାରେ ସଂସ୍କୃତ ମହାଭାରତ ଅନୁବାଦିତ ହୋଇଛି, ଓଡ଼ିଆ ସାରଳା ମହାଭାରତ ସେଥି ମଧ୍ୟରେ ସର୍ବଶ୍ରେଷ୍ଠ । ପୁଣି ଏହି ସାରଳା ମହାଭାରତ ଏପରି ଲୋକପ୍ରିୟତା ଅର୍ଜନ କରିଥିଲା, ଯାହା ଫଳରେ ଏହା ଅନ୍ୟାନ୍ୟ ପ୍ରାଦେଶିକ ଭାଷାରେ ଅନୁବାଦିତ ହୋଇଛି ବୋଲି ପ୍ରମାଣ ବଳରୁ ଜଣାଯାଇଛି । ଏହା ସଂସ୍କୃତ ମହାଭାରତର ଅନୁବାଦ ନୁହେଁ, ଅନୁକରଣ ବି ନୁହେଁ । ଏ ଏକ ସ୍ୱତନ୍ତ୍ର ଗ୍ରନ୍ଥ । ଏ ଗ୍ରନ୍ଥ କବିର ମୌଳିକତାରେ ବଳସିତ ଓ ବିଶୋଭିତ । କବିର ଭାସ୍ୱାନ ପ୍ରତିଭାରେ ସୁଦୀପ୍ତ । କବି କେବଳ ମହାଭାରତ ଲେଖି ନୀରବ ରହି ନାହାନ୍ତି । ଅଧିକନ୍ତୁ—ବିଲଙ୍କା ରାମାୟଣ ଓ ଚଣ୍ଡୀ ପୁରାଣ ନାମରେ ଦୁଇଖଣ୍ଡ ଗ୍ରନ୍ଥ ବି ଲେଖିଅଛନ୍ତି । ଯୁଦ୍ଧବର୍ଣ୍ଣନା ଓ ନାରୀଜାତିର ମହତ୍ତ୍ୱ, ସତୀତ୍ୱ, ବୀରତ୍ୱ ଓ ତେଜସ୍ୱୀତା ଏସବୁ ଗ୍ରନ୍ଥରେ ଫୁଟିଉଠିଛି । ସେ ପ୍ରମାଣ କରିଛନ୍ତି ଯେ, ନାରୀ କେବଳ ପୁରୁଷର ଶଯ୍ୟାସଙ୍ଗିନୀ ବା ଉପଭୋଗର ସାମଗ୍ରୀ ନୁହେଁ—ସେ ସହକର୍ମିଣୀ ସହଧର୍ମିଣୀ ଓ ବୀରା । ଯାହାହେଉ, ସାରଳା ମହାଭାରତର କେତୋଟି ଦିଗ ଆଲୋଚନା କରିବା ଆମର ଉଦ୍ଦେଶ୍ୟ ।

ଆଲୋଚ୍ୟ ମହାଭାରତରେ କବି ଶୂଦ୍ରମୁନି ସାରଳା ଦାସ କିପରି ସାମାଜିକ, ରାଜନୈତିକ, ଅର୍ଥନୈତିକ ଓ ସାଂସ୍କୃତିକ ଚିତ୍ର ଦେଇ ତାଙ୍କ ରଚିତ ଗ୍ରନ୍ଥକୁ ଅତୀବ ସୁଖପାଠ୍ୟ ଓ ହୃଦୟଗ୍ରାହୀ କରିଅଛନ୍ତି, ତାହା ପ୍ରତ୍ୟେକ ସମାଲୋଚକ ହୃଦୟଙ୍ଗମ କରିପାରିବେ ଓ କବିଙ୍କର ବହୁତୋମୁଖୀ ପାଣ୍ଡିତ୍ୟର ପରିଚୟ ପାଇବେ । ବିଶେଷତଃ

ଧର୍ମନୀତି, ରାଜନୀତି ସାମାଜିକ ରୀତିନୀତି ଓ ପ୍ରଥା, ଜଗନ୍ନାଥ ଧର୍ମ, ମୂର୍ତ୍ତିତତ୍ତ୍ୱ, ନାରୀର ମନସ୍ତତ୍ତ୍ୱ ଶରୀରତତ୍ତ୍ୱ ପ୍ରଭୃତି ସମ୍ବନ୍ଧରେ କବିଙ୍କ ମତ ପ୍ରଖ୍ୟାପନ କଲେ ଲେଖକ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ନାନା ବିଷୟରେ ପରିପକ୍ୱ ଜ୍ଞାନ ନ ଥିଲେ ଏପରି ଏକ ବିରାଟ ଗ୍ରନ୍ଥ ଲେଖିବା କଷ୍ଟକର ବ୍ୟାପାର । ଆନୁଷ୍ଠାନିକ ଭାବରେ ତାଙ୍କର କିଛି ଶିକ୍ଷା ନାହିଁ, ସେ ତାହା ସ୍ୱୀକାର କରିଅଛନ୍ତି । କେବଳ ଦେବୀର ଆରାଧନା ଓ ଦୈବୀ-ଶକ୍ତି ବଳରେ ଜଣେ ଶୁଦ୍ର ମୂର୍ଖ ବ୍ୟକ୍ତି କିପରି ଏକ ପଣ୍ଡିତ, କବି ଓ ମୁନି ଆଖ୍ୟାରେ ବିଭୂଷିତ ହୋଇପାରେ, ସେ ତାର ଏକ ଜ୍ୱଳନ୍ତ ନିଦର୍ଶନ । ସେ କେବଳ ଜଣେ କବି ନୁହନ୍ତି, ଓଡ଼ିଆ ଜାତୀୟ ପରମ୍ପରାର ସେ ଜଣେ ଶ୍ରେଷ୍ଠ ପ୍ରତୀକ—ସେ ଗୋଟିଏ ବିରାଟ ଅନୁଷ୍ଠାନ, ବାକ୍‌ଦେବୀର ବରପୁତ୍ର । ସାରଳା ଦାସ ତାଙ୍କ ମହାଭାରତ ସୃଷ୍ଟି ମୂଳରେ ସେହି ଝଙ୍କଡ଼େଶ୍ୱରୀ ସାରଳା ଦେବୀଙ୍କର ଆଶୀର୍ବାଦ ଯେ ନ୍ୟସ୍ତ, ଏହା ପ୍ରକାଶ କରି ତାଙ୍କ ଭକ୍ତିଭାବ, ଉଦାରତା ଓ ଦୈନ୍ୟର ନିଦର୍ଶନ ଜାତି ସମକ୍ଷରେ ଥୋଇଅଛନ୍ତି । ତାଙ୍କ ଭାଷାରେ:—

ଶୁଣ ସୁଜ୍ଞ ବୁଧଜନେ କରି ଏକ ଚିତ୍ତ,
ଜନ୍ମରୁ ମୂରୁଖ ମୁହିଁ ନୁହଇ ପଣ୍ଡିତ ।
ସେ ଯାହା କହନ୍ତି ମୋତେ ମୁଁ ତାହା ଲେଖଇ;
ସାଧୁ ସୁଜ୍ଞଜନେ ମୋର ଏଥି ଦୋଷ ନାହିଁ ।

ଏକ ଧାରାରେ ଦୀନତା ଓ ଦେବୀଭକ୍ତିର ପ୍ରାଞ୍ଜଳ ପ୍ରକାଶ ।

ପୁନଶ୍ଚ— ଜମ୍ବୁଦ୍ୱୀପ ଭରତଖଣ୍ଡେ ଉତ୍କଳରାଷ୍ଟ୍ର ମଣ୍ଡଳେ,
ଉତ୍ପଳେଶ୍ୱର ଯେ ଲିଙ୍ଗ ଚିତ୍ରୋତ୍ପଳା କୂଳେ ।
ସୁପ୍ରସନ୍ନେ ଆଜ୍ଞା ମୋତେ ଦେଲେ ଶାକମ୍ଭରୀ;
ଲଭି ରୁ ସୁନାମ ମହାଭାରତ ବିସ୍ତାରି ।

ସାରଳା ଦାସ ଜଣେ ଜାତୀୟ କବି ଥିବାରୁ ଏବଂ ଦେଶାତ୍ମବୋଧରେ ସଦା ତାଙ୍କ ଚିତ୍ତ ଉଦ୍‌ବେଳିତ ହେଉଥିବାରୁ ସମଗ୍ର ମହାଭାରତରେ ଓଡ଼ିଆ ଜାତି ଓଡ଼ିଆ ଜାତିର ଦେବତା ଜଗନ୍ନାଥ, ଓଡ଼ିଶାର ତୀର୍ଥକ୍ଷେତ୍ର ପୁରୀର ମହତ୍ତ୍ୱ, ଏ ଦେଶର ଚଳଣି, ରୀତିନୀତି ଓ ପ୍ରଥାର ବିବରଣୀ ସୁସ୍ପଷ୍ଟ ଭାବରେ ସନ୍ନିବିଷ୍ଟ ହୋଇଛି । ଚରିତ୍ର ଚିତ୍ରଣରେ କବି ସର୍ବତ୍ର ଓଡ଼ିଆତ୍ୱ ଫୁଟାଇଅଛନ୍ତି । ତାଙ୍କର ପ୍ରଧାନ ନାୟକ ନାୟିକା ପୌରାଣିକ ନାୟକ ନାୟିକା ହେଲେ ମଧ୍ୟ ସେମାନଙ୍କର କାର୍ଯ୍ୟକଳାପ ଓ କଥୋପକଥନରେ ଓଡ଼ିଆ ଚଳଣି ଖୁବ୍ ଭଲି କରିଦିଆଯାଇଅଛି । ତାଙ୍କର ଜାତିପ୍ରୀତି ସର୍ବତ୍ର ଦେଦୀପ୍ୟମାନ ।

ତାଙ୍କ ମତରେ ପୁରୀ ସର୍ବଧାମରେ ମଉଡ଼ମଣି । ଏ କୁଶସ୍ଥଳୀ । ଏଠାରେ ଜଗନ୍ନାଥଙ୍କ ମହିମା କୀର୍ତ୍ତନ କରାଯାଇଛି । ଏ କୁଶସ୍ଥଳୀରେ ଜଗନ୍ନାଥ ସୁଭଦ୍ରା ଓ

ବଳରାମ ୪ ଲକ୍ଷ ୩୨ ହଜାର ଦେବ ସେନା ବିରାଜିତ । ଜଗନ୍ନାଥ ବିଷ୍ଣୁ — ସେ ବୌଦ୍ଧ ଅବତାର । ସେ ଜ୍ଞାନର ଅବତାର ।

କବିଙ୍କ ଭାଷାରେ—

"ନୀଳସୁନ୍ଦର ପର୍ବତ କଳ୍ପବଟ ତଳେ,
ଦକ୍ଷିଣ କୂଳସ୍ଥଳୀ ଶ୍ରୀ ଦ୍ୱାରକା ମଣ୍ଡଳେ ।
ବିଜୟେ ରାମ କୃଷ୍ଣ ସୁଭଦ୍ରା ଏ ତିନି,
ଚଉଁଲକ୍ଷ ବତିଶ ସହସ୍ର ଦେବ ସେନା ।"

ନୀଳଗିରିର ଜନ୍ମବୃତ୍ତାନ୍ତରେ ସେ ଜଗନ୍ନାଥ ତତ୍ତ୍ୱର ଅବତାରଣା କରିଅଛନ୍ତି । ଦାରୁବ୍ରହ୍ମର ନାରାୟଣତ୍ୱ ସ୍ୱୀକାର ପୂର୍ବକ କବି ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାର ଅସମାପ୍ତ ଅଙ୍ଗୁଠିର ଗୋଟିଏ ବ୍ୟାଖ୍ୟା ତାଙ୍କ ରଚିତ ଗ୍ରନ୍ଥରେ ଦେଇଅଛନ୍ତି । ଏହା ଅବଶ୍ୟ ପୁରାଣରେ ଅଛି । ଦାରୁବ୍ରହ୍ମର ପୂର୍ବ ଇତିହାସ ମଧ୍ୟ ସେ ପୁରାଣରୁ ଗ୍ରହଣ କରିଅଛନ୍ତି । ଯାହାହେଉ ଦାରୁବ୍ରହ୍ମଙ୍କୁ ଜାରାଶବରଠାରୁ ଅଣାଇ ରାଜା ଇନ୍ଦ୍ରଦ୍ୟୁମ୍ନ ବଢ଼ାଇଙ୍କୁ ଡକାଇ ମୂର୍ତ୍ତି ଗଠନପାଇ ଆଦେଶ ଦେଲେ । ଜାରାଶବର ଓ ବ୍ରାହ୍ମଣ ପାଖରେ ଥାଇ ବଢ଼ାଇ ମୂର୍ତ୍ତି ଗଠନ କାର୍ଯ୍ୟରେ ଲାଗିପଡ଼ିଲା । ଏ ଦୁଇଜଣଙ୍କ ଛଡ଼ା ଆଉ କେହି ଦେଖିପାରିବେ ନାହିଁ ବୋଲି ବ୍ୟବସ୍ଥା ଥିବାରୁ ରଜା ଇନ୍ଦ୍ରଦ୍ୟୁମ୍ନ ବାହାରେ ରହିଲେ । ମାତ୍ର ବଢ଼ାଇର କାର୍ଯ୍ୟରେ ଅତ୍ୟଧିକ ବିଳମ୍ବ ଦେଖି ଓ ମୂର୍ତ୍ତି ଗଠନ କାର୍ଯ୍ୟର କୌଣସି ଲକ୍ଷଣ ଜାଣି ନ ପାରି ଓ ଶବ୍ଦ ଶୁଣି ନ ପାରି ରାଜା ଅସମ୍ଭାଳ ହୋଇ ରୁଦ୍ଧ କବାଟକୁ ଫେଡ଼ି ଦେଖିଲେ, ଶୁକ୍ଳ, କୃଷ୍ଣ ଓ କୁଙ୍କୁମ ରଙ୍ଗରେ ସେହି ଦାରୁବ୍ରହ୍ମ ତିନି ମୂର୍ତ୍ତିରେ ଜାଜ୍ୱଲ୍ୟମାନ ।

କବି ବର୍ଣ୍ଣନା କଲେ—

ରୂପରେ ତ ନାରାୟଣ ବର୍ଣ୍ଣ ଅଟେ କଳା,
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ଦେବ ମେଳା ।
ବଳଭଦ୍ର ସୁଭଦ୍ରା ଏ କୃଷ୍ଣ ତିନି ରୂପ,
ବଉଧ ରୂପରେ ହେଲେ ଏମନ୍ତ ସ୍ୱରୂପ ।
ତାହା ଦେଖି ନରପତି ବିସ୍ମୟେ ବସିବ,
ଏମନ୍ତ ମୂରତି କିଆଁ ହୋଇଲା ଭାବିବ ।
ଜରାଶବର ବୋଲିବ ଶୁଣ ଇନ୍ଦ୍ରଦ୍ୟୁମ୍ନ,
ଆଜ ଦ୍ୱାର ଫେଡ଼ିବାରୁ ଦେଖିଲୁ ଏମାନ ।

ଦେଖିଥାନ୍ତୁ କରପଦ୍ମ, ନାସା, କର୍ଣ୍ଣ, ଆଖି,
କଳିକାଳ ଜନେ ଦେଖି ହେଉଥାନ୍ତେ ସୁଖୀ ।
ଯେ ପରମହଂସ ରୂପେ କଳ୍ପ କଳ୍ପ ଭ୍ରମି,
ପୁନଃ ପୁନଃ ଅବତାରେ ହୁଅନ୍ତି ମର୍ତ୍ତ୍ୟଗାମୀ ।
ଏ ନୀଳଗିରିରେ ବିଜେ ଦଶସହସ୍ର ଯାନ୍ତି,
ଏ ଘନ ମୂର୍ତ୍ତିଙ୍କ ଭକ୍ତେ ହୃଦେ ଚିନ୍ତୁଥାନ୍ତି ।

ସାରଳା ଦାସ ଉତ୍କଳୀୟ ବୈଷ୍ଣବ । ସେ ଯୋଗବାଦୀ, ଶୂନ୍ୟବାଦୀ ଓ ଜ୍ଞାନମିଶ୍ରା ଭକ୍ତିର ଉପାସକ ଏବଂ ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱର ପ୍ରଖ୍ୟାପକ ।

କବି ଭଣିଲେ—"ନାଭିଠାରୁ ଯେ ମସ୍ତକ ପର୍ଯ୍ୟନ୍ତେ,
ତେତିଶ କୋଟି ଦେବ ଅଛନ୍ତି ଏକେ ଏକେ ।

ପୁନଶ୍ଚ ପାଣ୍ଡବମାନଙ୍କ ବନବାସ ସମୟରେ ସେ ଶରୀରତତ୍ତ୍ୱ ଫୁଟାଇଅଛନ୍ତି—
"ଆହେ ତାତ ପଞ୍ଚମନ ପଚିଶ ପ୍ରକୃତି,
ଏ କାୟା ଘରକୁ ବୃଥା ଭ୍ରମରେ ପକାନ୍ତି ।
ବାସ୍ତର ନାଡ଼ି ପୁଣି ଚୌରାଶି ହେତୁ,
ପବନର ଭେଟାଭେଟି ଶରୀରର ତତ୍ତ୍ୱୁଁ ।
ଇଂଳା ପିଂଳା ପୁଣି ମଧ୍ୟେ ଶୁଶୁମ୍ଣା,
ଉଚାଟର ଛନ୍ଦ ଏହି ନବ ନାଡ଼ି ସିନା ।
ଏଥିରୁ ଜାତ ନାଡ଼ି ଯେ ଚଉସ୍ତର କୋଟି,
ପୁଣି ଏହା ସାର ନାଡ଼ି ଅଟେ ଚୌରାଶିଟି ।
ରସନା ନଶ୍ୱାସଂ ଦୁହେଁ ଏକଇ ଯେ ବାଟ,
ଶରୀରର ଧାରଣାକୁ ଟେକିଲ ଶ୍ରୀହଟ ।
ଇଁଅଳା ଏକାଳେ ଦେଲେ ଚନ୍ଦ୍ର ମେଲେ କଳା,
ଅଗତି ଭୁବକୁ ମନମଥ ଯେ ପିଙ୍ଗଳା ।
ଅଧୋବଦନକୁ ଜାଣି ବକ ଗୁରଗୋଟି,
ଚୌରାଶି ଆବାହନ ମୁଦ୍ରା ଚଉଷଠୀ ।
ଧ୍ୟାନ ଲକ୍ଷ୍ୟ କର କାଯ୍ୟେ ଚନ୍ଦ୍ରବକ,
ଶ୍ରୀହଟ ପବନ ଉଡ଼େ ଚନ୍ଦ୍ରର ଉଦକ ।
ଜ୍ଞାନ ତପନ ଧାବନ ବାୟୁ ସଦା ବ୍ରହ୍ମା,
ଏତକ ଛନ୍ଦ ଅଛଇ ପଞ୍ଚଭୂତ ଆତ୍ମା ।
ଏତେ ଯୋଗ ଯେନ ଯେବେ ବନ୍ଧେ ବସ୍ତୁ ବାତ,
ତେତେବେଳେ ଚଳଇ ଯେ ପଞ୍ଚଭୂତ ତତ୍ତ୍ୱୁ ।

ସମ୍ପୂର୍ଣ୍ଣ ଚଳଇ ଧାତୁ ଆତ୍ମଟର ମନ,
ଜ୍ଞାନକୋଠା ମଧରେ ଯେ ହୋଇଅଛୁ ଛନ ।
ଏତେକ ଘେନଣ ଯେବେ ଚଳୁଥାଇ ରତୁ,
ତେବେ ମାତାର ଗର୍ଭରେ ରହେ ପଞ୍ଚତତୁ ।

ଆମ ଦେଶର ସାଧାରଣତଃ ମୂର୍ଖ ଅଜ୍ଞାନ ଲୋକ ସ୍ତ୍ରୀ ଜନ୍ମକୁ ଧିକ୍‌କାର କରିଥାନ୍ତି । ନାରୀମାନେ ମଧ ଏକଥା କଥାକେ ସ୍ତ୍ରୀ ଜନ୍ମର ଅସାରତା ପ୍ରତିପାଦନ କରିବାକୁ ଚେଷ୍ଟା କରିଥାନ୍ତି । କବି ସେମାନଙ୍କୁ ଉପଦେଶ ଛଳରେ କହିଛନ୍ତି, "ତୁ କମ୍ପାଇଁ ନିନ୍ଦା କରୁ ସ୍ତ୍ରୀ ଜନମକୁ, ସ୍ତ୍ରୀ ଉତ୍ପତ୍ତି କରଇ ବିନା ପୁରୁଷକୁ ।"

ଯୁବତୀ ସ୍ତ୍ରୀର ମନସ୍ତତ୍ତ୍ୱ ଫୁଟାଇବାକୁ ଯାଇ କବି ଲେଖିଲେ—

"ଧନ ସମ୍ପତ୍ତି ଯୁବତୀ ନ କରଇ ଇଚ୍ଛା,
ସଦା ସେ ସୁ-ପୁରୁଷେ କରୁଥାଇ ବାଞ୍ଛା ।
ଦ୍ରୌପଦୀ ବୋଲେ ସ୍ତ୍ରୀଙ୍କ ଏମନ୍ତ ପ୍ରକୃତି,
ସୁନ୍ଦର ପୁରୁଷ ଦେଖିଲେ ବଳାଅନ୍ତି ମତି ।"

କାହାରି କାହାରି ମତରେ ସେ ଏପରି ମତବ୍ୟକ୍ତ କରିବା ଦ୍ୱାରା ସାମାନ୍ୟ ଅଶ୍ଳୀଳତା ଦର୍ଶାଇ ଅଛନ୍ତି । ଏକଥା ଭ୍ରମାତ୍ମକ । ମାତ୍ର ସେ ଓଡ଼ିଆ ସାହିତ୍ୟରେ ଯେ ଆଦିରସର ଆଦ୍ୟ ପ୍ରବର୍ତ୍ତକ ଥିଲେ, ଏ କଥା ପ୍ରମାଣିତ ହୋଇଯାଇଛି । ତେଣୁ ନାୟକ-ନାୟିକାର ମନସ୍ତତ୍ତ୍ୱ ଫୁଟାଇବାକୁ ଯାଇ କବି ଶୃଙ୍ଗାର ରସର ଆଶ୍ରୟ ନେଇ-ଅଛନ୍ତି । ମାତ୍ର ସେ ଓଡ଼ିଆ ସାହିତ୍ୟରେ ନାରୀଜାତିର ସତୀତ୍ୱ ଉପରେ ଯଥେଷ୍ଟ ଜୋର ଦେଇଛନ୍ତି । "ଅଧର୍ମ ହେତୁରୁ କୁଳସ୍ତ୍ରୀ ହୋନ୍ତି ଭ୍ରଷ୍ଟ, ତହିଁରୁ ବର୍ଣ୍ଣସଙ୍କର ହୁଅଇ ଭୂମିଷ୍ଠ ।" ଧର୍ମ ଏଠାରେ ସତୀର ଧର୍ମକୁ ବୁଝିବାକୁ ହେବ । ଏ କଥା ଗୀତାରେ ଅଛି । ସାରଳା ଦାସଙ୍କ ଉପରେ ଗୀତାର ପ୍ରଭାବ ସୁସ୍ପଷ୍ଟ । ଗୀତାର କେତେଗୁଡ଼ିଏ ଶ୍ଳୋକ ସେ ଯଥାଯଥ ଭାବରେ ଅନୁବାଦ କରିଅଛନ୍ତି ।

ଭୀଷ୍ମପର୍ବରେ ଗୀତାର କେତେଗୁଡ଼ିଏ ଶ୍ଳୋକର ଓଡ଼ିଆ ଅନୁବାଦ ଆଲୋଚନୀୟ ।

ଗୀତା—୨ୟ ଅଧ୍ୟାୟ—

ବାସାଂସି ଜୀର୍ଣ୍ଣାନି ଯଥା ବିହାୟ
ନବାନି ଗୃହ୍ଣାତି ନରୋଽପରାଣି ।
ତଥା ଶରୀରାଣି······ନବାନି ଦେହୀ ।
ପୁନଶ୍ଚ "ନୈନଂ ଛିନ୍ଦନ୍ତି········ମାରୁତଃ ।"

କବିଙ୍କ ଭାଷାରେ—

ଚିରିଲୁଗା ଛାଡ଼ି ନୂଆ ପିନ୍ଧିଲା ପରାଏ,
ଆତ୍ମ ଯାଇ କରି ପୁଣି ନୂଆ ଦେହ ପାଏ ।
ଆତ୍ମାଟିକୁ ଶସ୍ତ୍ର କେବେ ନ ପାରଇ କାଟି,
ଅଗ୍ନି ପୋଡ଼ି ନ ପାରନ୍ତି ଆତ୍ମାକୁ କଦାପି ।
ସଢ଼ାଇ ନ ପାରେ ମଧ୍ୟ ତାହାକୁଟି ଜଳ,
ଶୁଖାଇ ନ ପାରେ ତାର ଅଣୁ ଏ ଅନଳ ।

ଗୀତା—ଦ୍ୱିତୀୟ ଅଧ୍ୟାୟ—

ଶ୍ରେୟାନ୍ ସ୍ୱଧର୍ମୋବିଗୁଣଃ
ପରଧର୍ମାତ୍ ସ୍ୱନୁଷ୍ଠିତାତ୍
ସ୍ୱଧର୍ମେ ନିଧନଂ ଶ୍ରେୟଃ
ପରଧର୍ମୋ ଭୟାବହଃ ।

ପର ଧରମ ଙ୍କାଡ଼ି'କି ଆପଣାର ଧର୍ମ,
ନିଗୁନ ହେଲେ ହେଁ ସୁଦ୍ଧା ଅଟଇ ଉତ୍ତମ ।
ସ୍ୱଧର୍ମରେ ମରଣ ଅଟଇ ମଧ୍ୟ ଶ୍ରେୟ,
ତେଣୁ ଯୁଦ୍ଧ କରି ହେ ଅର୍ଜୁନ କର ଜୟ ।

ଗୀତା—ଆଦିତ......ଜ୍ଞାନବତାମହଂ

ମହାଭାରତ—ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟରେ ବିଷ୍ଣୁ ମୁହିଁ,
ଜ୍ୟୋତିଷ୍କ ମଧ୍ୟରେ ସୂର୍ଯ୍ୟ ଦେବତା ଅଟଇ ।
ତେଜସ୍ୱୀମାନଙ୍କର ତେଜ ମୁଁ ଅଟଇ,
ଜିଣିବା ଲୋକଙ୍କର ଜୟଟି ମୋତେ କହି ।
ଗୁପତ କଥାରେ ଅଟେ ମୁଁ ମଉନ ବଚନ,
ମୁହିଁଟି ହେ ଅରଜୁନ ତତ୍ତ୍ୱ-ଜ୍ଞାନୀ-ଜ୍ଞାନ ।

କେବଳ ଗୀତାର ଅତି ପ୍ରିୟ ଶ୍ଳୋକଗୁଡ଼ିକୁ ସେ ଅନୁବାଦ କରିବା ପାଇଁ ପ୍ରୟାସୀ ହୋଇଅଛନ୍ତି । କବିଙ୍କର କବିତ୍ୱ ତାଙ୍କ ଯୁଦ୍ଧବର୍ଣ୍ଣନାରେ ଓ ନାୟକନାୟିକା ରୂପାଦି ବର୍ଣ୍ଣନା ଏବଂ ପ୍ରାକୃତିକ ଦୃଶ୍ୟ ବର୍ଣ୍ଣନାରେ ପ୍ରତିଫଳିତ ହୋଇଛି । ଏଠାରେ କେବଳ ଯୁଦ୍ଧବର୍ଣ୍ଣନାର ଗୋଟାଏ ଉଦାହରଣ ପ୍ରଦତ୍ତ ହେଲା । ଅନ୍ୟାନ୍ୟ ବିଭାଗର ବର୍ଣ୍ଣନା ଦେଲେ ପ୍ରବନ୍ଧଟି ଦୀର୍ଘକଳେବର ହୋଇଯିବ, ଏଇ ଆଶଙ୍କାରେ କେବଳ ଯୁଦ୍ଧବର୍ଣ୍ଣନାର ଗୋଟିଏ ନମୁନା ଦିଆଯାଉଛି । ଏ ବର୍ଣ୍ଣନାରେ କବିଙ୍କର ଉଚ୍ଚକୋଟୀର କବିତ୍ୱ ପ୍ରକଟିତ ।

ଶର ମାରନ୍ତି ଯେସନେ ବରଷଇ ପାଣି;
ଝଟମକଇ ଅସ୍ତ୍ର ବିଜୁଳିର ତେଜ ଜାଣି ।
ସମସ୍ତଙ୍କ ଅଙ୍ଗରୁ ରୁଧିର ବୃଷ୍ଟି ହେଲା,
ପଳାଶ ଗଛ କି ଫୁଲ ମଣ୍ଡିତ ହୋଇଲା !
ଯେସନେ ତଳମଞ୍ଜି ବୁଣଇ କୃଷିକାରୀ,
ପଡ଼ନ୍ତି ପାଦ୍ୟନ୍ତ ଜଳ ସଞ୍ଚରି ନ ପାରି ।
ଯେସନେ କଦଳୀ ବନ ପଡ଼େ ବାତାଘାତେ,
ଏକ ଉପରେ ଆରେକ ପଡ଼େ ଶରଘାତେ ।
ମହାବାତେ ଯେସନ ପକ୍ୱ ଫଳ ଝଡ଼ନ୍ତି,
ଏକ ନାରାଚକେ ବହୁ ସଇନ ଲେଟନ୍ତି ।
ଗମ୍ଭୀର ଜଳରେ ଯେଉଁପରି ଭାସେ ଭେଳା,
ଗଜ ଅଶ୍ୱ ରକ୍ତ ରଥେ ତଥା ମେଳା ମେଳା । ଇତ୍ୟାଦି—

ସାମରିକ, ଅସ୍ତ୍ରଶସ୍ତ୍ରର ଉଲ୍ଲେଖ ତାଙ୍କ ମହାଭାରତରେ ମିଳେ । ଅଜଗବ, ପରଶୁ, ଖଡ଼ଗ, ହାତବୋଡ଼ା, ଖୁରପଶର, ବାବଲ୍ଲିଶର, ମନଭେଦୀ, ନାରାଚ, ବ୍ରହ୍ମମୁନା, ଅଗ୍ନିଶର, ଜଳଶର, ପନ୍ନଗଶର, ଗରୁଡ଼ଶର, ପାଶୁପତ, ଗଦା, ମୁଦଗର, କୁନ୍ତ, ପାଶଆସି—ପୁଣି ଧନୁଫଳା, ନଳୀ, ଗୁରୁଜ, ଉଦ୍ଦଣ୍ଡଛଟ, ତୀକ୍ଷ୍ଣମୁନା, ବାୟୁବାଂଶର, ଅର୍ଦ୍ଧପତ୍ର, ଦ୍ୱାଦଶମୁନା, ପର୍ବତଶର, କତୁରିଶର, ବଜ୍ରଲଙ୍କିଆ, ଛେଲ୍, ଗଦା, କାତି, କୁନ୍ତମୁଷଲ, ମୁଦ୍‌ଗର, ସାବେଳି, ନର୍ଘାତ, ବଜ୍ରସୂଚୀ, ଅଗ୍ନିବାଣ, ନାରାୟଣାସ୍ତ୍ର, ମୋହନାଶର, ପର୍ଶୁକୁଠାର, ବଜ୍ରବାଣ, ତ୍ରିମୁଦ୍‌ଗର, ପିନାକ, ନଳବାଣ, ଭୁଜବାଣ, ପ୍ରଭୃତି ଅସ୍ତ୍ରଶସ୍ତ୍ର ଓ କଡ଼ା, ବଜଘୋଷ, ଘୁମୁରା, ଖିରିମହୁରି, ଢମିରା, ଶାରଙ୍ଗ, ସପ୍ତସ୍ୱର ପ୍ରଭୃତି ବାଦ୍ୟର ନାମ ଉଲ୍ଲେଖ ଦେଖିଲେ କବିଙ୍କ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳେ ।

"କବି ମୂଳ ଭାରତର ଅନେକ ବିଷୟ ନ ଆଣି ନିଜର ସୃଷ୍ଟିଶକ୍ତିମତୀ କଳ୍ପନା, ବ୍ୟାପକ ଅନୁଭୂତି ଓ ବିରାଟ ବ୍ୟକ୍ତିତ୍ୱ ରୂପ ବହୁମୂଲ୍ୟ ଉପାଦାନଦ୍ୱାରା ସେ ଏକ ଅଭିନବ ଉତ୍ତୁଙ୍ଗ କାବ୍ୟସୌଧ ନିର୍ମାଣ କରିଅଛନ୍ତି । ଝିମାଣି ଖେଳରୁ କୁରୁ ପାଣ୍ଡବମାନଙ୍କ ମଧ୍ୟରେ କଳହ ଉପୁଜିଲା । ଏ କଥା ସାରଳା ଦାସ ବ୍ୟତୀତ ଆଉ କିଏ କହିପାରେ ? ଝିମାଣି ଆମ ଓଡ଼ିଶାର ବିଶିଷ୍ଟ ଖେଳ । ସୁତରାଂ ସେ ଖେଳ ଖେଳିଲେ କୁରୁ-ପାଣ୍ଡବମାନେ । ମୋଟ ଉପରେ କହିବାକୁ ଗଲେ ଆମେ ନିଃସନ୍ଦେହରେ କହିପାରିବା ଯେ, ସେ ଓଡ଼ିଶାର ପରିବେଶରେ ରଚିଲେ ମହାଭାରତ ରୂପ ମହାକାବ୍ୟ । ଭୀଷ୍ମପର୍ବରେ କବି କଳିଙ୍ଗ ରାଜାଙ୍କୁ ଖୁବ୍ ବରେଣ୍ୟ ଭାବରେ ଓ ଯୋଦ୍ଧାରୂପେ ବର୍ଣ୍ଣନା କରିଅଛନ୍ତି । କୋଣାର୍କ ତୀର୍ଥର ମାହାତ୍ମ୍ୟ ଏଠାରେ ପ୍ରକଟିତ ହୋଇଅଛି ।

କବିଙ୍କର ଇତିହାସ ଓ ଭୂଗୋଳ ସମ୍ବନ୍ଧରେ ଯେ ଗଭୀର ଓ ଅମାପ ଜ୍ଞାନ ଥିଲା, ତାହା ବେଶ୍ ଜଣାପଡ଼େ । ଓଡ଼ିଆ ରଜା ଯଯାତିଙ୍କ ଇତିହାସ ନେଇ କବି କହିଲେ—

"ଆଦ୍ୟରୁ ଶୂନ୍ୟ ହିଁ ଜାତ ଶୂନ୍ୟରୁ ପବନ,
ପବନରୁ ଜାତ ଯୋଗପୁରୁଷ ସମାନ ।
ଯୋଗପୁରୁଷରୁ ଗାୟତ୍ରୀର ଜନ୍ମ,
ସେହି ଗାୟତ୍ରୀରୁ ଜାତ ହେଲ ମହାମନ୍ତ୍ର ।"

ମନ୍ତ୍ରରୁ ୪ ବେଦ—୪ ବେଦରୁ ୭ ଛନ୍ଦ—ଛନ୍ଦରୁ କର୍ମ—କର୍ମରୁ ନିର୍ଗୁଣ—ନିର୍ଗୁଣରୁ ଅଣ୍ଡ ( ସ୍ୱର୍ଣ୍ଣବର୍ଣ୍ଣ ) — ଅଣ୍ଡର ପୁତ୍ର ନିରଞ୍ଜନ—ନିରଞ୍ଜନର ପୁତ୍ର ତପନ—ତପନର ପୁତ୍ର ତେଜ—ତେଜରୁ ଶକ୍ତି ଶକ୍ତିରୁ ଯେ ପୁତ୍ର ଜାତ—ଯେ ହେଲେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର····· ନହୁଷ—ଯଯାତି । ପାଠକେ ମୂଳ ସୂତ୍ର ପ୍ରତି ଦୃଷ୍ଟିପାତ କରନ୍ତୁ । ଦ୍ରୌପଦୀ ସ୍ୱୟମ୍ବରରେ ଯେଉଁ ଯେଉଁ ରାଜ୍ୟରୁ ଓ ସ୍ଥାନରୁ ରାଜାମାନେ ଆସିଥିଲେ, ତାର ଗୋଟିଏ ବିବରଣୀ ଦେଇ କବି ତାଙ୍କର ଭୌଗୋଳିକ ଜ୍ଞାନର ପରିଚୟ ଦେଇଅଛନ୍ତି । ସେ ଲେଖିଥିଲେ, "କଳିଙ୍ଗ, ଉଡ଼ଙ୍ଗ, ବୈଶ୍ୱାନର, କାନ୍ୟକୁବ୍ଜ, ଚୂହାନ, ବଙ୍ଗ, ଯୁଗ, କୁଂଜର, ମଘ, ମତ୍ସ୍ୟ, ଶର, ଭଛଦେଶ, ମହ୍ଲାର, କାଉଁରି, ବଙ୍ଗଳା, ଖଡ଼ଗ, କୃଷ୍ଣଗଣ୍ଡି, ନେପାଳ, ବାରସ୍ତିପୁର, ଭୋଜ, ଭୋଜକଟକ, ଶାକଳ୍ପ, କାଶୀଶ୍ୱର, କିଳିକିଳା, ଯାଜପୁର, ଚେଦି, କାଞ୍ଚି, କେଶରୀ,କୁଶମଣ୍ଡଳ, ମରୁତ, ବିନ୍ଧ୍ୟମାନ, ପଶ୍ଚିମକୋଶଳ, ସୁରଭି, ଉତ୍ତରକୋଶଳ, ଦକ୍ଷିଣକୋଶଳ, ପାଟଣା, ମଳୟ, ରୈବତପାଟଣା, ନିରସ୍ତପାଟଣା, କମଳପାଟଣା, ଜମ୍ବୁଦ୍ୱୀପ, ଶଙ୍ଖପୁର, ବିଜୟାଭୁବନ ପ୍ରଭୃତି ସ୍ଥାନର ବର୍ଣ୍ଣନା ହୋଇଛି ।

ସାରଳା ମହାଭାରତରେ ରାଧା, ଚନ୍ଦ୍ରସେଣା ଓ କୃଷ୍ଣଙ୍କର ଚରିତ ବର୍ଣ୍ଣିତ ଅଛି । ରାଧାଙ୍କ ସହିତ କୃଷ୍ଣଙ୍କର ମିଳନ ଇତିହାସ ଲିପିବଦ୍ଧ ହୋଇଅଛି । ସହଜସୁନ୍ଦରୀ ରାଧାଙ୍କର କଥୋପକଥନ ଅତି ରସମୟ କରାଯାଇଛି । ସମଗ୍ର ମହାଭାରତରେ କ୍ରମାନ୍ୱୟେ ଆମର ଓଷା, ପର୍ବ, ପର୍ବାଣୀ, ବିବାହପ୍ରଥା, ଯୌତୁକପ୍ରଥା, ଜାତିଭେଦପ୍ରଥା, ଗୃହସ୍ଥର ଧର୍ମ, ପାକାସ୍ପର୍ଶ ନିୟମ, ଜାତକର୍ମ, ଅବୈଧ ସନ୍ତାନ ନାଶ, ଅକାମାବେ ଭୁଡ଼, ଜଣାସେଧନ, ସନନ୍ଦ ତାମ୍ରଫଳକ ଦାନ ବିଧି, ଅଭିଷେକ ବିଧି, ନପୁଂସକ ଲକ୍ଷଣ, ବନ୍ଧ୍ୟାନାରୀର ଲକ୍ଷଣ, ତୀର୍ଥସ୍ନାନ, ଯନ୍ତ୍ର ପ୍ରୟୋଗ, ପରନିନ୍ଦା ତତ୍ତ୍ୱ, ଖାଦ୍ୟଭେଦ, ପ୍ରେତକୃତ୍ୟ, ଦଣ୍ଡପ୍ରଥା, ମଦ୍ୟପାନ, ଭୂମିତତ୍ତ୍ୱ, ବିଦ୍ୟାତତ୍ତ୍ୱ, ମିତ୍ର ପରୀକ୍ଷା, ପାକପ୍ରଣାଳୀ, ନାନାବିଧ ଅଳଙ୍କାର ଧାରଣ, ବାଣିଜ୍ୟକରଣ, କ୍ଷତଚିକିତ୍ସା, ଧନୁର୍ବିଦ୍ୟା, ଭେଷଜ ତତ୍ତ୍ୱ, ରତିକ୍ରିୟା ବିଧିଠାରୁ

ଆରମ୍ଭ କରି ବସ୍ତ୍ରଶିଳ୍ପ ପର୍ଯ୍ୟନ୍ତ ସମସ୍ତ ବିଷୟର ଉଲ୍ଲେଖ ଅଛି । ଏପରି କି ସ୍ତ୍ରୀ କେଉଁ ବାରରେ କି ତିଥିରେ ରଜସ୍ୱଳା ହେଲେ ତାର ଫଳ ହୁଏ ଏବଂ ପୁରୁଷ ପକ୍ଷରେ ନାରୀଗମନର ଦିନ ବାର ନକ୍ଷତ୍ରାଦିର ଉଲ୍ଲେଖ କରି କବି ସ୍ୱୀୟ ଗଭୀର ଅଭିଜ୍ଞତା, ଅସୀମ ଜ୍ଞାନର ପରିଚୟ ଦେଇଅଛନ୍ତି । ତାଙ୍କ ସମୟରେ ଆମ ଦେଶରେ ଜମି ମାପଚୂପର ପରିମାଣ କିପରି ଥିଲା, ତାର ଦୃଷ୍ଟାନ୍ତ ମଧ୍ୟ ଆଲୋଚ୍ୟ ଗ୍ରନ୍ଥରେ ଦିଆଯାଇଛି—

ଯଯାତି ଯେ ମାଢ଼ ଚନା ମୂଳ ଭିଆଇଲେ,
ତହିଁରୁ ଯେ ମାଣ ବାଟି ପାଣ୍ଡୁ ନିର୍ମିଣିଲେ ।
ବାଟି ଯେ ଚଉଇ ହୁଏ ପଉଟିଏ ଫଳା,
ଦ୍ୱାଦଶ ଫଳ ଜନ୍ମାଇ ସୁଖେ ଜିଏ ପ୍ରଜା ।

ମାଢ଼, ଚନା, ବାଟି, ପଉଟି, ଫଳା ଅଦ୍ୟାପି ଆମ ଦେଶରେ ପ୍ରଚଳିତ ।

## ସାରଳା ଦାସ ମୁନି ଓ ଉପଦେଷ୍ଟା

ମହାଭାରତ ଜରିଆରେ କବି ଜନସାଧାରଣଙ୍କୁ ନାନାଭାବରେ ଉପଦେଶ ଦେଇ ଯାଇଅଛନ୍ତି । ସଭାପର୍ବରେ ମାନବ କି କି ପାପ କଲେ ତାର କି ଫଳ ହୁଏ ଓ କି ଉପାୟରେ ପାପ ନଷ୍ଟ ହୁଏ, ତାହା ଦର୍ଶାଇଅଛନ୍ତି । ତାଙ୍କ ମତରେ ସମସ୍ତ ପାପର ପ୍ରାୟଶ୍ଚିତ୍ତ ଅଛି; ସେଥିରୁ ମୁକ୍ତି ବି ଅଛି । ମାତ୍ର ବିଶ୍ୱାସଘାତକତାଜନିତ ପାପର ପ୍ରାୟଶ୍ଚିତ୍ତ ନାହିଁ । ସେ ସର୍ବଦା କର୍ମ ଉପରେ ପ୍ରାଧାନ୍ୟ ଦେଇଅଛନ୍ତି । ଭିକ୍ଷାବୃତ୍ତିକୁ ନିନ୍ଦା କରିଅଛନ୍ତି । କବି କହିଛନ୍ତି—

"ହେ ସଂସାର ଜନମାନେ କେହି ନୁହ ବଶୀ,
କର୍ମ ପୁରୁଷ ଗୋଟିଏ ଜୀବର ଧାରଣୀ ।
ଜନ୍ମ ମଧ୍ୟରେ ଅଟଇ ହୀନକର୍ମ ଭିକ୍ଷା,
ବଳବନ୍ତୁ ଥାଉଁ ଥାଉଁ ଘେନିଲୁ ଏ ଦୀକ୍ଷା ।

**ପୁନଶ୍ଚ ମାନବଜାତିକୁ ସାବଧାନ ବାଣୀ ଶୁଣାଇଛନ୍ତି—**

ଦୁଷ୍ଟ ପୁରୁଷ ଆବର ଭ୍ରଷ୍ଟା ନଷ୍ଟା ଭାର୍ଯ୍ୟା,
ଛେଦକାରୀ ପିତା ଭେଦକାରୀ ମିତ୍ର ଦ୍ୱିଜା ।
କୁସ୍ଥାନ କୁଭୂମି ଆଉ ଅସୁରଙ୍କ ତୀର୍ଥ
ଏମାନଙ୍କୁ ଉପେକ୍ଷନ୍ତି ଧାର୍ମିକ ପଣ୍ଡିତ ।

**କବି ଗୃହସ୍ଥଧର୍ମ ସମ୍ବନ୍ଧରେ କହିଅଛନ୍ତି—**

ରାଜା ବୋଇଲେ ଯେ କୁଳବନ୍ତି ନାରୀ,
ସ୍ୱାମୀର ବିଶ୍ୱାସ କଥା ରଖେ ଗୋପ୍ୟ କରି ।

ଯେଉଁ ନାରୀ ପତିବ୍ରତା ପଦ୍ମିଣୀରମଣୀ,
ପତି ଦୋଷ ନ ଧରଣ ପ୍ରଶଂସା ବଖାଣି ।
ଭର୍ତ୍ତା ହିଁ ମହଇ ସିନା ଭରସା ଆଦୋ'ଳି,

× × ×

ପତିର ଆଦେ'ାଳି ଯେବେ ଭାର୍ଯ୍ୟା ନ ସହିବ,
କେସନେକେ ପତି ପତ୍ନୀ ଗୃହବାସ ହେବ ?"

**କେଉଁମାନଙ୍କୁ ଶାସ୍ତି ଦେବ—**

ଦୁଷ୍ଟ ବ୍ରାହ୍ମଣ ଆବର ଲମ୍ପଟ ବୈରାଗୀ,
ମନ୍ଦ ଭ୍ରଷ୍ଟା କୁଳସ୍ତ୍ରିୟ ତପୀ ଧନଭୋଗୀ ।
ଶାସ୍ତ୍ର ଧର୍ମେ ଏହିମତେ ଜାଣ ଲେଖାଅଛୁ,
ଏମାନଙ୍କୁ ମାଇଲେ ଯେ ପାପ ନାହିଁ କଛୁ ।

କବି ପରନିନ୍ଦାକୁ ପରିହାର କରିବାକୁ ବାରବାର ତାଙ୍କ ଗ୍ରନ୍ଥରେ ସୂଚେଇ ଅଛନ୍ତି—

ସଧକ ଯେ ଜନ ନିନ୍ଦା କରନ୍ତି ନ ଜାଣି,
ରାଜଦଣ୍ଡେ ପରାଜିତ ହୁଅନ୍ତି ସେ ପ୍ରାଣୀ ।
ଶାସ୍ତ୍ର ନିନ୍ଦା କଲେ ଯେଉଁ ନୋହେ ଶାସ୍ତ୍ରେ ବୁଦ୍ଧି,
ସାଗରକୁ ନିନ୍ଦା କଲେ ହୁଏ କୁଷ୍ଟବ୍ୟାଧି ।
ଲକ୍ଷ୍ମୀ ନିନ୍ଦିଲେ ଦରିଦ୍ର ହୋନ୍ତି ଜନ୍ମେ ଜନ୍ମେ,
ଭାରତୀ ନିନ୍ଦିଲେ ଗଜମୂର୍ଖ ହୋନ୍ତି ଜନେ ।
ମଇନ୍ଦକୁ ନିନ୍ଦା କଲେ ହୁଅଇ ବଧିର,
ଔଷଧ ନିନ୍ଦିଲେ ରୋଗ ହୁଅଇ ଅପାର ।
ଗୋରୁ ନିନ୍ଦା କଲେ ହାନି ହୁଅଇ ଯେ କୃଷି
ପୁତ୍ର ନିନ୍ଦା କଲେ ଜନ ହୁଅଇ ନିବଂଶୀ ।
ସ୍ତ୍ରିୟ ନିନ୍ଦା କଲେ ତାର ନୋହେ ଗୃହବାସ,
ମହନ୍ତ ନିନ୍ଦିଲେ ହୁଏ ଅପ୍ରମିତ ଦୋଷ ।
ଆତ୍ମାକୁ କରିଲେ ନିନ୍ଦା ହୁଏ ମହାଦୁଃଖୀ,
ପରନାରୀ କଲେ ନିନ୍ଦା ଜନ୍ମେ ଜନ୍ମେ ଦୁଃଖୀ ।
ଭଲ ନିନ୍ଦା କଲେ ଭଲ ନୁହଇ ପ୍ରାପତ,
ଗୁରୁ ନିନ୍ଦା କଲେ ଦୁଃଖୀ ହୁଏ ଅପ୍ରମିତ ।

କବିଙ୍କ ଉପଦେଶ ମାନି ଚଳିଲେ ଏ ଜଗତରେ ଦୁଃଖ ଅଶାନ୍ତି ନୈରାଶ୍ୟ ଆସିବ ନାହିଁ । ପରନ୍ତୁ ଶାନ୍ତି-ମୈତ୍ରୀରେ ଦେଶ ଆଲୋକିତ ହେବ । ସାରଳା ଦାସ ବାକ୍‌ଦେବୀର ବରପୁତ୍ର । ସେ ଦିବ୍ୟଦ୍ରଷ୍ଟା, ଅନ୍ତର୍ଦୃଷ୍ଟିସମ୍ପନ୍ନ ମହାପୁରୁଷ । ଓଡ଼ିଆ ଜାତିକୁ ସେ ଠିକ୍ ପଥରେ ଚଳିବାକୁ ଆହ୍ୱାନ କରି ଯାଇଅଛନ୍ତି । ଆମ ଜାତୀୟ ଜୀବନର କୌଣସି ଦିଗ ତାଙ୍କର ଦୃଷ୍ଟିକୁ ଏଡ଼ି ପାରିନାହିଁ । ତାଙ୍କର ମହାଭାରତ ଏ ଜାତିର ଅମୂଲ୍ୟ ସମ୍ପଦ ଜାତିର କୋଷନିଧି । ନାନାପ୍ରକାର ବିଷୟବସ୍ତୁରେ ଏ ଗ୍ରନ୍ଥ ଅତୀବ ରମଣୀୟ ହୋଇଅଛି । ଜାତିର ନାନାବିଧ ବିକାଶ ଓ ଅଗ୍ରଗତିରେ ଏ ଯଥେଷ୍ଟ ସହାୟତା କରିଅଛି, ଏଥିରେ ସନ୍ଦେହ ନାହିଁ । ଭାଷା ଶିଖିବାର ଅପୂର୍ବ ଉପାଦାନ ଏ ମହାଭାରତରେ ବହୁ ପରିପୂର୍ଣ୍ଣ । ପରବର୍ତ୍ତୀ ଅନେକ କବି ତାଙ୍କ ଭାଷା ଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ଭାଷା ସ୍ୱତସିଦ୍ଧ ଓ ସୂଚନାମୂଳକ । ଭାଷାତତ୍ତ୍ୱବିତ୍ ଏ ମହାଭାରତରୁ ଭାଷାର ପରିଣତି ସମ୍ବନ୍ଧରେ ତଥ୍ୟ ଆବିଷ୍କାର କରିପାରିବେ । ସାରଳା ଦାସ ପ୍ରକୃତ ଗଣସାହିତ୍ୟ ସୃଷ୍ଟି କରି ଯାଇ-ଅଛନ୍ତି । ତାଙ୍କ ମହାଭାରତ କି ଶିକ୍ଷିତ, କି ଅଶିକ୍ଷିତ, କି ପଣ୍ଡିତ, ପ୍ରତ୍ୟେକ ଶ୍ରେଣୀର ନରନାରୀମାନଙ୍କୁ ପ୍ରଚୁର ଆନନ୍ଦ ଯୋଗାଇଅଛି । ତେଣୁ ସାରଳା ଦାସ ଚିରନ୍ତନ ସାହିତ୍ୟ ସୃଷ୍ଟି କରିଯାଇଅଛନ୍ତି । ସେ ଏ ଜାତିର ନମସ୍ୟ ଓ ପୂଜ୍ୟ ।



# କବି ଜଗନ୍ନାଥ ଦାସ

ପ୍ରତି ସନ୍ଧ୍ୟାରାଣୀର ଶୁଭ ଆଗମନୀ ଶଂଖ ବାଜି ଉଠିବା ସଙ୍ଗେ ସଙ୍ଗେ ଭାଗବତ ଟୁଙ୍ଗୀରୁ ଯେତେବେଳେ "ନମଇଁ ନୃସିଂହ ଚରଣ, ଅନାଦି ପରମ କାରଣ" ପ୍ରଭୃତି ଭାଗବତର ପଦାବଳୀ ପଲ୍ଲୀକଣ୍ଠରେ ଖେଳିଯାଏ, ସେତେବେଳେ ମନ ଜ୍ଞାନ କେଉଁ ଅପରୂପ ରାଜ୍ୟକୁ ଚାଲିଯାଇ ସ୍ୱତଃ ଭକ୍ତକବି ଜଗନ୍ନାଥ ଦାସଙ୍କ ଚରଣ ତଳେ ମୁଣ୍ଡ ନୁଆଁଇ ପରମାନନ୍ଦ ଲାଭ କରିବାକୁ ପ୍ରତ୍ୟେକ ଭାବୁକର ହୃଦୟମନ୍ଦିରରେ ଆଶାଦୀପ ଜଳିଉଠେ । ଭାଗବତ ଭଳି ଏକ ବିରାଟ, ମହାନ୍ ଏବଂ ଦାର୍ଶନିକ ତତ୍ତ୍ୱସମ୍ବଳିତ ଗ୍ରନ୍ଥକୁ ଅତି ସରସ, ସୁନ୍ଦର ଓ ସରଳ ଭାଷାରେ ଅନୁବାଦ କରି ସାରା ଜାତିକୁ ଭାଗବତାମୃତ ପାନ କରିବା ପାଇଁ ଯେଉଁ ସୁବର୍ଣ୍ଣ ସୁଯୋଗ ଦେଇଗଲେ, ଜାତିର ଇତିହାସରେ ତାହା ଚିରସ୍ମରଣୀୟ ରହିବ । ଅତିବଡ଼ୀ ଜଗନ୍ନାଥ ବାସ୍ତବିକ ମାନବ ଜାତିର ଆରାଧ୍ୟ ଦେବତା । ଜଗନ୍ନାଥଙ୍କ ପ୍ରେରଣା ବଳରେ ସମସାମୟିକ ପଣ୍ଡିତମାନଙ୍କର ସମାଲୋଚନା ସତ୍ତ୍ୱେ ଓଡ଼ିଆ ଭାଗବତ ସୃଷ୍ଟିରେ ମନ ବଳାଇଲେ । ମାତୃ ହୃଦୟର ଦୈନ୍ୟ ଆଦର୍ଶ ପୁତ୍ରର ଅନ୍ତର ପ୍ରଦେଶକୁ ବିକ୍ଷୋଭିତ ଓ ମଥିତ କରିବାକୁ ଲାଗିଲା । ଜଗନ୍ନାଥ ମାତାର ସନ୍ତୋଷ ବିଧାନ ନିମନ୍ତେ ସରଳ ଓଡ଼ିଆ ଭାଷାରେ ପରମଶାସ୍ତ୍ର ଭାଗବତକୁ ରୂପଦାନ ଦେଲେ । ସେତେବେଳେ ସଂସ୍କୃତପ୍ରେମୀ ବ୍ୟକ୍ତିମାନେ ସଂସ୍କୃତ ଭାଗବତର ଅଧ୍ୟୟନ ଓ ଶ୍ରବଣରେ ଅପାର ଆନନ୍ଦ ଅନୁଭବ କରୁଥିବା ସ୍ଥଳେ ଅଶିକ୍ଷିତ, ଅର୍ଦ୍ଧଶିକ୍ଷିତ ଓ ସ୍ତ୍ରୀଲୋକମାନେ ସେହିପରି ଭାଗବତର ରସ ଆସ୍ୱାଦନରେ ଅକୃତକାର୍ଯ୍ୟ ହୋଇ ନିରାନନ୍ଦ ଅନୁଭବ କରୁଥିଲେ । କଥିତ ଅଛି ଯେ, ଜଗନ୍ନାଥ ଦାସଙ୍କ ଭଗବତ୍ତାଜନନୀ ଶ୍ରୀ ଜଗନ୍ନାଥ ମନ୍ଦିରରେ ପ୍ରତ୍ୟହ ଭାଗବତ ପାଠ ହେଉଥିବାବେଳେ ଜନୈକ ପଣ୍ଡାଙ୍କ ନିକଟରେ ଭାଗବତର କେତେକ ଅର୍ଥ ଜାଣିବାକୁ ଇଚ୍ଛା କରନ୍ତେ, ପଣ୍ଡା ସାମାନ୍ୟ ସ୍ତ୍ରୀ ଲୋକର ଏତେଦୂର ସ୍ପର୍ଦ୍ଧା ଦେଖି ବିସ୍ମିତ ହେବା ସଙ୍ଗେ ସଙ୍ଗେ ଅତ୍ୟନ୍ତ ବିରକ୍ତି ପ୍ରକାଶ କରି ସରଳା ନାରୀ ପ୍ରାଣରେ ବିଶେଷ ଅଘାତ କରିଥିଲେ । ଅଘାତପ୍ରାପ୍ତା ଜନନୀ ପୁତ୍ର ନିକଟରେ ସମସ୍ତ ବିବରଣୀ ପ୍ରକାଶ କରନ୍ତେ ଅଳ୍ପଦିନ ମଧ୍ୟରେ ଭାଗବତକୁ ଓଡ଼ିଆରେ ଅନୁବାଦ କରି ମାତାଙ୍କର ଦୁଃଖ ଦୂର କରିବାକୁ ସେ ଏକରକମ ପ୍ରତିଜ୍ଞାବଦ୍ଧ ହେଲେ । ତାରି ଫଳରେ ଓଡ଼ିଆ ଭାଗବତର ଜନ୍ମ । ଭାଗବତ ଏକ ଅତି ଉତ୍କୃଷ୍ଟ ଗ୍ରନ୍ଥ । ପଣ୍ଡିତମାନଙ୍କର ବିଦ୍ୱତ୍ତା

କେବଳ ଭାଗବତରେ ହିଁ ପରୀକ୍ଷିତ ହୁଏ । ପ୍ରଗାଢ଼ ପାଣ୍ଡିତ୍ୟ, ସାଧନା, ଅଧ୍ୟବସାୟ ଓ ପ୍ରତିଭା ବଳରେ ହିଁ ଏପରି ଏକ କଷ୍ଟସାଧ୍ୟ ଗ୍ରନ୍ଥର ଭାଷାନ୍ତର କାର୍ଯ୍ୟ ସହଜ ସାଧ୍ୟ ହୋଇ-ପାରେ । ଜଗନ୍ନାଥ ଦାସ ସେହିପରି ଏକ ଅସାଧାରଣ ଧୀଶକ୍ତିସମ୍ପନ୍ନ ପ୍ରତିଭାଶାଳୀ ପଣ୍ଡିତ ଥିଲେ ।

ପ୍ରମାଣ ମିଳେ ଯେ, ଓଡ଼ିଆ ଭାଗବତର ଆତ୍ମପ୍ରକାଶ ଦେଖି ତତ୍କାଳୀନ କେତେକ ଈର୍ଷାପରାୟଣ ପଣ୍ଡିତ ଜଗନ୍ନାଥ ଦାସଙ୍କର ସାହିତ୍ୟିକ ମୃତ୍ୟୁ ଘଟାଇବା ପାଇଁ ବାଧ୍ୟବାଧକଭାବରେ ଆନ୍ଦୋଳନ କରିବାକୁ ବଦ୍ଧପରିକର ହେଲେ ହେଁ ଭାନୁ ଅଗମନରେ କୁଜ୍‌ଝଟିକା ଅପସାରିତ ହେଲ ପରି ତାଙ୍କ ଭାଗବତର ଜ୍ୱଳନ୍ତ ଦୀପ୍ତିରେ ମିଥ୍ୟା ଜାଲ ଅଚିରେ ଛିନ୍ନ ହୋଇଗଲା । ମାଧୁର୍ଯ୍ୟପୂର୍ଣ୍ଣ ହୃଦୟରେ ତତ୍କାଳୀନ ଉତ୍କଳପତିଙ୍କୁ ପ୍ରଭାବିତ କରିବାକୁ ଯାଇ ମଧ୍ୟ କୁଚକ୍ରୀମାନେ ପରାଜିତ ହୋଇ ନୀରବ ରହିଲେ । ପ୍ରତିଭାର ଜୟ ଜୟକାର ଚତୁର୍ଦ୍ଦିଗ ବିକମ୍ପିତ କରିବାକୁ ଲାଗିଲା । ପୁରପଲ୍ଲୀରେ ଭାଗବତର ଦ୍ରୁତ ପ୍ରଚାର ଓ ପ୍ରସାର ଦେଖି ଅନୁଦାର ପଣ୍ଡିତମଣ୍ଡଳୀ ଅସୂୟାନ୍ୱିତ ହୋଇ ତାକୁ "ତେଲି ଭାଗବତ" ବୋଲି ସମ୍ବୋଧନ କରି କଥିତ୍ ପରିମାଣରେ ନିଜ ନିଜ ଈର୍ଷାଭାବର ପରିତୃପ୍ତି ସାଧନ କରିଥିଲେ । ଏଥିରେ ସାଧକ, ଯୋଗୀପ୍ରବର, ତେଜସ୍ୱୀ ଓ କ୍ଷଣଜନ୍ମା ମହାପୁରୁଷ ଜଗନ୍ନାଥ ଦାସ କିଛିଏ ହେଲେ ବିଚଳିତ ହୋଇ ନ ଥିଲେ ।

ବର୍ତ୍ତମାନ ପ୍ରଶ୍ନ ହୁଏ, ତାଙ୍କ ଭାଗବତ କାହିଁକି ଏପରି ଲୋକପ୍ରିୟତା ଅର୍ଜନ କରିଛି ? ଅତିବଡ଼ୀ ଜଗନ୍ନାଥ ଦାସ କେବଳ ଜଣେ ଭାବୁକ, ପଣ୍ଡିତ ଓ ଯୋଗୀ ନ ଥିଲେ । ପରନ୍ତୁ ସେ ଜଣେ ଉଚ୍ଚକୋଟୀର କବି, ରସଜ୍ଞ ଓ ଅନୁବାଦକ ହିସାବରେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ଅସୀମ ଅଭିଜ୍ଞତା ଓ ଦୂରଦର୍ଶିତା ସହ ଉଚ୍ଚକୋଟୀର କଳ୍ପନାକୁଶଳତା ଓ କବିତ୍ୱ ଏକତ୍ର ମିଶିବାରୁ ତାଙ୍କ ସୃଷ୍ଟି ପଦାର୍ଥ ରମଣୀୟତାରେ ବିମଣ୍ଡିତ ହୋଇଅଛି । ଭାବ, ଭାଷାର ଅପୂର୍ବ ବିଳାସରେ ତାଙ୍କ ଭାଗବତ ଓଡ଼ିଆ ପ୍ରାଣର ପରମ ସମ୍ପଦ ହୋଇଅଛି । ସେ ଅନୁବାଦ କଲେ ମଧ୍ୟ ତାକୁ ଏପରି ସରଳ, ତରଳ ଓ କୋମଳ ଭାବରେ ଅନୁବାଦ କରିଛନ୍ତି, ଯାହା ଫଳରେ ସେ କାବ୍ୟ ରୂପରେ ଠିଆ ହୋଇଛି ଓ କି ଶିକ୍ଷିତ, କି ଅଶିକ୍ଷିତ ବ୍ୟକ୍ତି ସେଥିରୁ ରସ ଆହରଣ କରିବାରେ କିଛିଏ ହେଲେ କଷ୍ଟ ଅନୁଭବ କରିପାରେ ନାହିଁ । ସେ ଯେଉଁ ଛନ୍ଦ ବା ବୃତ୍ତ ସାହାଯ୍ୟରେ ଭାଗବତ ଲେଖିଲେ, ସେ ଛନ୍ଦର ଅପୂର୍ବ ମୂର୍ଚ୍ଛନା ପାଠକ ପ୍ରାଣରେ ତନ୍ମୟତା ସୃଷ୍ଟି କରେ । ନବାକ୍ଷରୀ ବୃତ୍ତରେ ରଚିତ ହୋଇଥିବାରୁ ସର୍ବଜନପ୍ରିୟତା ଲାଭ କରିଛି ଓ ପାଠକ ବିଶେଷରେ ଏହା ବିଭିନ୍ନ ଭଙ୍ଗୀରେ ଗୀତ ହୁଏ । ବିଶେଷତଃ ଗ୍ରାମର ଭାଗବତ ପାଠକମାନେ "ହରିହାଟ" ସମୟରେ ବା "ସପ୍ତା" ବସିଲାବେଳେ ଭାଗବତର ଅଧ୍ୟାୟ ଶେଷରେ ଭଣିତ ପଦ ଗାଇଲାବେଳେ ଭାବବିହ୍ୱଳ ହୋଇପଡ଼ନ୍ତି । ଶ୍ରୋତାମାନେ ମଧ୍ୟ

ସେହି ସମୟରେ ମୃଦଙ୍ଗ ବା ଖଞ୍ଜଣୀ ସାହାଯ୍ୟରେ ସେ ପଦକୁ ଲଗାଇ ଅନ୍ୟାନ୍ୟ ପଦ ଯୋଖି ସଙ୍ଗୀତର ପରିବେଷଣ କରିଥାନ୍ତି । ସେ ଦୃଶ୍ୟ ବାସ୍ତବିକ ଦର୍ଶକ ପ୍ରାଣରେ ଅପୂର୍ବ ପୁଲକ ସଞ୍ଚାର କରେ । ସମସ୍ତେ ସେଠି ଏକାକାର । ସମସ୍ତଙ୍କ ପ୍ରାଣରେ ଅସୀମ ଆନନ୍ଦ— ସମସ୍ତେ ଆତ୍ମହରା । ଅତି ସହଜରେ ଭାଗବତର ନୀତି ଓ ତତ୍ତ୍ୱ କଥାମାନ ହୃଦୟଙ୍ଗମ କରି ଆନନ୍ଦଲାଭ କରିବା ଏବଂ ନିଜ ନିଜକୁ ନୈତିକ ମାର୍ଗରେ ପରିଚାଳିତ କରିବାର ପରିଷ୍କାର ପଥ ପାଇବା ଉତ୍କଳବାସୀ ପକ୍ଷରେ କମ ଗୌରବର ବିଷୟ ନୁହେଁ । ସର୍ବଜନବୋଧ ଭାଷାରେ ଦାର୍ଶନିକ ତତ୍ତ୍ୱର ଅବତାରଣା ବାସ୍ତବିକ ଭାଗବତକୁ ଜନପ୍ରିୟ କରିଅଛି । ତେଣୁ ଆଜି ସାଧାରଣ ଲୋକେ କଥା କଥାକେ ଭାଗବତରୁ ଉପଦେଶାତ୍ମକ ଓ ନୀତିମୂଳକ ପଦମାନ ଉଦ୍ଧାର କରି ନିଜକୁ ଧନ୍ୟ ମନେକରନ୍ତି । ଭାଗବତ ଆମ ଜାତୀୟ ପ୍ରାଣରେ ଏପରି ଏକ ସାର୍ବଜନୀନ ଭାବ ସୃଷ୍ଟି କରିଛି, ଯାହା ଫଳରେ ଆଜି ମଧ୍ୟ ପୁରପଲ୍ଲୀରେ ଜନସାଧାରଣ ଏକ ମନୋହର ନୀତିରେ ନିଜକୁ ପରିଚାଳିତ କରେ । ସେମାନଙ୍କର ପଠନଶକ୍ତି ଓ ପଠନେଚ୍ଛା ବୃଦ୍ଧି କରିବାରେ ଏବଂ ନୈତିକତା ପ୍ରସାରିତ କରିବାରେ ଏ ଗ୍ରନ୍ଥ କମ୍ ସାହାଯ୍ୟ କରିନାହିଁ । ଆଜି ସେହି ନୈତିକତା ଲୋପ ପାଇବାକୁ ବସିଲଣି । ଯାହା ଫଳରେ ଜାତିର ପ୍ରାଣରେ ଜଡ଼ତା ଓ ଅନୁଦାର ଭାବ ଚାଲିଆସିଛି । ତଥାପି ଭାଗବତର ଅତୁଳ ପ୍ରଭାବ ଏ ପର୍ଯ୍ୟନ୍ତ ଜାତିପ୍ରାଣରୁ ସମ୍ପୂର୍ଣ୍ଣରୂପେ ଅପସାରିତ ହୋଇନାହିଁ । ଜଗନ୍ନାଥଙ୍କର ଉଦ୍ଦେଶ୍ୟ, କିପରି ଏହି କଳୁଷିତ ସମାଜ ଧର୍ମପଥକୁ ଆସି ସରଳ, ନିର୍ମଳ, ଓ ଶାନ୍ତିମୟ ଜୀବନ ଯାପନ କରିବ । କିପରି ଜାତି ଆଧ୍ୟାତ୍ମିକ ଶକ୍ତିରେ ଶକ୍ତିମାନ ହୋଇ ଜଗତ ସମକ୍ଷରେ ଏକ ନୂତନ ଆଦର୍ଶ ସ୍ଥାପନ କରିବ । ଏହି ଉଦ୍ଦେଶ୍ୟରେ ଅନୁପ୍ରାଣିତ ହୋଇ ସେ ସରଳ, ସାବଲୀଳ ଭାଷା, ମଂଜୁ ଉପମା, କମନୀୟ ଶବ୍ଦଯୋଜନା, ସର୍ବୋପରି ତାଙ୍କ ବହୁମୁଖୀ ପ୍ରତିଭା ବଳରେ ସଂସ୍କୃତ ଭାଗବତର ବିଷୟବସ୍ତୁକୁ ନୂଆ ରୂପରେ ନୂତନ ଭଙ୍ଗୀରେ ଜୀବନ୍ୟାସ ଦେଇଗଲେ । ତେଣୁ ଆଜି ଭାଗବତ କେବଳ ଏକ ପରମ ଶାସ୍ତ୍ର ଭାବରେ ନୁହେଁ, ଅଧିକନ୍ତୁ ପୂଜନୀୟ ବସ୍ତୁ ହିସାବରେ ଉତ୍କଳର ପୁରପଲ୍ଲୀରେ ସମ୍ମାନିତ । ବିପଦ ଆପଦ ସମୟରେ ସରଳପ୍ରାଣ ବ୍ୟକ୍ତିମାନେ ଭାଗବତକୁ ଧ୍ୟାନ କରନ୍ତି । ତାଙ୍କର ବିଶ୍ୱାସ—ଭାଗବତ ହିଁ ଈଶ୍ୱର ଭଳି ବ୍ୟକ୍ତିକୁ ବିପଦବେଳେ ରକ୍ଷା କରେ, ବ୍ୟକ୍ତି ପ୍ରାଣରେ ଶାନ୍ତିବାରି ସିଞ୍ଚନ କରେ । ଏହି ଭାବ ଅନ୍ୟ କୌଣସି ପ୍ରଦେଶରେ ଦେଖାଯାଏ ନାହିଁ । କବି ଓ ଅନୁବାଦକ ଭକ୍ତ ଜଗନ୍ନାଥ ଦାସଙ୍କ ଭାଗବତ କେବଳ ପୂଜ୍ୟ ଆରାଧ୍ୟବସ୍ତୁ ନୁହେଁ, ସ୍ୱୟଂ କବି ହିଁ ଆରାଧ୍ୟ, ପୂଜ୍ୟ । ଏ ଜାତି ଧର୍ମପ୍ରାଣ । ଏ ଜାତିର ଆଧ୍ୟାତ୍ମିକ ପରମ୍ପରା ଅଛି । ତେଣୁ ସେହି ଭାବକୁ ପୁନର୍ଜୀବିତ କରିବା ପାଇଁ ସତେ କି ଜଗନ୍ନାଥ ଭଗବାନଙ୍କ ଅବତାର ରୂପେ ଉତ୍କଳରେ ଅବତୀର୍ଣ୍ଣ ହୋଇଥିଲେ । ସେ ଥିଲେ ଆର୍ଯ୍ୟସଂସ୍କୃତି ଓ ଆଧ୍ୟାତ୍ମିକ ପରମ୍ପରାର ଶ୍ରେଷ୍ଠ ପ୍ରତୀକ—ତାଙ୍କର ସାଧୁତା ଓ ଯୋଗୀଜନ-

ସୁଲଭତା ଏବଂ ଭକ୍ତିଭାବ ଭାଗବତର ପ୍ରତି ଛନ୍ଦରେ ପ୍ରକାଶମାନ । ସେଥିଲାଗି ତାଙ୍କ ଶବ୍ଦବିନ୍ୟାସର ଭଙ୍ଗୀ ସ୍ୱତନ୍ତ୍ର । ତାଙ୍କ ପୂର୍ବରୁ ଅବଶ୍ୟ ସାରଳା ଦାସ ଭାଷାକୁ ସରଳ କରି ଦେଇଥିଲେ । ମାତ୍ର ଜଗନ୍ନାଥ ଦାସ ସେ ଭାଷାକୁ ଆହୁରି ସରଳ, କୋମଳ ଏବଂ ମାର୍ଜିତ କରି ଉପଯୁକ୍ତ ଭାବର ଉପଯୁକ୍ତ ବାହକ ରୂପେ ତାକୁ ଠିଆ କରାଇଲେ । ଏ ଭାଷା ଗଣଭାଷା । ତାଙ୍କ ଭାଗବତ ଉତ୍କଳରେ ନିରକ୍ଷରତା ଦୂରୀକରଣରେ ଯଥେଷ୍ଟ ସାହାଯ୍ୟ କରିଥିଲା । ପୂର୍ବବର୍ତ୍ତୀ ବହୁ କବି, ବିଶେଷତଃ ଉତ୍କଳମଣି ଗୋପବନ୍ଧୁ ଜଗନ୍ନାଥଙ୍କ ଭାଗବତର ଭାଷା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ସେ ଦୈନିକ ଭାଗବତ ପାଠ କରୁଥିଲେ । ଏବେ ବି ଓଡ଼ିଶାର ବହୁ ବ୍ୟକ୍ତି, ବହୁ ଲେଖକ ଓ କବି ଅଛନ୍ତି, ଯେ କି ପ୍ରତ୍ୟହ ଭାଗବତ ପାଠ କରି ସେଥିରୁ ଅଫୁରନ୍ତ ଆନନ୍ଦ ଅନୁଭବ କରିଥାନ୍ତି ।

ଅନେକେ ତାଙ୍କୁ କେବଳ ଜଣେ ଉଚ୍ଚକୋଟୀର ଅନୁବାଦକ ବୋଲି କହିଥାନ୍ତି । କିନ୍ତୁ ଜଗନ୍ନାଥ ଦାସଙ୍କର ଓଡ଼ିଆ ଭାଗବତ କେବଳ ଅନୁବାଦ ନୁହେଁ, ଏଥିରେ କବି ସ୍ୱୀୟ କଳ୍ପନା ବଳରେ ଅନେକ ବିଷୟରେ ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛନ୍ତି । ତାଙ୍କର କବିତ୍ୱ ସ୍ଥଳେ ସ୍ଥଳେ ପ୍ରକାଶମାନ ।

କାବ୍ୟିକ ପ୍ରକାଶଭଙ୍ଗୀର ଉଦାହରଣ ଏଠାରେ ପ୍ରଦତ୍ତ ହେଲେ ସୁଧୀ ପାଠକ ଏହାର ସତ୍ୟତା ଉପଲବ୍‌ଧି କରିପାରିବେ ।

ଗୋପଲୀଳାର ସପ୍ତମ ଅଧ୍ୟାୟରେ ରୂପ ବର୍ଣ୍ଣନା । କବି ଲେଖିଲେ—

ଚନ୍ଦ୍ର ପ୍ରତିମା ପ୍ରାୟେ ଠୁଳ । ଯେସନେ ସିନ୍ଧୁର ହିଲ୍ଲୋଳ ॥
ରୂପେ କି ପଞ୍ଚାନ୍ତର ଦେବା । ଦେଖି ଚଳିଦେ ସୁରଦେବା ॥
କର୍ଣ୍ଣେ ଶୋଭିତ ବେନି କାପ । କ୍ଷଣ କ୍ଷଣକେ ମୋହେ ରୂପ ॥
କବରୀ ଶୋଭି ଫୁଲମାଳେ । ସୁନ୍ଦର ଅଳକା କପାଳେ ॥
ପୃଥୁ ନିତମ୍ବ କୁଚଭାର । ମଧ୍ୟେ ସିଂହକୁ ପଞ୍ଚାନ୍ତର ॥

ପୁତ୍ର ଜନ୍ମ ଦେଖି ଯଶୋଦାର କି ଆନନ୍ଦ—

ଚେତ ଲଭିଲି ନନ୍ଦରାଣୀ ।
ଚାହାଁଇ ଉଠି ସୁଲକ୍ଷଣୀ ॥

ଚେତ; ଚାହାଁଇ ଏଗୁଡ଼ିକ ଗାଢ଼ସିଦ୍ଧ—ଏ ଭାଷାରେ କଳ୍ପନା ଅଛି । ଏହା କବିତ୍ୱବ୍ୟଞ୍ଜକ । କବିଙ୍କ ନୀତିଉପଦେଶାତ୍ମକ ଛନ୍ଦଗୁଡ଼ିକ ପାଠକଲେ କବିଙ୍କ ଅସାଧାରଣ ଅନୁବାଦ ଶକ୍ତିର ପରିଚୟ ମିଳେ । ଏଥିରେ ମଧ୍ୟ କାବ୍ୟସୁଲଭ ପ୍ରକାଶଭଙ୍ଗୀ ବିଦ୍ୟମାନ । ବ୍ରହ୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଇ କବି କହିଛନ୍ତି—

ସ୍ଥୂଳ ଶରୀରେ ବୁଝିବଲେ । ମନକୁ ସ୍ଥାପିବ କଷ୍ଟଲେ ॥
ସୁଖେ ବସିବ ସ୍ଥିରାସନେ । ସ୍ଥୂଳବାଣୀରେ ଯୋଗଧ୍ୟାନେ ॥
ଯୁବତୀ ଜନ ଅଗ୍ନିପ୍ରାୟ । ପୁରୁଷ ଦେହ ଘୃତକୁମ୍ଭ ॥
ଏଣୁ ଯୁବତୀ ଦୂର କର । ଧର୍ମ ସାଧିବ ବ୍ରହ୍ମଚାରୀ ॥
ଇନ୍ଦ୍ରିୟ ଆଦରକର ବନ୍ଧ । ଚଞ୍ଚଳ ମନ ହୃଦେ ରୁନ୍ଧ ॥
ସ୍ତ୍ରୀବଶ ଲୋକଙ୍କର ମେଳେ । ସଙ୍ଗ ନ ଥିବ ସର୍ବକାଳେ ॥

କବି କେବଳ ଧର୍ମପ୍ରଚାର କରି ସନ୍ତୁଷ୍ଟ ନୁହନ୍ତି । ଦେଶର ସହସ୍ର ସହସ୍ର ଧର୍ମ-ପ୍ରାଣବ୍ୟକ୍ତି ଓ ଭକ୍ତ ସୃଷ୍ଟି କରିବା ତାଙ୍କର ଚରମ ଉଦ୍ଦେଶ୍ୟ ଥିଲା । ଗାର୍ହସ୍ଥ୍ୟଧର୍ମର ମହତ୍ତ୍ୱ ତାଙ୍କ ଗ୍ରନ୍ଥରେ ପରିଦୃଷ୍ଟ—

ସଂସାର କାଳେ ପତ୍ନୀ ସଙ୍ଗେ । ରମିବ ଅପତ୍ୟ ସଂଯୋଗେ ॥
ତାହା ସଙ୍ଗମ ଋତୁମତେ । କେବଳ ପୁତ୍ର ଜନ୍ମ ଅର୍ଥେ ॥
ଅନ୍ୟଥା ରତି ସୁଖ ମତେ । ପ୍ରସଙ୍ଗ ନ କର ଏକାନ୍ତେ ॥
ଜୀବର ସ୍ୱଧର୍ମ ଏ ବାଣୀ । ସକଳ ବେଦ ବାକ୍ୟ ଭଣି ॥
ଏହା ନ ବୁଝି ମୂଢ଼ ପ୍ରାଣୀ । ଦୁଃଖକୁ ସୁଖ ପ୍ରାୟ ମଣି ॥
କରଇ ଜ୍ଞାନହୀନ କର୍ମ । ଏଣୁ ସଂସାରେ ହୁଏ ଭ୍ରମ ॥
ଏ ପୁତ୍ର ଦାରା ବନ୍ଧୁ ସଙ୍ଗ । ଯେସନେ ସମୁଦ୍ର ତରଙ୍ଗ ॥
ପଥିକ ଯେହ୍ନେ ବୃକ୍ଷତଳେ । ଶ୍ରମେ ବସନ୍ତି ଏକମେଳେ ॥
ଶ୍ରମ ସରିଲେ ଯେଝା ମତେ । ଚଳନ୍ତି ବୃକ୍ଷ ଛାଡ଼ି ଏଥେ ॥
ଯେସନେ ପ୍ରାଣୀ ନିଦ୍ରାଗତେ । ସମ୍ପଦ ଦେଖେ ସ୍ୱପ୍ନଗତେ ॥
ପୁତ୍ର କଳତ୍ର ବନ୍ଧୁ ଯିଏ । ନ ବୋଲ ମୋହର ମୋହର ॥

ଇତ୍ୟାଦି ଛନ୍ଦ ଗୃହୀପକ୍ଷରେ ଗ୍ରହଣୀୟ । ତାଙ୍କୁ କର୍ମପ୍ରବଣ କରିବାକୁ ସେ ଆଗ୍ରହୀ । ତେଣୁ ସେ କହୁଛନ୍ତି—

କର୍ମ କ୍ଷୟଣ ଦେହ ସହେ । ଅରଣ୍ୟେ ଅଜଗର ପ୍ରାୟେ ॥
ମନ ମୋହର ନିଜ ଗୁରୁ । ଉଦ୍ଧବ କେତେ ଭୁ ପଚାରୁ ॥
ପ୍ରାଣୀର ଭଲ ମନ୍ଦ ବାଣୀ । ମରଣ କାଳେ ତାହା ଜାଣି ॥

ଏହି ଭାଗବତର ବାଣୀ ହିଁ ଜାତିପକ୍ଷରେ ମହୌଷଧି—

ଶ୍ରୀଭାଗବତର ଚରିତ । ଅମୃତ ରସମୟ ଗୀତ ॥
ଶ୍ରୀକୃଷ୍ଣଲୀଳାର ଚରିତ । ମୁଖପଙ୍କଜୁ ହୋଇ ଜାତ ॥
କର୍ଣ୍ଣ ଯୁଗଳେ ପାନ କରି । ହେଲେ ତରିବ ଭବବାରି ॥

ଇତ୍ୟାଦି ଛନ୍ଦରେ ପ୍ରକାଶଭଙ୍ଗୀ ବଡ଼ ସରଳ ତରଳ ଓ ମର୍ମସ୍ପର୍ଶୀ । ଜାତିକୁ ବିଶ୍ୱାସପ୍ରବଣ କରିବାକୁ ସେ ଚେଷ୍ଟିତ ।

ଶ୍ରୀକୃଷ୍ଣଙ୍କର ସ୍ୱରୂପ ବର୍ଣ୍ଣନାରେ କବି କହୁଛନ୍ତି—

ବ୍ରହ୍ମାଣ୍ଡ ମାଳ ମାଳ ହୋଇ । ତୋ ଲୋମମୂଳେ ଛନ୍ତି ରହି ॥
ଦୁଷ୍ଟ ନିବାରି ସନ୍ଥ ପାଳୁ । ତୁ ନାଥ ପରମ ଦୟାଳୁ ॥

ଶରୀରତତ୍ତ୍ୱ ଓ ଯୋଗସାଧନ ବା ଧ୍ୟାନତତ୍ତ୍ୱ ବିଷୟରେ ବର୍ଣ୍ଣନା କରିବାକୁ ଯାଇ କବି ପ୍ରକାଶ କରିଛନ୍ତି—

ବାୟସ୍ତରି ସହସ୍ର କଳି ନାଡ଼ି । ହୃଦକମଳ ମଧ୍ୟେ ବେଢ଼ି ॥
ପ୍ରାଣ ରହଇ ଯାଙ୍କ ମଧ୍ୟେ । ଅନ୍ନ ରସ ମୂଳ ଭେଦେ ॥

ଧ୍ୟାନତତ୍ତ୍ୱ—

ବୋଲନ୍ତି ପ୍ରଭୁ ଜଗନ୍ନାଥ । ଶୁଣ ଉଦ୍ଧବ ଧ୍ୟାନତତ୍ତ୍ୱ ॥
ସମ ଆସନେ ବସି ଧୀରେ । ସମୀର ସମ କଳେବରେ ॥
ଜାନୁ ଯୁଗଳେ ବେନିପାଣି । ଦୃଢ଼େ ସ୍ଥାପିବ ବେଳ ଜାଣି ॥
ବେନି ନୟନ ନାସା ଅଗ୍ରେ । ନିଶ୍ଚଳେ ସ୍ଥାପିବ ସମଗ୍ରେ ॥
ପବନ ତୋଳି ନାସା ଦ୍ୱାରେ । ପୂରକ କୁମ୍ଭକ ପ୍ରକାରେ ॥
ଅଳପ ଅଳପ ସାଧନେ । ଚିତ୍ତ ସ୍ଥାପିବ ସଯତନେ ॥
ଓଁକାର ପବନ ନିଶ୍ଚଳୁଁ । ତୋଳିବ ହୃଦୟ କମଳୁଁ ॥
ଉତ୍ତମ ଘଣ୍ଟାନାଦ ସ୍ୱନେ । ମନ ପବନ ଏକ ଧ୍ୟାନେ ॥
ମୃଣାଳସୂତ୍ର ମାର୍ଗେ ଧରି । ନିଶ୍ଚଳେ ଅନାହତେ ପୂରି ॥
ଲବ ନିମିଷ ଦଣ୍ଡ ଘଡ଼ି । ନିତ୍ୟେ ସାଧିବ ଦୁଃଖେ ପଡ଼ି ॥
ଏ ରୂପେ ଅନ୍ତର ବାହାରେ । ନିତ୍ୟ ସାଧିବ ନିରନ୍ତରେ ॥
ଏମନ୍ତ ସାଧି ଏକମାସେ । ପ୍ରାଣ ପବନ ସ୍ଥାପି ବସେ ॥
ହୃଦୟପଦ୍ମ ମଧ୍ୟଭାଗେ । ଯେ ଅଷ୍ଟଦଳ ଅଷ୍ଟଭାଗେ ॥
ମଧ୍ୟ ପାଖୁଡ଼ା ତାର ଶିଖେ । ନିତ୍ୟ ଲମ୍ବଇ ଅଧୋମୁଖେ ॥
ଧ୍ୟାନେ ଚିନ୍ତିବ ହୃଦମଧ୍ୟେ । ଯେ ଅଷ୍ଟଦଳ ତାର ଊର୍ଦ୍ଧ୍ୱେ ॥
ସୂର୍ଯ୍ୟମଣ୍ଡଳ ଚିନ୍ତା କରି । ଚନ୍ଦ୍ର ମଣ୍ଡଳ ହୃଦେ ଭରି ॥
ତାହାର ମଧ୍ୟେ ହୁତାଶନ । ତା ମଧ୍ୟେ ସୁବର୍ଣ୍ଣ ଆସନ ॥
ତାର ଉପରେ ଦିବ୍ୟ ରୂପ । ଚିନ୍ତିବ ମୋହର ସ୍ୱରୂପ ॥

ଏତଦ୍‌ବ୍ୟତୀତ କୃଷ୍ଣଙ୍କର ରୂପ, ରାମ ମୁଷ୍ଟିକ ଓ କୃଷ୍ଣ ଚାଣୁରର ଯୁଦ୍ଧ ବର୍ଣ୍ଣନା ପୁଣି ଗଡ଼ଦ୍ୱାର ବର୍ଣ୍ଣନାରେ କବି ଅସାମାନ୍ୟ କୃତିତ୍ୱ ଅର୍ଜନ କରିଥିବାର ପରିଦୃଷ୍ଟ ହୁଏ । ତାଙ୍କ ଭାଷା ଆଡ଼ମ୍ବରଶୂନ୍ୟ । ଅଳଙ୍କାରର ଝଙ୍କାର ନାହିଁ । ବରଂ ଦାସ୍ୟଭାବ ଭାଗବତର ଅଧିକାଂଶ ସ୍ଥାନରେ ପ୍ରକଟିତ ହୋଇଅଛି । ସେ ଜାତୀୟ କବି, ଜାତୀୟ ମଙ୍ଗଳ ସାଧନ ତାଙ୍କର ଏକମାତ୍ର ବ୍ରତ ଥିଲା । ଉଦାରତା ଏବଂ ବ୍ୟାପକ ଦୃଷ୍ଟି ବଳରେ ସେ କେବଳ ଓଡ଼ିଆ ଜାତି ନାହିଁକି, ସମଗ୍ର ମାନବ ସମାଜ କପରି ପବିତ୍ର ଓ ଶାନ୍ତିମୟ ଜୀବନଯାପନ କରିବ, ସେ ଦଗରେ ସେ ଲେଖନୀ ଚାଳନା କରି ଯାଇଅଛନ୍ତି । ଯେତେବେଳେ ଯେଉଁ ରସ ବର୍ଣ୍ଣିତ କରିବାକୁ କବି ଚେଷ୍ଟା କରିଅଛନ୍ତି, ସେତେବେଳେ ସେହି ରସର ବର୍ଣ୍ଣନା ପ୍ରସଙ୍ଗୋଚିତ ଓ ଚିତ୍ତାକର୍ଷକ ହୋଇଅଛି । ଏକାଦଶ ସ୍କନ୍ଧରେ କପୋତ ଚରିତ ପାଠକଲେ ଯେ କୌଣସି ପାଷଣ୍ଡର ହୃଦୟ ମଧ୍ୟ କରୁଣ ପ୍ରବାହରେ ଆପ୍ଳୁତ ହୋଇ ଉଠିବ । ସପ୍ତମ ସ୍କନ୍ଧରେ ହିରଣ୍ୟକଶିପୁର ମୃତ୍ୟୁରେ ପ୍ରହ୍ଲାଦଙ୍କ ମୁଖରେ ଯେଉଁ ସ୍ତୁତି ପ୍ରକାଶ କରାଯାଇଛି, ତାହା ପାଠ କଲେ ଯେ କୌଣସି ବ୍ୟକ୍ତିର ହୃଦୟରେ ଭକ୍ତିଭାବର ସଞ୍ଚାର ହେବ । ପରମେଶ୍ୱରଙ୍କ ବିଚିତ୍ର ଲୀଳାର ସୁମୋହନ ପ୍ରକାଶ ଦେଖିଲେ କବିଙ୍କର ଭକ୍ତିଭାବର ନିଦର୍ଶନ ମିଳେ ।

ଉପସଂହାରରେ ଏତିକି କୁହାଯାଇପାରେ ଯେ, ଜଗନ୍ନାଥ ଦାସ ଏକାଧାରରେ କବି, ଅନୁବାଦକ, ସଂସ୍କାରକ, ସାଧକ, ଭକ୍ତ, ପରମଯୋଗୀ ଓ ଦାର୍ଶନିକ ଥିଲେ । ସମଗ୍ର ଉତ୍କଳକୁ ସେ ଦାର୍ଶନିକ ଭାବ-ବନ୍ୟାରେ ସତେ କି ପ୍ଳାବିତ କରି ଯାଇଅଛନ୍ତି । ଧର୍ମଜ୍ଞ, ଭାବୁକ ଏବଂ କାବ୍ୟଶିଳ୍ପୀ ହିସାବରେ ବି ତାଙ୍କର କୃତିତ୍ୱ ସୁପରିସ୍ଫୁଟ । ଭାଗବତକୁ ଛାଡ଼ି ଦେଲେ ତାଙ୍କର ଅନ୍ୟାନ୍ୟ ଗ୍ରନ୍ଥ ମଧ୍ୟ ଅତ୍ୟନ୍ତ ଉଚ୍ଚକୋଟୀର । ତାଙ୍କର ତୁଳାଭିଣା ଆଗମଶାସ୍ତ୍ର ତତ୍ତ୍ୱରେ ପରିପୂର୍ଣ୍ଣ । ଶରୀରତତ୍ତ୍ୱ, ଅଷ୍ଟାଙ୍ଗଯୋଗ, ପିଣ୍ଡ ଓ ବ୍ରହ୍ମାଣ୍ଡ ତତ୍ତ୍ୱରେ ତାଙ୍କ ଗ୍ରନ୍ଥଗୁଡ଼ିକ ପରିପୂର୍ଣ୍ଣ । ବର୍ତ୍ତମାନ ଜାତିର ଯେ ଅବସ୍ଥା; ତାହା ଦେଖିଲେ ମନେହୁଏ ଆଜି ଜାତି ମୃତପ୍ରାୟ । ଜାତିର ଧମନୀରେ ସେ ପବିତ୍ର ରକ୍ତ ସତେ କି ଆଉ ପ୍ରବାହିତ ହେଉନାହିଁ । ଜାତିର ପ୍ରାଣରେ ମୃତ୍ୟୁସଞ୍ଜୀବନୀ ସେଚନ କରି ତାକୁ ଠିକ୍ ପଥରେ ଚାଳିତ କରିବାକୁ ଜାତି ଆଜି ବ୍ୟାକୁଳ ପ୍ରାଣରେ ସେହି ଜଗନ୍ନାଥ ଦାସଙ୍କୁ ଡ଼ାକୁଛି । ଜଗନ୍ନାଥ ! ତୁମେ ଧନ୍ୟ, ତୁମେ ବର୍ତ୍ତମାନ ପୁନର୍ବାର ଏ ଜାତିର ପ୍ରାଣରେ ନବଜୀବନ ସଞ୍ଚାର କରି ଜାତିକୁ ବଳିଷ୍ଠ ଓ ଧର୍ମପରାୟଣ କର । ଏହାହିଁ ଜାତିର କାମନା —

●

# ରହସ୍ୟମଞ୍ଜରୀ ଓ କବି ଦେବଦୁର୍ଲ୍ଲଭ

ବିଶ୍ୱସ୍ରଷ୍ଟାଙ୍କର ଅସରନ୍ତି ଏହି ସୃଷ୍ଟିର ବୈଚିତ୍ର୍ୟ ପ୍ରତି ଦୃଷ୍ଟିପାତ କଲେ ତତ୍ତ୍ୱ-ଜିଜ୍ଞାସୁର ହୃଦୟ ଯେପରି ରହସ୍ୟମୟ ହୋଇଉଠେ ଏବଂ ମନରେ ଜାଗେ ଅସଂଖ୍ୟ ପ୍ରଶ୍ନବାଚୀ, ସେହିପରି କବି ବା ସାହିତ୍ୟିକ ଯେତେବେଳେ ବାହ୍ୟ ଜଗତର ସମସ୍ତ ମୋହମାୟା ତଥା ବନ୍ଧନରୁ ମୁକ୍ତ ହୋଇ ଏକ ନିର୍ବିକଳ୍ପ ମହିମାଦୀପ୍ତ କାବ୍ୟସଂସାରରେ ବିଚରଣ କରେ, ସେତେବେଳେ ତାର ହୃଦୟ ମଧ୍ୟ ରହସ୍ୟ-ପୂର୍ଣ୍ଣ ହୋଇଉଠେ । କାମନାର ଅଜସ୍ର ପ୍ରଶ୍ନବାଚୀ ନେଇ ସେ ଯେଉଁ ସୃଷ୍ଟି କରିଯାଏ, ତା'ରି ମଧ୍ୟରେ ସେ ପୁଣି ଖୋଜିବସେ ତାର ଉତ୍ତର । ସେହି ଉତ୍ତର ପାଇ କବି ନୀରବ ହୁଏ ନାହିଁ । ଯେଉଁ କାବ୍ୟାମୋଦୀଙ୍କ ପାଇଁ ଲେଖନୀ ତାର ତତ୍ପର ହୋଇ ଉଠିଥିଲା, ସଜୀବ ହୋଇ ସେହିମାନଙ୍କ ଆଗରେ ସେ ବାଢ଼ିଦିଏ ରହସ୍ୟର ଅଭିନବ ମଞ୍ଜରୀ । ତେଣୁ ଯଥାର୍ଥରେ କୁହାଯାଇଅଛି, ସ୍ରଷ୍ଟା ଓ ସୃଷ୍ଟି ନ୍ୟାୟରେ କବି ଓ କାବ୍ୟର ନିଗୂଢ଼ ସଂପର୍କ ବିଦ୍ୟମାନ ।

ଏହି ପରିପ୍ରେକ୍ଷୀରେ ଦେବଦୁର୍ଲ୍ଲଭଙ୍କ ଅମର କୃତି ରହସ୍ୟମଞ୍ଜରୀର ଆଲୋଚନା ପୂର୍ବରୁ ଆମକୁ ପ୍ରଥମେ ଏହାର ନାମକରଣରେ ଯାଥାର୍ଥ୍ୟ ପ୍ରତି ଦୃଷ୍ଟି ନିକ୍ଷେପ କରିବାକୁ ହେବ । କାବ୍ୟର ସ୍ୱରୂପ ନିର୍ଦ୍ଦେଶ କରି କବି ଦୀନକୃଷ୍ଣ ତାଙ୍କର ପ୍ରସିଦ୍ଧ କାବ୍ୟ-ଗ୍ରନ୍ଥ ରସ-କଲ୍ଲୋଳରେ କହିଅଛନ୍ତି-"କବିତା ବନିତା କବି ତା ପିତା ।" ଯଥାର୍ଥରେ କାବ୍ୟ କବିର ମାନସନନ୍ଦିନୀ । ପିତାମାତା ଯେପରି ନିଜର ରୁଚି ଅନୁସାରେ ସ୍ୱୀୟ ପୁତ୍ର କନ୍ୟାମାନଙ୍କର ନାମକରଣ କରିଥାନ୍ତି, କବି ସେହିପରି ସ୍ୱରଚିତ କାବ୍ୟ କବିତାର ନାମକରଣ କରିଥାଏ । ମାତ୍ର ଏ ଉଭୟ କ୍ଷେତ୍ରରେ ପାର୍ଥକ୍ୟ ଏତିକି ଯେ, କବିର ନାମକରଣ ସାଧାରଣ ଜନକ-ଜନନୀଙ୍କର ନାମକରଣ ପରି ଅହେତୁକ ବା ଅମୂଳକ ନୁହେଁ । ସେ ସ୍ୱୀୟ କାବ୍ୟର ଧର୍ମ ଓ ଗୁଣାନୁସାରେ ନାମକରଣ କରିଥାଏ ।

ଦେବାଳୟର ମୁଖଶାଳା ସର୍ବପ୍ରଥମେ ଯେପରି ଦର୍ଶକର ନୟନ ମନ ଆକର୍ଷଣ କରିଥାଏ, କାବ୍ୟ ପ୍ରବେଶ ପୂର୍ବରୁ କାବ୍ୟର ନାମ ସେହିପରି ପାଠକ ମନରେ ସୃଷ୍ଟିକରେ କାବ୍ୟପାଠ ନିମିତ୍ତ ଅପୂର୍ବ ଉତ୍ସାହ ଓ ଉତ୍କଣ୍ଠା । ସେଥିପାଇଁ ରହସ୍ୟମଞ୍ଜରୀର ସ୍ରଷ୍ଟା ଦେବଦୁର୍ଲ୍ଲଭ ଅତ୍ୟନ୍ତ ଚତୁରତା ଓ ଦକ୍ଷତାର ସହିତ କାବ୍ୟାରମ୍ଭରେ ଗ୍ରନ୍ଥର ନାମକରଣର ସୂଚନା ଦେଇ କହିଅଛନ୍ତି—

"ନନ୍ଦନନ୍ଦନ ଶ୍ରୀମଧୁସୂଦନ ମନ ମୋର କଲେ ଉଲ୍ଲାସ
ଅତ ରହସ୍ୟରେ ରହସ୍ୟ ମଞ୍ଜରୀ ନାମରେ ଗୀତ ପ୍ରକାଶ"

ରହସ୍ୟମଞ୍ଜରୀର ରହସ୍ୟ ଉଦ୍‌ଘାଟନ ପୂର୍ବରୁ ଆମକୁ 'ରହସ୍ୟ' ଶବ୍ଦର ସାହିତ୍ୟିକ ସ୍ଥିତି ସମ୍ବନ୍ଧେ ଅବହିତ ହେବାକୁ ପଡ଼ିବ । ଆଧୁନିକ ଯୁଗର ଆଲୋଚକମାନେ ସାହିତ୍ୟ କ୍ଷେତ୍ରରେ 'ରହସ୍ୟବାଦ' ନାମକ ଯେଉଁ ବାଦ ବା ismର କଳ୍ପନା କରିଛନ୍ତି, ତାର ସାରମର୍ମ ହେଉଛି ଜଗତ ସମ୍ବନ୍ଧରେ ମନୁଷ୍ୟର ଅନନ୍ତ ଜିଜ୍ଞାସା । ସୃଷ୍ଟିର ପ୍ରାକ୍‌କାଳରୁ ମାନବ ମନରେ ଏହି ଜିଜ୍ଞାସା ବା ରହସ୍ୟ ଏକ ସ୍ୱତନ୍ତ୍ର ଆସନ ଅଧିକାର କରି ଆସିଛି । ଏ ଜିଜ୍ଞାସା ସେଥିପାଇଁ କେବଳ ମନୁଷ୍ୟ ମନରେ ଖାଲି ନୁହେଁ, ସାହିତ୍ୟରେ, ବିଜ୍ଞାନରେ ଓ ଦର୍ଶନରେ ମଧ୍ୟ ଏକ ଅଭିନବ ରୂପରେ ଆତ୍ମପ୍ରକାଶ କରି ଆସିଛି । ଯାହା ଫଳରେ ଈଶ୍ୱର ସୃଷ୍ଟି ପ୍ରକ୍ରିୟା, ପ୍ରକୃତି ସହିତ ମାନବର ସମ୍ବନ୍ଧ ଆଦି ରହସ୍ୟକୁ କେନ୍ଦ୍ର କରି ପୃଥିବୀର ବହୁ ସାହିତ୍ୟ ଗ୍ରନ୍ଥ, ଦାର୍ଶନିକ ସଜୀବ ହୋଇଉଠିଛନ୍ତି । ତେଣୁ ବିଶ୍ୱସାହିତ୍ୟର ଏକ ଆଞ୍ଚଳିକ ସଂସ୍କରଣ ଓଡ଼ିଆ ସାହିତ୍ୟର ସାଧକ କବି ଦେବଦୁର୍ଲ୍ଲଭଙ୍କ ମନରେ ରହସ୍ୟ ଜାଗିବାରେ ବୈଚିତ୍ର୍ୟ କିଛି ନାହିଁ ।

ପୁଣି ଈଶ୍ୱର ଓ ମନୁଷ୍ୟ ମଧ୍ୟରେ ଥିବା ସମ୍ପର୍କକୁ କେନ୍ଦ୍ର କରି ଧର୍ମ ଗଢ଼ି ଉଠେ । ବିଭିନ୍ନ ଆବରଣ ତଥା ଆଭରଣ ଭିତରେ ଧର୍ମ ନାନା ନାମ ତଥା ସ୍ୱରୂପ ଲାଭ କରିଥିଲେ ହେଁ, ସେ ସମସ୍ତର ମୌଳିକ ଲକ୍ଷ୍ୟ ଯେ ସମାନ, ଏଥିରେ ମତଦ୍ୱୈଧର ଅବକାଶ ନାହିଁ । ଏହି ଧର୍ମଜଗତରେ ବୈଷ୍ଣବ ଧର୍ମର ସ୍ଥାନ ସୁପ୍ରତିଷ୍ଠିତ । ଏହି ବୈଷ୍ଣବ ଧର୍ମ ପୁଣି ଉତ୍କଳୀୟ ଓ ଗୌଡ଼ୀୟ ଭେଦରେ ଦ୍ୱିବିଧ । ଏ ଉଭୟ ପନ୍ଥାରେ ରାଧାକୃଷ୍ଣଙ୍କୁ ଯଦିଓ ସ୍ୱୀକୃତି ପ୍ରଦାନ କରାଯାଇଅଛି, ତଥାପି ବିଶ୍ଳେଷଣ ଭଙ୍ଗୀରେ ସେମାନଙ୍କ ପାର୍ଥକ୍ୟ ସୁସ୍ପଷ୍ଟ । ତାହା ବାସ୍ତବରେ ରହସ୍ୟ ବିଜଡ଼ିତ । ବିଶେଷତଃ ଉତ୍କଳୀୟ ବୈଷ୍ଣବ ଧର୍ମର ନିତ୍ୟଲୀଳା, ନିତ୍ୟ ରାଧାକୃଷ୍ଣ, ପିଣ୍ଡ-ବ୍ରହ୍ମାଣ୍ଡ ତତ୍ତ୍ୱ ଇତ୍ୟାଦି ସ୍ୱକୀୟ ରହସ୍ୟରେ ଆବୃତ । ତେଣୁ ସେ ସବୁକୁ କେନ୍ଦ୍ର କରି ଯେଉଁ କାବ୍ୟମଞ୍ଜରୀ ରୂପ ଲାଭ କରିଛି, ତାହାର ନାମ ରହସ୍ୟମଞ୍ଜରୀ ହେବାରେ ବୈଚିତ୍ର୍ୟ କିଛି ନାହିଁ ।

ଏକଦା ଶ୍ରୀକୃଷ୍ଣ ମଣିମୟ ପଲଙ୍କ ଉପରେ ଉପବେଶନ କରିଥିବା ସମୟରେ ରମଣୀ ଶିରୋମଣି ରୁକ୍ମିଣୀ ଶ୍ରୀକୃଷ୍ଣଙ୍କର ମନ ଦୁଃଖର କାରଣ ଜିଜ୍ଞାସା କରିଥିଲେ—

"କିସ ଅର୍ଥେ ପ୍ରଭୁ ହେ ବିରସ ତୁମ୍ଭ ମନ
କେହ୍ନୁଣସି ସୁଖକୁ ନକର ଅବଧାନ

ଦ୍ୱାରବତୀ ଭୁବନେ କେବଣ ସୁଖ କାହିଁ
ସବୁ ସୁଖ ତେଜି ମନ ରମାଇଲ କାହିଁ"

× × ×

ଶ୍ରୀକୃଷ୍ଣଙ୍କର ମନର ରହସ୍ୟର ଦ୍ୱାର ଉଦ୍‌ଘାଟନ କରିବାକୁ ରୁକ୍ମିଣୀ ଯେପରି ଅଧୀର ହୋଇ ଉଠିଥିଲେ, ଅଷ୍ଟପାଟବଂଶୀଙ୍କର ନିୟତ ସେବା, ଦ୍ୱାରିକାପୁରୀ ଭୁବନର ଅଖଣ୍ଡ ଐଶ୍ୱର୍ଯ୍ୟ କୋଳରେ ଲାଳିତ ହୋଇ ମଧ୍ୟ ଶ୍ରୀକୃଷ୍ଣଙ୍କ ଅନ୍ତରରେ ଯେଉଁ ଶୂନ୍ୟତାର ହାହାକାର ସୃଷ୍ଟି ହୋଇଥିଲା, କ'ଣ ହୋଇପାରେ ତା'ର କାରଣ ?

"ଯେବେ ନ କହିବ ପ୍ରଭୁ ଏ ସନ୍ଧି ବଚନ
ମରିବୁଁ ସକଳ ବାମା ସତ୍ୟ ଏ ଆମ୍ଭର ।"

ଅଷ୍ଟପାଟବଂଶୀଙ୍କର ଏହି ଦମ୍ଭିମା ଶୁଣି ଶ୍ରୀକୃଷ୍ଣ ତାଙ୍କ ମନର ରହସ୍ୟ ପ୍ରକାଶ କରିଥିଲେ । ରହସ୍ୟର ଅଫୁରନ୍ତ ମଞ୍ଜରୀ ଶ୍ରୀରାଧା ଯେ ତାଙ୍କ ମନର ଶୂନ୍ୟତାର କାରଣ, ତାହା ହିଁ ସେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ବୁଝାଇଥିଲେ ଅଷ୍ଟପାଟବଂଶୀଙ୍କୁ ଯାହା ରହସ୍ୟମଞ୍ଜରୀ କାବ୍ୟର ସାର ନିର୍ଯ୍ୟାସ ।

## ବିଷୟବସ୍ତୁର ଉପସ୍ଥାପନ ଓ ମୌଳିକତା—

ଯେ କୌଣସି ସାହିତ୍ୟିକ କୃତିରେ ବସ୍ତୁ ବିନ୍ୟାସ ସେହି କୃତିର କଳେବର ସଦୃଶ ଗୃହୀତ ହୋଇଥାଏ । ପିଣ୍ଡ ନ ଥିଲେ ପ୍ରାଣରେ ବର୍ତ୍ତମାନତା ଯେପରି ଅସମ୍ଭବ, କାବ୍ୟର ବସ୍ତୁସମ୍ଭାର ନ ଥିଲେ ରସସୃଷ୍ଟି ସେହିପରି ଅଳୀକ ବୋଲି କହିବାକୁ ହେବ । ସେ ଦୃଷ୍ଟିରୁ 'ରହସ୍ୟମଞ୍ଜରୀ'ର ବିଷୟ ବିନ୍ୟାସ ଆବଶ୍ୟକ । ଉତ୍କଳୀୟ ବୈଷ୍ଣବ ଧର୍ମ ପ୍ରଖ୍ୟାପନ ଓ ରାଧା-କୃଷ୍ଣ ପ୍ରେମର ସ୍ୱରୂପ ପ୍ରଦର୍ଶନ କବିଙ୍କର ମୁଖ୍ୟ ଲକ୍ଷ୍ୟ ହେଲେ ମଧ୍ୟ କବି ଉପସ୍ଥାପନରେ ଯେଉଁ ଅଭିନବ ଶୈଳୀ ଗ୍ରହଣ କରିଛନ୍ତି, ତାହା ବାସ୍ତବରେ ପ୍ରଣିଧାନଯୋଗ୍ୟ । ଉତ୍କଳୀୟ ବୈଷ୍ଣବ ଧର୍ମର ପରମ୍ପରା କ୍ରମେ କବି କାବ୍ୟ ଆରମ୍ଭରେ ବୈଷ୍ଣବଧର୍ମ ଦର୍ଶନର ଶ୍ରେଷ୍ଠ ଦେବତା ଜଗନ୍ନାଥଙ୍କ ବନ୍ଦନା ( ନମସ୍କ୍ରିୟା ) କରି ତା ପରେ ବସ୍ତୁ ନିର୍ଦ୍ଦେଶ କରିଛନ୍ତି ଓ କାବ୍ୟ ମଧ୍ୟରେ ଯେ ପ୍ରସଙ୍ଗ କ୍ରମେ ସାଧୁଙ୍କର ଗୁଣ କୀର୍ତ୍ତନ ଓ ଖଳନିନ୍ଦା ମଧ୍ୟ କରିବାକୁ ଭୁଲିଯାଇ ନାହାନ୍ତି । ଏ ସବୁ ସତ୍ତ୍ୱେ ମଧ୍ୟ ସେ ସ୍ୱୀୟ ସ୍ୱକୀୟତା ରକ୍ଷା କରି ପାରିଛନ୍ତି । ଚନ୍ଦ୍ରସେଣା ଜନ୍ମ ବୃତ୍ତାନ୍ତ ଓ ଅନ୍ୟାନ୍ୟ ଗୋପାଳ-ମାନଙ୍କର,ଜନ୍ମ ରହସ୍ୟ ଓ ନିତ୍ୟକୃଷ୍ଣଙ୍କର ଦଶଭୁଜତ୍ୱ ଇତ୍ୟାଦି କବିଙ୍କର ଏକାନ୍ତ କଳ୍ପନାପ୍ରସୂତ । ଏ ସନ୍ଦର୍ଭରେ ହାଲେ କୌଣସି ପାଠକ ସନ୍ଦେହ ପ୍ରକାଶ କରି ଶାସ୍ତ୍ରୀୟ ପ୍ରମାଣ ଲୋଡ଼ିପାରେ, ସେଥିପାଇଁ କବି ତାର ସଫେଇ ଦେବାକୁ ଯାଇ କହିଛନ୍ତି—

"ରହସ୍ୟମଞ୍ଜରୀ ଏ ବିଚିତ୍ରମୟ ରସ,
ଏ ସୁଖ ଜାଣିବ ଯେହୁ ବିବେକୀପୁରୁଷ ।
ଅବିବେକୀ ବୋଲିବ ଏ କେଉଁ ପାଠେ ଥିଲା,
ଥିଲା ଯେବେ କବି କିମ୍ପା ଆଗହୁଁ ନକଲା ।
ବିବେକୀ ବୋଲିବେ ଏ ଗୁପତେ ଥିଲା ରହି,
ସରସ୍ୱତୀ ଭଣ୍ଡାରେ ଗୁପତେ ଥିଲା ଥୋଇ ।"

୧୪ଟି ଛାନ୍ଦରେ କାବ୍ୟର କଳେବର ନିର୍ମିତ । ଏହି କଥାବସ୍ତୁକୁ ମୁଖ୍ୟତଃ ଦୁଇଭାଗରେ ବିଭକ୍ତ କରାଯାଇପାରେ । ଯଥା—ପୂର୍ବଭାଗ ଓ ଉତ୍ତର ଭାଗ । ପୂର୍ବଭାଗରେ କୃଷ୍ଣଙ୍କର ଅପୁଷ୍ଟତା ଅନୁଧ୍ୟାନପୂର୍ବକ ମଥୁରାର ଅଷ୍ଟପାଟବଂଶୀଙ୍କର ରୁକ୍ମିଣୀଙ୍କ ମାଧ୍ୟମରେ ଅନୁସନ୍ଧାନ । କାରଣ ସ୍ୱରୂପ କୃଷ୍ଣ ଗୋପୀ ଓ ରାଧାଙ୍କ ବିରହରେ ତାଙ୍କର ଏ ଅବସ୍ଥା ବୋଲି କହିବାରୁ ରାଣୀମାନଙ୍କର ଖେଦୋକ୍ତି ପ୍ରକାଶ, ଜାମ୍ବବତୀଙ୍କର ଅଭିମାନଭରା ଲଘୁ ଆକ୍ଷେପୋକ୍ତି ଭିତରେ ପରକୀୟା ଗୋପୀମାନଙ୍କର ନିନ୍ଦାଗାନ । ଫଳରେ କୃଷ୍ଣ ଗୋପୀ ପ୍ରେମର ମହତ୍ତ୍ୱ ଏବଂ ଶ୍ରେଷ୍ଠତ୍ୱ ପ୍ରଖ୍ୟାପନ କରି ରାଧା ସମେତ ଅନ୍ୟାନ୍ୟ ଗୋପୀ ଯେ ଯଥାର୍ଥରେ ପରକୀୟା ନୁହନ୍ତି ଏବଂ କୃଷ୍ଣଙ୍କର ବିଭିନ୍ନ କଳା ନେଇ ଚନ୍ଦ୍ରସେଣା ଓ ଅନ୍ୟାନ୍ୟ ଗୋପାଳମାନଙ୍କର ଜନ୍ମ ରହସ୍ୟ ଉଦ୍‌ଘାଟନ କରନ୍ତି ଶ୍ରୀକୃଷ୍ଣ ଏହି ବର୍ଣ୍ଣନା ଭିତରେ ଆମେ କବିଙ୍କର ଉତ୍କଳୀୟ ବୈଷ୍ଣବଧର୍ମ ଧାରଣା ପ୍ରତି ଅନୁରକ୍ତିର ସୁସ୍ପଷ୍ଟ ଆଭାସ ପାଉଁପାରୁ । ଇତିମଧ୍ୟରେ ରାଧା ସହିତ ଅନ୍ୟାନ୍ୟ ଗୋପୀମାନଙ୍କର ବିରହ ଦଶା ବର୍ଣ୍ଣନ କରି କବି ସେମାନଙ୍କଦ୍ୱାରା କୃଷ୍ଣଙ୍କ ନିକଟକୁ ମନ୍ତ୍ରକୁମାରୀ ପ୍ରେରଣ କରାଇଛନ୍ତି । ସେହି ଦିଶ ମନ୍ତ୍ରକୁମାରୀ ପ୍ରେରଣରେ କବିଙ୍କର କଳ୍ପନାବିଳାସିତା ଅବଶ୍ୟ ପ୍ରଶଂସନୀୟ । ଦ୍ୱାରାବତୀ ପୁରରେ ସେମାନଙ୍କର ପ୍ରବେଶ ଓ ରୁକ୍ମିଣୀଙ୍କ ସହିତ ସେମାନଙ୍କର ବାର୍ତ୍ତାଳାପ ଅତ୍ୟନ୍ତ ମନୋଜ୍ଞ ଓ ନାଟକୀୟ ମନେହୁଏ । କେବଳ ଏତିକ ନୁହେଁ, ଗାୟେଣୀମାନଙ୍କର ନୃତ୍ୟକଳା ଓ ରାଧାକୃଷ୍ଣ ବିଚ୍ଛେଦମୂଳକ ନୃତ୍ୟ ପ୍ରଦର୍ଶନ ଯେ କୃଷ୍ଣଙ୍କ ମନରେ ପୂର୍ବର ସ୍ମୃତିକୁ ଅଧିକ ଉଦ୍ଦୀପ୍ତ କରିଥିବ, ଏଥିରେ ସନ୍ଦେହ ନାହିଁ । ଏହା ପରେ କବି ରାଧାଙ୍କର ବିରହ ଦଶା ବର୍ଣ୍ଣନ ଅତି ମାର୍ମିକ ଭାବରେ କରିଛନ୍ତି ଏବଂ ଗୋପୀମାନଙ୍କର ଦଶା ସନ୍ଦର୍ଶନ କରାଇବାପାଇଁ କୃଷ୍ଣଙ୍କ ସହ ଅଷ୍ଟପାଟବଂଶୀଙ୍କୁ ବୃନ୍ଦାବନକୁ ପ୍ରେରଣ କରିଛନ୍ତି । ସେଠାରେ କୃଷ୍ଣ ରାସଲୀଳା ରଚନା କରିଛନ୍ତି ଓ ଗରୁଡ଼ ପୃଷ୍ଠରୁ ମଥୁରାର ରାଣୀମାନେ ତାହା ସନ୍ଦର୍ଶନ କରି ସେମାନଙ୍କ ମନରୁ ଗର୍ବ, ଦମ୍ଭ, ଅଭିମାନାଦି ଅପସୃତ ହୋଇଛି । କେବଳ ସେତିକ ନୁହେଁ, ରାଧାଙ୍କ ସହିତ ରୁକ୍ମିଣୀଙ୍କର ସାକ୍ଷାତ ମଧ୍ୟ ହୋଇଛି ଓ ରାଧା ରୁକ୍ମିଣୀଙ୍କୁ ନାନା ଉପଦେଶ ମଧ୍ୟ ପ୍ରଦାନ କରିଛନ୍ତି । ଏହାପରେ କୃଷ୍ଣ ଓ ଅଷ୍ଟ ପାଟମହିଷୀ ଦ୍ୱାରାବତୀକୁ ପ୍ରତ୍ୟାବର୍ତ୍ତନ କରିଛନ୍ତି ।

ଦ୍ୱିତୀୟ ପର୍ଯ୍ୟାୟ ବା ଉତ୍ତର ଭାଗରେ ଅର୍ଥାତ୍ ୬୨ ଛାନ୍ଦଠାରୁ ୬୪ ଛାନ୍ଦ ପର୍ଯ୍ୟନ୍ତ କବି ନିତ୍ୟସ୍ଥଳର ବିବରଣୀ ପ୍ରଦାନ କରିଛନ୍ତି । ଦିନେ ଶ୍ରୀକୃଷ୍ଣଙ୍କର ପ୍ରାଣପ୍ରିୟା ରୁକ୍ମିଣୀ ପ୍ରୀତି ପରବଶ ହୋଇ ଅନୁରୋଧ କରି ବସନ୍ତି ମୂଳସ୍ଥାନ ସନ୍ଦର୍ଶନ କରିବାକୁ; କିନ୍ତୁ ସେ ସ୍ଥାନ ସନ୍ଦର୍ଶନ ଯେ ଅତି ଅସାଧାରଣ, ସାଧନାସାପେକ୍ଷ, ଯନ୍ତ୍ର ମନ୍ତ୍ର-ସିଦ୍ଧି-ସାପେକ୍ଷ, ତାହା ବର୍ଣ୍ଣନା କରି ମହାପ୍ରଭୁ କେବଳ ଗୁରୁଙ୍କ ଦୟାରୁ ତାହା ଲାଭ କରାଯାଇ-ପାରେ ବୋଲି ଦର୍ଶାଇଛନ୍ତି ଏବଂ ତ୍ରିପୁରା ଯେ ସେଠାରେ ମନ୍ତ୍ରଗୁରୁ ତାହା ମଧ୍ୟ କହିଛନ୍ତି । ତେବେ ଯାହା ହେଉ, ମୂଳସ୍ଥାନ ବା ନିତ୍ୟସ୍ଥଳକୁ ଯିବାର ସ୍ଥିର ହୋଇଛି । ଗରୁଡ଼ ପୃଷ୍ଠରେ ଆରୋହଣ ପୂର୍ବକ ଶ୍ରୀକୃଷ୍ଣ ଓ ରୁକ୍ମିଣୀ ନିତ୍ୟସ୍ଥଳାଭିମୁଖରେ ଯାତ୍ରା କରିଛନ୍ତି । ଯାତ୍ରା ପଥରେ ସେମାନେ ଜଳମୟ ପୁର, ଅନଳମୟ ପୁର, ଅନ୍ଧକାରମୟ ପୁର, ମନୋମୟ ପୁର ଅତିକ୍ରମ କରି ଅବଶେଷରେ ପ୍ରକୃତି ମଣ୍ଡଳରେ ପ୍ରବେଶ କଲେ । ସେଠାରେ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରିଣୀ ଅଷ୍ଟମାତାଙ୍କୁ ଦର୍ଶନ କରି ବେଦମାତାଙ୍କ ପୁରରେ ପ୍ରବେଶ କଲେ । ତାହାପରେ ଶିବପୁର ବିଭୂତିମଣ୍ଡଳ, ବର୍ଣ୍ଣିକେଶନ ଭୁବନ, ଅନନ୍ତ ଭୁବନ ଆଦି ଅତିକ୍ରମ କରି ଗରୁଡ଼ ଭୁବନ ବା, ନିତ୍ୟ ବୈକୁଣ୍ଠରେ ପ୍ରବେଶ କଲେ । ସେଠାରେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ଶଙ୍ଖ, ଚକ୍ର, ଗଦା, ପଦ୍ମଧାରୀ ବିଷ୍ଣୁଙ୍କୁ ଦେଖାଇଦେଲେ । କେବଳ ସେତିକି ନୁହେଁ, କୃଷ୍ଣଙ୍କର ଅପାର କରୁଣା ଲାଭକରି ଦେବୀ ସେଠାରେ ଦ୍ୱାରକା ଭୁବନ, ଅଷ୍ଟପାଟବଂଶୀ, ମଥୁରାପୁରୀ ସମସ୍ତ ପରିଜନ ସଙ୍ଗେ ସଙ୍ଗେ ଗୋପନଗର, ନନ୍ଦପୁର, ଯମୁନା ପୁଳିନ, କାଳିନ୍ଦୀ ହ୍ରଦ ଇତ୍ୟାଦି ମଧ୍ୟ ସନ୍ଦର୍ଶନ କଲେ । ବିବିଧ ଲୀଳାକ୍ରମରେ ବିବିଧା ନାୟିକାକ୍ଷେତ୍ର ମଧ୍ୟ ସେଠାରେ ଶ୍ରୀକୃଷ୍ଣ ରୁକ୍ମିଣୀଙ୍କୁ ଦେଖାଇ-ଦେଲେ । କିନ୍ତୁ ରୁକ୍ମିଣୀ କେବଳ ସେତିକରେ ସନ୍ତୁଷ୍ଟ ନ ରହି ଆଦିକୃଷ୍ଣ, ଆଦିରାଧା ଓ ଆଦିରୁକ୍ମିଣୀ ଦେଖିବାକୁ ମନ ବଳାଇବାରୁ ଶ୍ରୀକୃଷ୍ଣ ତାହାଙ୍କର ବୁଦ୍ଧିର ପ୍ରଶଂସା କରିବା ସଙ୍ଗେ ସଙ୍ଗେ ତାଙ୍କୁ ଅଷ୍ଟବଟ ମୂଳକୁ ନେଇ ଦ୍ୱାରକା ସମୂହ ମୂଳସ୍ଥାନ ଦର୍ଶନ କରାଇଲେ ଓ ସେଠାରେ ମୂଳରାଧା, ମୂଳଗୋପୀ ଓ ମୂଳକୃଷ୍ଣଙ୍କୁ ଦର୍ଶନ କରି ଦେବୀ ନୟନ ମନ ସାର୍ଥକ କଲେ । ତ୍ରିପୁରାଙ୍କଠାରୁ ସିଦ୍ଧିମନ୍ତ୍ର ଲାଭକରି ଦେବୀ ନିତ୍ୟରାଧାକୃଷ୍ଣଙ୍କୁ ଦର୍ଶନ କରିବାକୁ କ୍ଷମ ହୋଇପାରିଥିଲେ । ଏହା ହିଁ ରହସ୍ୟମଞ୍ଜରୀ କଥାବସ୍ତୁର ସାର-ସଂକ୍ଷେପ । ଏଥିରେ କବିଙ୍କର ବହୁଶାସ୍ତ୍ରଦର୍ଶିତା, ପାଣ୍ଡିତ୍ୟ, ଗଭୀର ଅନ୍ତର୍ଦୃଷ୍ଟି ଓ ସର୍ବୋପରି ଚରିତ୍ର ଅନୁଶୀଳନର କୁଶଳତା ସଂଯୋଜିତ ହୋଇ ରହସ୍ୟ ମଞ୍ଜରୀକୁ ଏକ ଉଚ୍ଚତର ସୃଷ୍ଟି-ଶ୍ରେଣୀର ମର୍ଯ୍ୟାଦା ଦେଇଅଛି ।

**ରହସ୍ୟ ମଞ୍ଜରୀ ଏକ ଗୀତିକାବ୍ୟ**—'ରହସ୍ୟ ମଞ୍ଜରୀ' ଗୀତିକାବ୍ୟ ବହୁ ଲକ୍ଷଣରେ ସମୃଦ୍ଧିମନ୍ତ । Encyclopedia of Britanica' ରେ ଗୀତିକାବ୍ୟର ସଂଜ୍ଞା ନିର୍ଦ୍ଦେଶ କରି କୁହାଯାଇଅଛି—'Lyric which may be defined in

general as a meterically pleosing or 'musical' poem. that is short. unified, personal, subjective, emotional, a poem that springs from the heart rather than the mind"

ଏହି ଗୀତିକାବ୍ୟରେ ସାଧାରଣତଃ କବିର ବ୍ୟକ୍ତିଗତ ଚିନ୍ତା, ଆବେଗ ଓ ଉତ୍ତେଜନା, ସଙ୍ଗୀତମୟତା, କଥାବସ୍ତୁରେ ପ୍ରବାହମାନତା ଓ କ୍ଷୁଦ୍ର ପରିସର ଆଦି ଗୁଣ ପରିଲକ୍ଷିତ ହୁଏ । ଏହି ଦୃଷ୍ଟିରୁ ବିଚାର କଲେ ରହସ୍ୟମଞ୍ଜରୀକୁ ଏକ ଅନବଦ୍ୟ ଗୀତି-କାବ୍ୟ ମଧ୍ୟ କୁହାଯାଇପାରେ । ରହସ୍ୟ ମଞ୍ଜରୀର କଥାବସ୍ତୁ ଯେ ଏକାନ୍ତ ବ୍ୟକ୍ତିଗତ, ତାହା ନିମ୍ନୋକ୍ତ ପଂକ୍ତିରୁ ସ୍ପଷ୍ଟ ପ୍ରତୀୟମାନ ହୋଇଥାଏ ।

"ରହସ୍ୟମଞ୍ଜରୀ ଏ ବିଚିତ୍ରମୟ ରସ
ଏ ସୁଖ ଜାଣିବ ଯେଉଁ ବିବେକ ପୁରୁଷ
ଅବିବେକ ବୋଲିବ ଏ କଉଁ ପାଠେ ଥିଲା
ଥିଲା ଯେବେ କବି କପାଁ ଆଗହୁଁ ନକଲା
ବିବେକୀ ବୋଲିବେ ଗୁପତେ ଥିଲା ଚାହି
ସରସ୍ଵତୀ ଭଣ୍ଡାରେ ଗୁପତେ ଥିଲା ଏହି ।"

ପୁଣି ଶୂନ୍ୟ ସଂହିତା, ବ୍ରହ୍ମବୈବର୍ତ୍ତ ପୁରାଣ, ବ୍ରହ୍ମପୁରାଣ, ବ୍ରହ୍ମାଣ୍ଡପୁରାଣମାନଙ୍କ-ଠାରୁ ରହସ୍ୟମଞ୍ଜରୀର କଥାବସ୍ତୁରେ ଯେଉଁ ମୌଳିକତା ଦେଖାଯାଏ, ତାହା ଦେବ-ଦୁର୍ଲ୍ଲଭଙ୍କ ବ୍ୟକ୍ତିଗତ ଚିନ୍ତା ବ୍ୟତୀତ ଅନ୍ୟ କିଛି ନୁହେଁ । ନବମ ଛାନ୍ଦରେ ଗୋପୀମାନଙ୍କର ମାୟାବାଦ ଦେଇ ନାୟିକାଙ୍କୁ ନିଜ ଅଙ୍ଗରୁ ଜାତ କରି କୃଷ୍ଣଙ୍କ ନିକଟକୁ ପ୍ରେରଣ, ଦ୍ଵାରକାରୁ ମାୟାକୁମାରୀମାନଙ୍କ ଅନ୍ତର୍ଦ୍ଧାନ ପରେ ଗୋପପୁରର ରାସଲୀଳା ଦେଖିବାକୁ ଅଷ୍ଟପାଟ-ବଂଶୀଙ୍କର ଆଗ୍ରହ ଓ କୃଷ୍ଣଙ୍କର ସେମାନଙ୍କୁ ଗରୁଡ଼ ପୃଷ୍ଠରେ ବସାଇ ବୃନ୍ଦାବନର ମର୍ତ୍ତ୍ୟରାସଲୀଳା ଦେଖାଇବାକୁ ନେବା, ପୁଣି କୃଷ୍ଣଙ୍କର ରୁକ୍ମଣୀଙ୍କ ସହିତ ନିତ୍ୟସ୍ଥଳକୁ ଗମନ ଓ ମର୍ତ୍ତ୍ୟର ରାଧାଙ୍କୁ ଦର୍ଶନ କରିଅଦା ଯୋଗୁଁ ରୁକ୍ମଣୀ ମନ୍ଦିରିଙ୍କିରେ ସମର୍ଥା— ଯାହା ନିତ୍ୟସ୍ଥଳର ଦ୍ଵାରପାଳିକା ବିପୁଦ୍ଦ୍ଵାରା କଥିତ—ଏସବୁ କବିଙ୍କର ବ୍ୟକ୍ତିଗତ କଳ୍ପନା ବିଳାସର ପରିଚୟ ଦିଏ ।

ରହସ୍ୟମଞ୍ଜରୀରେ ଆବେଗ ଓ ଉତ୍ତେଜନାର ମଧ୍ୟ ଅଭାବ ନାହିଁ । କୃଷ୍ଣଙ୍କର ଶରୀର କ୍ଷୀଣ ହେବାରୁ ତାର କାରଣ ବା ରହସ୍ୟ ଜାଣିବାପାଇଁ ରୁକ୍ମଣୀ ତଥା ଅଷ୍ଟପାଟବଂଶୀମାନଙ୍କ ମନରେ ଯେପରି ଆବେଗାତିଶଯ୍ୟ ସୃଷ୍ଟି ହୋଇଥିଲା, ତାର ଏକ ସ୍ପଷ୍ଟ ସୂଚନା ନିମ୍ନୋକ୍ତ ପଂକ୍ତିରୁ ମିଳିଥାଏ ।

"ଜୀବ ଅର୍ଥେ ପ୍ରଭୁ ହେ ବିରସ ତୁମ୍ଭ ମନ
କେହୁଁସି ସୁଖକୁ ନକର ସାବଧାନ
ଦ୍ୱାରବତୀ ଭୁବନେ କେବଣ ସୁଖ ନାହିଁ
ସର୍ବସୁଖ ତେଜି ମନ ରମାଇଲ କାହିଁ ।"

ଅନ୍ୟତ୍ର—

"ଏସନ ହୃଦରେ ପାଇଁ ସୁନ୍ଦରୀ
କହନ୍ତି ପ୍ରଭୁ ଶ୍ରୀଚରଣ ଧରି
ଶୁଣ ମହାପ୍ରଭୁ କରୁଣାନିଧି
ଏ ତ ଅତି ବଡ଼ ଦୁର୍ଗମ ସନ୍ଧି,
ଫେଡ଼ି କହ ତୁମ୍ଭେ—
ଯେମନ୍ତେ ପରତେ ପାଇବୁ ଆମ୍ଭେ ।

× × ×

ନାମ କେବଣ କାହିଁ ତାଙ୍କ ବାସ
କି ଅବା ସ୍ତ୍ରିରୀ କି ଅବା ପୁରୁଷ
କହିବା ଗୋସାଇଁ ଏଥି ସନ୍ଧାନ
ଶୁଣି ସନ୍ଦେହ ତୁଟୁ ମୋର ମନ
ମୁଁ ଦାସୀ ତୁମ୍ଭର—
ମୋହଠାରେ କମା ଅନ୍ତର କର ।"

ଶ୍ରୀକୃଷ୍ଣ ସମସ୍ତଙ୍କର ଆବେଗ ଓ ଉତ୍ତେଜନାର ପ୍ରଶମନ ପାଇଁ କହୁଛନ୍ତି—

"ତେବେ କହିବା ଅନ୍ତର୍ଗତ କଥା
ସହିଁ ପାଇଁ ଆମ୍ଭେ ଏତେ ଅବସ୍ଥା"

ସଙ୍ଗୀତମୟତା ରହସ୍ୟମଞ୍ଜରୀର ପ୍ରାଣକେନ୍ଦ୍ର । ଏହାର ପ୍ରତ୍ୟେକଟି ଛାନ୍ଦ ରାଗ-ରାଗିଣୀକୁ ଆଶ୍ରୟ କରି ରଚିତ । ଷଷ୍ଠ ଛାନ୍ଦରେ ମଙ୍ଗଳଗୁଜ୍ଜରୀ, ଭୈରବୀ (ସପ୍ତମଛାନ୍ଦ), ବଙ୍ଗଳା ଶ୍ରୀ (ନବମ ଛାନ୍ଦ), ମହ୍ଲାର (ଊନବିଂଶ ଛାନ୍ଦ) ପ୍ରଭୃତି ଲୋକପ୍ରିୟ ରାଗ ବ୍ୟବହାର ଛନ୍ଦେ ଛନ୍ଦେ ସଙ୍ଗୀତର ଅଫୁରନ୍ତ ନିର୍ଯ୍ୟାସ ଭରିଦେଇଛନ୍ତି । କବି କବି ରହସ୍ୟମଞ୍ଜରୀର ରହସ୍ୟମଞ୍ଜରୀର ପରିସର ସଂକ୍ଷିପ୍ତ । ଏହା ମହାକାବ୍ୟ ନୁହେଁ । ୨୪ଟି ଛାନ୍ଦରେ ଏହା ରଚିତ। କବିତ୍ୱ ଓ କଳ୍ପନାବିଳାସର ମନୋଜ୍ଞ ସମନ୍ୱୟ ରହସ୍ୟମଞ୍ଜରୀକୁ କେବଳ ଗୀତିକାବ୍ୟର ଗୌରବ ଦେଇ ନାହିଁ, ପରନ୍ତୁ ଏହାକୁ ଅତ୍ୟନ୍ତ ସୁଖପାଠ୍ୟ କରିଅଛି । ସୀମିତ ପରିସର ମଧ୍ୟରେ ବିରାଟ ବିଷୟବସ୍ତୁର ପ୍ରଖ୍ୟାପନ ରହସ୍ୟମଞ୍ଜରୀର ଅନବଦ୍ୟ ବୈଶିଷ୍ଟ୍ୟ । ଏଥିରେ

ଅଯଥା ବସ୍ତୁବସ୍ତୁ ସଂଯୋଜିତ ହୋଇ ନ ଥିବାରୁ କଥାବସ୍ତୁରେ ବେଶ ପ୍ରବହମାନତା ଲକ୍ଷ୍ୟ କରାଯାଇଥାଏ । ଏହିସବୁ ଦୃଷ୍ଟିରୁ ବିଚାର କଲେ, ରହସ୍ୟମଞ୍ଜରୀକୁ ଏକ ଗୀତକାବ୍ୟ କୁହାଯାଇପାରେ ।

**କବିଙ୍କର ଧର୍ମଦର୍ଶନ** :—୧୬ଶ ଶତାବ୍ଦୀରେ ଉତ୍କଳୀୟ ସାମାଜିକ କ୍ଷେତ୍ରରେ ଯେଉଁ ଧର୍ମର ଉଦ୍‌ବେଳ ବନ୍ୟା ପ୍ରବାହିତ ହୋଇଥିଲା, ତାହାର ସ୍ରୋତ ଦୀର୍ଘ ଦୁଇଶହ ବର୍ଷ ପରେ ମଧ୍ୟ ନୀରସ ଓ ଶୁଷ୍କ ହୋଇ ନ ଥିଲା । କୃଷ୍ଣ ଧର୍ମକୁ ଆଶ୍ରୟ କରି ଉତ୍କଳୀୟ ବୈଷ୍ଣବ ଧର୍ମ ଗଢ଼ି ଉଠିଥିଲେ ମଧ୍ୟ ତାହାର ଯୋଗପିଣ୍ଡିତ ସାଧନାମାର୍ଗ ତାହାକୁ ଏକ ସ୍ୱତନ୍ତ୍ର ସ୍ଥାନରେ ଅଧିଷ୍ଠିତ କରିପାରିଥିଲା । ଏକ ପକ୍ଷରେ ଉତ୍କଳୀୟ ବୈଷ୍ଣବମାନେ ରାଧା-କୃଷ୍ଣଙ୍କ ପରିହାର କରିପାରି ନ ଥିଲେ । ଅପର ପକ୍ଷରେ କାୟା ସାଧନାକୁ ମଧ୍ୟ ସେମାନେ ହଠ ଯୋଗୀଙ୍କପରି ମୁଖ୍ୟ ସ୍ଥାନ ପ୍ରଦାନ କରିଥିଲେ । ଫଳରେ ସେମାନେ ଏକ ମାଧ୍ୟମିକ ପନ୍ଥା ଅନୁସରଣ କରିଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । କେବଳ ଦେବଦୁର୍ଲ୍ଲଭ ନୁହନ୍ତି, ଅଚ୍ୟୁତାନନ୍ଦ ସମେତ ପଞ୍ଚସଖାଙ୍କଠାରୁ ଆରମ୍ଭ କରି ଦୀନକୃଷ୍ଣ ଦାସଙ୍କ ପର୍ଯ୍ୟନ୍ତ, ସମସ୍ତଙ୍କ କବିତ୍ୱ ବ୍ୟାଖ୍ୟାନରେ ଆମେ ଏହି ରହସ୍ୟ ଉପଲବ୍ଧ କରିଥାଉଁ । ବିଶେଷତଃ ଅଚ୍ୟୁତାନନ୍ଦଙ୍କର ଶୂନ୍ୟ ସଂହିତା ଓ ଦୀନକୃଷ୍ଣଦାସଙ୍କ ନାମରତ୍ନ ଗୀତାଦିରେ ଏହି ତତ୍ତ୍ୱ ବିଶେଷ ଭାବରେ ଉପଲବ୍ଧ । ଗୌଡ଼ୀୟ ବୈଷ୍ଣବମାନେ ନିତ୍ୟ ଗୋଲୋକ, ନିତ୍ୟଲୀଳା ଇତ୍ୟାଦିରେ ବିଶ୍ୱାସ କରନ୍ତି ନାହିଁ । ସେମାନଙ୍କ ମତରେ ବୃନ୍ଦାବନ ହିଁ ନିତ୍ୟ ରାସସ୍ଥଳୀ ଓ ମାନବ ରାଧାକୃଷ୍ଣହିଁ ବାସ୍ତବରେ ଈଶ୍ୱର ଈଶ୍ୱରୀ. ଅକୈତବ ଓ ଅକୂପାର କରୁଣାର ଆଧାର । ପିଣ୍ଡ-ବ୍ରହ୍ମାଣ୍ଡ ବାଦ, ଯନ୍ତ୍ର, ମନ୍ତ୍ର, ଦେହସାଧନାର ନବଧା ମାର୍ଗ ଆଦିରେ ସେମାନେ ବିଶ୍ୱାସ କରନ୍ତି ନାହିଁ । କିନ୍ତୁ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ମାନବ କୃଷ୍ଣ ଅବତାରୀ ନୁହନ୍ତି । ସେ ଲୀଳାବିଧୃତ କଳେବର । ତେଣୁ ଅବତାର । ନିତ୍ୟଗୋଲୋକର କୃଷ୍ଣ ଅବତାରୀ ଓ ନିତ୍ୟ ରାଧା ପରମ ଈଶ୍ୱରୀ । ତେଣୁ ସେମାନେ ସର୍ବଦା ନିତ୍ୟଗୋଲୋକର କଳ୍ପିତ ବର୍ଣ୍ଣନା ପ୍ରଦାନ କରି ଆସିଛନ୍ତି । ସେହି ଗୋଲୋକ ପ୍ରାପ୍ତି ସୁନଷ୍ଟ କଠିନ ସାଧନାପେକ୍ଷ । ତାହାର ବର୍ଣ୍ଣନା 'ରହସ୍ୟମଞ୍ଜରୀ' ଗ୍ରନ୍ଥରେ ଆମେ ଦେଖିବାକୁ ପାଉଁ । ରୁକ୍ମିଣୀ କେବଳ ମର୍ତ୍ତ୍ୟଲୀଳା ଦେଖି ସନ୍ତୋଷଲାଭ କରିପାରି ନାହାନ୍ତି । ସେ ପ୍ରାଣପ୍ରିୟ ଶ୍ରୀକୃଷ୍ଣଙ୍କ କୃପାରୁ ନିତ୍ୟଗୋଲୋକ ସନ୍ଦର୍ଶନ କରିବାକୁ କ୍ଷମ ହୋଇଛନ୍ତି । ତାହା ସଙ୍ଗେ ସଙ୍ଗେ ମର୍ତ୍ତ୍ୟଲୀଳା ଠାରୁ ନିତ୍ୟଲୀଳା ଯେ କେତେ ଉଚ୍ଚରେ, ତାହା ସେ ଅନୁଭବ କରି-ପାରିଛନ୍ତି । ଏଠାରେ ଅଚ୍ୟୁତାନନ୍ଦଙ୍କ ଶୂନ୍ୟ ସଂହିତା ସମ୍ବନ୍ଧରେ ପଦେ କହି ରଖିବା ଉଚିତ । ଏହା ବ୍ୟତୀତ ବର୍ଣ୍ଣନା ରୀତିରେ ମଧ୍ୟ ଉଭୟଙ୍କ ମଧ୍ୟରେ ଯଥେଷ୍ଟ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । କେବଳ ଏତିକି ନୁହେଁ, ଦେବଦୁର୍ଲ୍ଲଭ ନିତ୍ୟଙ୍କ ଦ୍ୱାରା ମାନବ କୃଷ୍ଣ ଓ ରୁକ୍ମିଣୀଙ୍କୁ ମନ୍ତ୍ର ଯନ୍ତ୍ରାଦି ଦ୍ୱାରା ଦୀକ୍ଷିତ କରାଇଛନ୍ତି । ଅଚ୍ୟୁତ ମହାମାୟାଙ୍କୁ ନିତ୍ୟସ୍ଥଳୀର ଦ୍ୱାରୀ ବୋଲି ଉଲ୍ଲେଖ କରିଥିଲା ବେଳେ ଦେବଦୁର୍ଲ୍ଲଭ ନିତ୍ୟଙ୍କୁ ସେ ସ୍ଥଳର ଅଧିଷ୍ଠାତ୍ରୀ କରାଇ ଅଛନ୍ତି । ଅନୁରୂପ ବର୍ଣ୍ଣନା ପଦ୍ମପୁରାଣରେ ପାତାଳ ଖଣ୍ଡରେ ମଧ୍ୟ ବର୍ଣ୍ଣିତ ।

ତେଣୁ ଏଥିରୁ ଦେବଦୁର୍ଲ୍ଲଭଙ୍କର ଶାସ୍ତ୍ରଜ୍ଞାନର ମଧ୍ୟ ପରିଚୟ ଆମେ ପାଇଥାଉଁ । ଦେବ-ଦୁର୍ଲ୍ଲଭଙ୍କ ବର୍ଣ୍ଣିତ ରାଧାକୃଷ୍ଣ ଲୀଳା ରାଧାତନ୍ତ୍ରରେ ମଧ୍ୟ ବର୍ଣ୍ଣିତ ହୋଇଛି ଏବଂ ଯାନକୃଷ୍ଣଙ୍କ ନାମରତ୍ନ ଗୀତାରେ ମଧ୍ୟ ଅନୁରୂପ ବର୍ଣ୍ଣନା ଦେଖିବାକୁ ମିଳେ । ଦେବଦୁର୍ଲ୍ଲଭଙ୍କର ଗୋଲୋକପୁର ବର୍ଣ୍ଣନା ବହୁ ବିଚକ୍ଷଣପୁର ଓ ସ୍ଥାନର ବର୍ଣ୍ଣନା କ୍ଲିଷ୍ଟ ପ୍ରତୀତ ହେଲେ ମଧ୍ୟ ତାହା ଯେ ତାଙ୍କର ବହୁଦର୍ଶିତା ଓ ଶାସ୍ତ୍ରଜ୍ଞାନର ପରିଚାୟକ ଏହା ନିଃସନ୍ଦେହ ।

ଦେବଦୁର୍ଲ୍ଲଭଙ୍କ ଧର୍ମ ଦର୍ଶନର ଏକ ବିଶିଷ୍ଟ ଦିଗ ହେଉଛି, ଭକ୍ତିର ମାହାତ୍ମ୍ୟ ପ୍ରତିଷ୍ଠା ଓ ଗୋପୀଭାବର ମହତ୍ତ୍ୱ । ଗୋପୀଭାବ—ଗୋପୀଭାବ ଅର୍ଥ ଗୋପୀପ୍ରେମ—କାୟୋମନବାକ୍ୟରେ ଶ୍ରୀକୃଷ୍ଣ ସେବା ।

କୃଷ୍ଣ ସୁଖୈକତାତ୍ପର୍ଯ୍ୟମୟୀ ସେବା ବ୍ୟତୀତ ଏମାନେ ଅନ୍ୟ କିଛି କାମନା କରନ୍ତି ନାହିଁ । ଏମାନଙ୍କର ସ୍ୱାଭାବିକ ଧର୍ମ ଶ୍ରୀକୃଷ୍ଣ ସେବା ଶ୍ରୀକୃଷ୍ଣଙ୍କ ପ୍ରୀତିବିଧାନ ଯଥାର୍ଥରେ ଚୈତନ୍ୟ ଚରିତାମୃତରେ ବର୍ଣ୍ଣିତ ଅଛି ।

ଲୋକଧର୍ମ ବେଦଧର୍ମ ଦେହଧର୍ମ କର୍ମ
ଲଜ୍ଜା ଧୈର୍ଯ୍ୟ ଦେହସୁଖ ଆତ୍ମସୁଖମର୍ମ ।
ସର୍ବତ୍ୟାଗ କରିକରେ କୃଷ୍ଣର ଭଜନ
କୃଷ୍ଣ ସୁଖ ହେତୁ କରେ ପ୍ରେମର ସେବନ ।
ଆତ୍ମସୁଖ-ଦୁଃଖ ଗୋପୀର ନାହିକ ବିଚାର
କୃଷ୍ଣସୁଖ ହେତୁ ଚେଷ୍ଟା ମନୋବ୍ୟବହାର ।
କୃଷ୍ଣ ଲାଗି ମୋର ସବ ପରିତ୍ୟାଗ
କୃଷ୍ଣ ସୁଖ ହେତୁ କରେ ଶୁଦ୍ଧ ଅନୁରାଗ ।

ଯୁଗେ ଯୁଗେ ମନୁଷ୍ୟ ସୃଷ୍ଟିକର୍ତ୍ତାଙ୍କର ରହସ୍ୟ ଉପଲବ୍ଧି ନିମିତ୍ତ ଦୁଇଟି ପଥର ଆଶ୍ରୟ ନେଇ ଆସିଛି । ଯେତେବେଳେ ସେ ମସ୍ତିଷ୍କ ଖଟାଇ ଏହି ରହସ୍ୟର ଦ୍ୱାର ଉଦ୍‌ଘାଟନ କରିଛି, ସେତେବେଳେ ସେ ନିଜକୁ ପ୍ରକାଶ କରିଛି ଜ୍ଞାନୀ ତଥା ଦାର୍ଶନିକ ଭାବରେ । ମାତ୍ର ଯେତେବେଳେ ହୃଦୟମନ ନେଇ ସେ ରହସ୍ୟକୁ ଉପଲବଧି କରିଛି, ସେତେବେଳେ ସେ ହୋଇଛି ଭକ୍ତ । ଭକ୍ତର ଭଗବତ୍‌ପ୍ରାପ୍ତିର ଉପାୟ ହିଁ ଭକ୍ତି । ଜ୍ଞାନନୁହେଁ—ଉପଲବ୍‌ଧି ତଥା ବିଶ୍ୱାସ ହିଁ ଭକ୍ତର ପରମ ଅସ୍ତ୍ର । ତେଣୁ କୁହାଯାଇଛି, 'ବିଶ୍ୱାସେ ମିଳଇ ହରି, ତର୍କେ ବହୁ ଦୂର' ।

ବୈଧୀ ଓ ରାଗାନୁଗା ଭେଦରେ ଭକ୍ତି ଦ୍ୱିବିଧ । ଯେତେବେଳେ ଭକ୍ତ ଶାସ୍ତ୍ର ଜ୍ଞାନ ମାଧ୍ୟମରେ ଭଗବାନଙ୍କୁ ଉପଲବଧି କରିବାର ସ୍ୱପ୍ନ ଦେଖେ ଓ ସେଥିପାଇଁ ଯଥାର୍ଥ କ୍ରିୟାନୁଷ୍ଠାନ କରିବସେ, ସେତେବେଳେ ତାହାକୁ ବୈଧୀ ଭକ୍ତି କୁହାଯାଏ । ମାତ୍ର ରାଗାନୁଗା ଭକ୍ତି ଶାସ୍ତ୍ରଜ୍ଞାନର ବହୁ ଊର୍ଦ୍ଧ୍ୱରେ । ଭକ୍ତ ଯେତେବେଳେ ଏହି ମାର୍ଗରେ

ପ୍ରଧାବିତ ହୁଏ, ସେତେବେଳେ ସେ ନିଜକୁ ଭୁଲେ । ନିଜର ସମାଜ, ପରିପାର୍ଶ୍ୱକୁ ବିସ୍ମୃତ ହୁଏ, ଉପଲବ୍ଧିର ଚରମ ଶିଖରରେ ପହଞ୍ଚେ, ସେ ଲୋକଲଜ୍ଜା, ଜାତିକୁଳ ଭୁଲି ଭଗବତ୍ ପ୍ରେମ-ସାଗରରେ ଲୀନ ହୁଏ । ଏହା ହିଁ ରାଗାନୁଗା ଭକ୍ତି । ଏହି ରାଗାନୁଗା ଭକ୍ତି ପୁଣି କାମାନୁଗା ଓ ସମ୍ବନ୍ଧାନୁଗା ଭେଦରେ ଦ୍ୱିବିଧ । କିନ୍ତୁ ରହସ୍ୟମଞ୍ଜରୀର କବି ଦେବଦୁର୍ଲ୍ଲଭ ପ୍ରେମଭକ୍ତିର ଉତ୍କର୍ଷ ପ୍ରତିପାଦନ କରିଅଛନ୍ତି । କବିଙ୍କ ଭାଷାରେ—

"ସର୍ବଭକ୍ତି ମଧ୍ୟେ ପ୍ରେମ ଭକ୍ତି ଅଟେ ସାର
ସେ ଭକ୍ତି ଅଟଇ କୋଟି ଗୋପୀମାନଙ୍କର
ଗୋପୀଙ୍କି ଭଜିଲି ଭକ୍ତି ପ୍ରେମଭକ୍ତି ପାଇ
ବିନା ପ୍ରେମଭକ୍ତିରେ ଦର୍ଶନ ମୋତେ ନାହିଁ ।"

କିନ୍ତୁ ଏଥିରୁ ତାଙ୍କୁ ଗୌଡ଼ୀୟ ବୈଷ୍ଣବମାନଙ୍କ ପରି ପରକୀୟା ପ୍ରୀତିର ପୂଜାରୀ ବୋଲି କୁହାଯାଇ ପାରିବ ନାହିଁ । କାରଣ ରାଧା ଓ ଗୋପୀମାନଙ୍କର କୃଷ୍ଣଙ୍କ ସହିତ ପ୍ରେମ ଯେ ବୈଧ, ତାହା ସେ କାବ୍ୟ ମଧ୍ୟରେ ଦର୍ଶାଇଅଛନ୍ତି । ଜାମ୍ବବତୀଙ୍କର ନାରୀସୁଲଭ ଆକ୍ଷେପୋକ୍ତି—

'କେବଣ ବେଭାର ସଖି କେତେ ମାନେ ଅଛ ଦେଖି
ଏକ ଏକ ଯୁବତୀ କି ଦୁଇ ଦୁଇ ଭର୍ତ୍ତା"—ଶୁଣି କୃଷ୍ଣ ସ୍ମିତ ବଦନରେ ରାଧା

ଓ ଚନ୍ଦ୍ରସେଣା ସମେତ ଗୋପଯୁବାମାନଙ୍କର ଜନ୍ମରହସ୍ୟ ଉଦ୍‌ଘାଟନ କରି ଦେଖାଇ ଦେଇଛନ୍ତି ଯେ, ଯଥାର୍ଥରେ ସେମାନେ ସମସ୍ତେ କୃଷ୍ଣଙ୍କ କଳାରୁ ଜନ୍ମ । ତେଣୁ ଗୋପୀମାନେ ବ୍ୟଭିଚାରିଣୀ ନାୟିକା ନୁହନ୍ତି ବା ସେମାନଙ୍କର ପ୍ରେମ ଅବୈଧ ନୁହେଁ ।

ଦେବଦୁର୍ଲ୍ଲଭଙ୍କ ଧର୍ମଦର୍ଶନର ଅନ୍ୟ ଏକ ରହସ୍ୟ ହେଉଛି, ବୈଷ୍ଣବମାନଙ୍କର ଉତ୍କର୍ଷ ପ୍ରତିପାଦନ । ପରବର୍ତ୍ତୀ ସମୟରେ କବି ଅଭିମନ୍ୟୁ ତାଙ୍କର ପ୍ରସିଦ୍ଧ କାବ୍ୟଗ୍ରନ୍ଥ ବିଦଗ୍ଧଚିନ୍ତାମଣିରେ ବୈଷ୍ଣବଙ୍କର ମହତ୍ତ୍ୱ ପ୍ରତିପାଦନ କରି—

"ଠକ ନୁହେଁ ଗୁରୁକୃଷ୍ଣ ବଇଷ୍ଣବେ ଯେହୁ
ଠିକେ ଏଥି ମର୍ମ ଜାଣିପାରିବେଟି ସେହୁ"—

କହିଯାଇଥିଲେ ହେଁ ତାଙ୍କର ବହୁପୂର୍ବରୁ ଦେବଦୁର୍ଲ୍ଲଭ ମଧ୍ୟ ବୈଷ୍ଣବ ଧର୍ମ ଗ୍ରନ୍ଥର ମହତ୍ତ୍ୱ ବୈଷ୍ଣବମାନଙ୍କ ନିକଟରେ ସୁବୋଧ୍ୟ ବୋଲି ପ୍ରକାଶ କରିଯାଇଅଛନ୍ତି । ଗୁରୁ ଓ କୃଷ୍ଣଙ୍କ ଅପେକ୍ଷା ଏହି ବୈଷ୍ଣବମାନଙ୍କର ମହତ୍ତ୍ୱ ଅପରିସୀମ ଏବଂ ଏହି ବୈଷ୍ଣବମାନେ କଳିଯୁଗରେ ଦୁର୍ଲ୍ଲଭ, ତାହା ମଧ୍ୟ ଦେବଦୁର୍ଲ୍ଲଭ ନିର୍ଭୀକ ଭାବରେ ଘୋଷଣା କରିଯାଇ ଅଛନ୍ତି । ତାଙ୍କ ଭାଷାରେ—

"ସନ୍ଥ କହେ ପରଗୁଣ ଆପଣାର ଦୋଷ
ଗୁରୁ ବୈଷ୍ଣବ ସେବା ନ ସହଇ ଲେଶ
ମନୁଷ୍ୟ କୋଟିକେ ମିଳେ ଉତ୍ତମ ଜଣେକ
କୋଟିଏ ଉତ୍ତମ ଯାଇ ସାଧୁ ମିଳେ ଏକ
କୋଟି ସାଧୁ ମଧ୍ୟେଣ ବୈଷ୍ଣବ ଏକ ଜାଣ
କୋଟିଷ୍ଣେ ବୈଷ୍ଣବ ସେ ଲଭଇ ସନ୍ଥପୂଣ ।"

ପୁଣି ବିପ୍ରୁରର ମହିମା ବର୍ଣ୍ଣନାରେ ମଧ୍ୟ କବି ଆକୁଳ ହୋଇଅଛନ୍ତି । କବିଙ୍କ ବିମତରେ ରାଧା ବିପ୍ରୁରରୁ ଆସିଛନ୍ତି । ତେଣୁ ସେ କହିଅଛନ୍ତି—

ସତ୍ୟଯୁଗେ ମୈଷା ସୁର-ଦରପ ଚ ରୁ
ବିଗୁଣ ଜନନୀ ଏହି ଅନାଦି ନାରୀ
ଏହାଙ୍କ କଳାରୁ ତୁମ୍ଭେ ଜନମ ହୋଇ
ଜନମେ ଜନମେ ବିଷ୍ଣୁ ପ୍ରିୟା ବୋଲଇ ।

ଶୂନ୍ୟ ସହିତାରେ କବି ଅଚ୍ୟୁତାନନ୍ଦ ଯଦିଓ ମର୍ତ୍ତ୍ୟ ଗୋପୀମାନଙ୍କ କଥା ଉଲ୍ଲେଖ କରିଛନ୍ତି; ତଥାପି ତାହା ସୁସ୍ପଷ୍ଟ ନୁହେଁ । ପୁନଶ୍ଚ ସେ ଅଷ୍ଟପାଟବଂଶୀଙ୍କୁ ମର୍ତ୍ତ୍ୟଲୀଳା ନ ଦେଖାଇ କେବଳ ନିତ୍ୟଲୀଳା ଦେଖାଇବାକୁ ନେଇଛନ୍ତି । କିନ୍ତୁ ଅପର ପକ୍ଷରେ କବି ଦେବଦୁର୍ଲ୍ଲଭ ଯଦିଓ ଶୂନ୍ୟ ସହିତା ଦ୍ୱାରା ପ୍ରଭାବିତ; ତଥାପି ସେ ସ୍ୱୀୟ ସ୍ୱକୀୟତା ରକ୍ଷାକରି ଅଷ୍ଟପାଟବଂଶୀଙ୍କୁ ପ୍ରଥମେ ମର୍ତ୍ତ୍ୟର ରାସଲୀଳା ପ୍ରଦର୍ଶନ କରାଇଛନ୍ତି । ତାପରେ ସମସ୍ତଙ୍କୁ ନିତ୍ୟଗୋଲୋକକୁ ନେବା ଅସମ୍ଭବ ମନେକରି କେବଳ ରୁକ୍ମଣୀଙ୍କୁ ନେଇ ନିତ୍ୟଲୀଳା ଦର୍ଶାଇ ଅଛନ୍ତି । ଏହି କ୍ରମରେ ସେ ମର୍ତ୍ତ୍ୟଲୀଳାଠାରୁ ନିତ୍ୟଲୀଳାକୁ ଶ୍ରେଷ୍ଠ ବୋଲି ପ୍ରଦର୍ଶନ କରିଥିବାରୁ ତାଙ୍କର ବର୍ଣ୍ଣନା ଅଧିକ ଜୀବନ୍ତ ହୋଇପାରିଛି ।

**ଦେବଦୁର୍ଲ୍ଲଭଙ୍କର କବିପ୍ରତିଭା**—କବି ଦେବଦୁର୍ଲ୍ଲଭ ମୁଖ୍ୟତଃ "ପ୍ରୀତିପୁରା ଭକ୍ତିଆ" ବୈଷ୍ଣବ କବି । ସ୍ୱୀୟ ଭକ୍ତିଭାବର ପ୍ରକଟନ ନିମନ୍ତେ ସେ କାବ୍ୟ ରଚନା କରିଛନ୍ତି । କବିପ୍ରସିଦ୍ଧି ତାଙ୍କର କାମ୍ୟ ନ ଥିଲା । କେବଳ ରାଧାକୃଷ୍ଣ ଲୀଳା ପ୍ରଚାର ଥିଲା ତାଙ୍କର ଚରମ ଉଦ୍ଦେଶ୍ୟ । ତେଣୁ ସେ ପ୍ରତ୍ୟେକ ଛାନ୍ଦର ଶେଷରେ ସ୍ୱୀୟ ନାମ ପ୍ରଖ୍ୟାପନ ନ କରି କେବଳ କୃଷ୍ଣଚନ୍ଦ୍ରଙ୍କର କୃପା କାମନା କରି କହିଛନ୍ତି—"କହିବାକୁ ଆଜ୍ଞା ହେଉ ଦେବକୀ ଦେବୀର ନାନ" ବା 'କହିବାକୁ ଆଜ୍ଞା ହେଉ ବିମ୍ବାଧର ମୁଖ' ଇତ୍ୟାଦି । ତଥାପି ତାଙ୍କର ସେହି ବିନମ୍ର ଆତ୍ମନିବେଦନ ଭିତରେ ମଧ୍ୟ ଫୁଟିଉଠିଛି ତାଙ୍କର କବିପ୍ରତିଭାର ବିକଚ ଶତଦଳ । ଭାବ, ଭାଷା, ଛନ୍ଦ ଓ ସର୍ବୋପରି ସାଙ୍ଗୀତିକ-ତାରେ 'ରହସ୍ୟମଞ୍ଜରୀ' ଅନନ୍ୟସାଧାରଣ । ମଧ୍ୟଯୁଗୀୟ ପରମ୍ପରାନୁସାରେ ହୁଏତ କେତେକ ସ୍ଥାନରେ କାବ୍ୟଟି ଅଶ୍ଳୀଳତା ଦୋଷଦୁଷ୍ଟ ହୋଇପଡ଼ିଛି । ତଥାପି କାବ୍ୟର

ପ୍ରତ୍ୟେକ ଛାନ୍ଦ ଯେ ତାଙ୍କର ପ୍ରତିଭାର ସୁସ୍ପଷ୍ଟ ସ୍ୱାକ୍ଷର ବହନ କରୁଛି, ତାହା ଯେ କେହି ପାଠକ ସ୍ୱୀକାର କରିବେ । ନାୟକନାୟିକାମାନଙ୍କର ରୂପବର୍ଣ୍ଣନା, ବାହ୍ୟ ପ୍ରକୃତି ବର୍ଣ୍ଣନା, ରାସ ବର୍ଣ୍ଣନା, ଗାୟେନ୍ତ୍ରୀମାନଙ୍କର ନୃତ୍ୟଗୀତାଦିର ବର୍ଣ୍ଣନା ଇତ୍ୟାଦି ଏପରି ମନୋଜ୍ଞ ଓ ଔଚିତ୍ୟ ସମନ୍ୱିତ ଯେ, ତାହା ଯେ କେହି ପାଠକଙ୍କୁ ମୁଗ୍‌ଧ କରିବ ।

କେବଳ ପ୍ରତିଭା ଜଣଙ୍କୁ ଉଚ୍ଚକୋଟୀର କବିସ୍ଥାନରେ ଅଧିଷ୍ଠିତ କରି ନ ପାରେ । ସେଥିପାଇଁ ଅଭ୍ୟାସ ବା ବହୁ ଶାସ୍ତ୍ରାଧ୍ୟୟନ ମଧ୍ୟ ଅତ୍ୟାବଶ୍ୟକ । ସେ ଦୃଷ୍ଟିରୁ ମଧ୍ୟ କବି ନ୍ୟୁନ ନ ଥିଲେ । ରହସ୍ୟମଞ୍ଜରୀ କାବ୍ୟ ପାଠକଲେ ମନେହୁଏ, କବି ବହୁ ପୁରାଣ, ଦର୍ଶନ, ସ୍ମୃତି, ଯୋଗ, ଛନ୍ଦ ଓ ସଙ୍ଗୀତ ପ୍ରଭୃତିରେ ବ୍ୟୁତ୍ପତ୍ତି ଲାଭ କରିଥିଲେ ଏବଂ ସେସବୁରୁ ଲବ୍‌ଧ ତତ୍ତ୍ୱମାନଙ୍କର ସମୀଚୀନ ସଂଯୋଜନ କରି କବି ସ୍ୱୀୟ କାବ୍ୟକୁ ଋଦ୍ଧିମନ୍ତ କରି-ଅଛନ୍ତି । ଏହା ବ୍ୟତୀତ କବିଙ୍କର କଳ୍ପନା ଓ ସୂକ୍ଷ୍ମ ଭାବନାଶକ୍ତି ମଧ୍ୟ ତାଙ୍କର ଉଚ୍ଚ ପ୍ରତିଭାର ପରିଚାୟକ ।

କବି ଶୂନ୍ୟସଂହିତା ଦ୍ୱାରା ବହୁ ଭାବରେ ପ୍ରଭାବିତ । ଦ୍ୱାରକାରେ ଶ୍ରୀକୃଷ୍ଣ ଦିନକୁ ଦିନକୁ ଦିନ ଭଗ୍ନସ୍ୱାସ୍ଥ୍ୟ ହୋଇପଡ଼ିବାରୁ ଅଷ୍ଟପାଟବଂଶୀ ତାଙ୍କୁ କାରଣ ଜିଜ୍ଞାସା କରିବାରୁ ଶ୍ରୀକୃଷ୍ଣ ଉତ୍ତରରେ କହିଥିଲେ—

"ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ
ଏକଭାଜ ବେନଫାଳ ଯୁଗଳ ଅଙ୍ଗରେ ।

× × ×

ନବଧା ଭକ୍ତିରେ ଶତେ ସୁର୍ଯ୍ୟ ଛନ୍ତି ରହି
ମୋର ମନ ହରେ ରାଧା ପ୍ରୀତିରସ ଦେଇ ।
ତାଙ୍କ ବିନୁ କ୍ଷୀଣ ହେଲା ଆମ୍ଭର ଶରୀର
କ୍ଷଣେ ନ ଭେଟନ୍ତୁଁ ଯେ ଅମ୍ଭେ ରାଧା ପ୍ରେମ ଆଳ ।"

ଏହା ଶୂନ୍ୟ ସଂହିତାର ନିମ୍ନୋକ୍ତ ପଂକ୍ତିର ପ୍ରଭାବରେ ପ୍ରଭାବିତ ହୋଇଥିବା ଅନୁମାନ କରାଯାଇପାରେ ।

"ବେନଚକ୍ଷୁ ମଧ୍ୟେ ରାଧା କୃଷ୍ଣେ ଛନ୍ତି ପୂରି
ଅଲଗା ନୁହନ୍ତି ତିଳେ ଏକ ଅଙ୍ଗଧରି,
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତେ,
ପୂରିଛନ୍ତି ରାଧାକୃଷ୍ଣ ସବୁଙ୍କରି ନେତେ ।
ତୁମ୍ଭେ ରାଜସିକା ସିନା କିବା ଭକ୍ତି ଜାଣ
ନବଧା ଭକ୍ତିରେ ମଗ୍ନ ଗୋପକନ୍ୟାଗଣ ।"

କବି ଶୂନ୍ୟସଂହିତା ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଥିଲେ ହେଁ ନିଜର ପ୍ରତିଭା, ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତା ବଳରେ ସେ ସବୁକୁ ଏକାନ୍ତ ନିଜର କରିପାରିଛନ୍ତି । ଫଳତଃ ରହସ୍ୟମଞ୍ଜରୀର ବହୁ ଛନ୍ଦରେ କବିଙ୍କର ଉକ୍ତ ଗୁଣ ସମୂହର ମନୋଜ୍ଞ ପରିପ୍ରକାଶ ସମ୍ଭବ ହୋଇପାରିଛି । ସେହିପରି ଚତୁର୍ବ୍ୟୂହର ଅବତାରଣା ମଧ୍ୟ କବିଙ୍କର ପାଣ୍ଡିତ୍ୟ ତଥା ବହୁ ଶାସ୍ତ୍ରଦର୍ଶିତାର ପରିଚୟ ଦେଇଥାଏ ।

## ଦେବଦୁର୍ଲ୍ଲଭଙ୍କ ରାଧା—

ଦେବଦୁର୍ଲ୍ଲଭଙ୍କ ଲେଖନୀରେ ରାଧାଙ୍କର ସ୍ୱରୂପ ନିର୍ଣ୍ଣୟ ପୂର୍ବରୁ ଆମକୁ ରାଧାଙ୍କର ଅସଲ ରୂପଟି ସହ ପରିଚିତ ହେବାକୁ ପଡ଼ିବ । ତାହା ନ ହେଲେ ରାଧାତତ୍ତ୍ୱ ଯେ କେବଳ ଜଟିଳ ହୋଇଉଠିବ ତା' ନୁହେଁ, ରାଧା ନିଜେ ମଧ୍ୟ ରହସ୍ୟମୟ ହୋଇ ରହିଯିବେ ।

ବାୟୁ ପୁରାଣର ୧୦୪ ଅଧ୍ୟାୟରେ 'ରାଧା' ଶବ୍ଦର ଏକ ଚମତ୍କାର ଆକ୍ଷରିକ ବ୍ୟାଖ୍ୟା ଦେଖିବାକୁ ମିଳେ । ଏହି ବ୍ୟାଖ୍ୟା ଅନୁସାରେ ରାଧା = ର୍ + ଆ + ଧ୍ + ଆ । ଏହାର ସୂକ୍ଷ୍ମାର୍ଥ ହେଲା—

ର = କୋଟି ଜନ୍ମାର୍ଜିତ ପାପ ଓ ଶୁଭାଶୁଭ କର୍ମଭୋଗ
ଆ = ଗର୍ଭବାସ, ମୃତ୍ୟୁ ଓ ରୋଗ
ଧ୍ = ଆୟୁଃ କ୍ଷୟ
ଆ = ସଂସାର ବନ୍ଧନ ।

ଯାହାଙ୍କୁ ନମସ୍କାର ମାତ୍ରେ ଏସବୁ ପାପରୁ ପ୍ରାଣୀ ମୁକ୍ତିଲାଭ କରେ । ଦେବୀ-ଭାଗବତରେ ରାଧାଙ୍କ ସ୍ୱରୂପ ମୁଖ୍ୟତଃ ଏହିପରି ଭାବରେ ପ୍ରକାଶ କରାଯାଇଅଛି—

"ମୂଳ ପ୍ରକୃତିରୂପିଣୀ ଚିନ୍ମୟୀ ଭୁବନେଶ୍ୱରୀ"

ପୁଣି ରାଧାତନ୍ତ୍ରରେ ବର୍ଣ୍ଣନା କରାଯାଇଅଛି—

"ରକ୍ତ ବିଦ୍ୟୁତ୍‌ପ୍ରଭା ଦେବୀ ଧରେ ଯସ୍ମାତ ଶୁଚିସ୍ମିତେ
ତସ୍ମାତ୍ ରାଧିକା ନାମ ସର୍ବଲୋକେଷୁ ଗୀୟତେ"

ନିରୁକ୍ତ ଗ୍ରନ୍ଥରେ ରାଧା ଶବ୍ଦର ଯେଉଁ ମାର୍ମିକ ବ୍ୟାଖ୍ୟା ଦେଖିବାକୁ ମିଳେ, ତାହା ହେଲା 'ରା' ଶବ୍ଦରେ ଦାନ ଓ 'ଧା' ଶବ୍ଦରେ ନିର୍ବାଣ ମୁକ୍ତିର ଅନ୍ୱେଷଣ । ବ୍ରହ୍ମ-ବୈବର୍ତ୍ତ ପୁରାଣ, ରାଧାତନ୍ତ୍ର, ଦେବୀ ଭାଗବତ, ବାୟୁ ପୁରାଣ, ନିରୁକ୍ତ ଗ୍ରନ୍ଥମାନଙ୍କରେ ରାଧାଙ୍କର ଯେଉଁ ସ୍ୱରୂପ ପ୍ରକାଶ ପାଇଚି, ସେଥିରେ ରାଧାଶବ୍ଦର ଆକ୍ଷରିକ ତଥା ମାର୍ମିକ

ବ୍ୟାଖ୍ୟା ଉପରେ ହିଁ ପ୍ରାଧାନ୍ୟ ଦିଆଯାଇ ଅଛି । ପୁଣି କେତେକ ଗ୍ରନ୍ଥରେ ରାଧାଶବ୍ଦର ଧାତୁଗତ ଅର୍ଥ ମଧ୍ୟ ପ୍ରଦତ୍ତ । 'ରାଧ' ଧାତୁର ଅର୍ଥ ସଫଳ ହେବା । ଏହି ଧାତୁରୁ ରାଧା ଶବ୍ଦ ନିଷ୍ପନ୍ନ ହୋଇଅଛି । କୃଷ୍ଣପ୍ରାପ୍ତି ନିମନ୍ତେ ରାଧା ହିଁ ହେଉଛନ୍ତି ସାଫଲ୍ୟର ପ୍ରଥମ ଦ୍ୱାର । ସେଥିପାଇଁ ଗୌଡ଼ୀୟ ବୈଷ୍ଣବ କବିମାନେ କିଶୋରୀ ରାଧାଙ୍କର ଦାସୀ ହେବାକୁ କାମନା କରିଥାଆନ୍ତି । କବି ଅଭିମନ୍ୟୁ ମଧ୍ୟ ଏହି କାମନା ପୋଷଣ କରି ବିଦଗ୍ଧ ଚିନ୍ତାମଣିରେ କହିଅଛନ୍ତି—

"ଓଷଧୀଶାନନ ହେ ମାଗୁଛି ପଦଧରି
ଓ କରିବ ଆଲୋ ଦାସୀ ଡାକଲେ କିଶୋରୀ"

ତେଣୁ ସମଗ୍ର ବୈଷ୍ଣବ ସାହିତ୍ୟରେ ରାଧାଙ୍କର ମାହାତ୍ମ୍ୟ ପରିକୀର୍ତ୍ତିତ । ଶ୍ରୀକୃଷ୍ଣ ଦ୍ୱାରିକାର ଭୁବନର ଐଶ୍ୱର୍ଯ୍ୟମୟ ବିଭବ କୋଳରେ ଅଷ୍ଟପାଟବଂଶୀଙ୍କର ସମସ୍ତ ସ୍ନେହ ମମତାକୁ ତୁଚ୍ଛ କରି ଦେଇଛନ୍ତି ଏହି ରାଧାଙ୍କ ଅଭାବରେ । ସମସ୍ତ ବ୍ରହ୍ମାଣ୍ଡ ତାଙ୍କୁ ଶୂନ୍ୟ-ବୋଧ ହୋଇଛି । କାରଣ ରାଧା ଓ କୃଷ୍ଣ ଏକ ଓ ଅଭିନ୍ନ । ବାହ୍ୟଗଠନ ଭିନ୍ନ ହେଲେ ହେଁ, ସେମାନଙ୍କର ଭିତର ଯେ ଏକ, ଏହା ବହୁ ବୈଷ୍ଣବସାଧକ କବିମାନେ ସ୍ୱୀକାର କରିଯାଇ ଅଛନ୍ତି । ରାଧାବାଦ ନେଇ ଗୌଡ଼ୀୟ ଏବଂ ଉତ୍କଳୀୟ ବୈଷ୍ଣବମାନଙ୍କ ମଧ୍ୟରେ ପର୍ଯ୍ୟାପ୍ତ ମତଭେଦ ଦେଖାଦେଲେ ମଧ୍ୟ ତାଙ୍କର ସଂରକ୍ଷିତ ସମ୍ମାନ ପ୍ରତି କେହି ଅନାସ୍ଥାଭାବ ପ୍ରଦର୍ଶନ କରି ନାହାନ୍ତି । ଗୌଡ଼ୀୟମାନଙ୍କ ମତାନୁସାରେ ରାଧା ପରଂ-ବ୍ରହ୍ମଙ୍କର ହ୍ଲାଦିନୀ ଶକ୍ତି, ରାଧା ଗୁରୁ ଇତ୍ୟାଦି । କିନ୍ତୁ ଉତ୍କଳୀୟ ବୈଷ୍ଣବମାନଙ୍କ ମତରେ ରାଧା ଓ କୃଷ୍ଣ ଯଥାକ୍ରମେ ଜୀବ ଓ ପରମ । ଏକ ବୀଜର ଦୁଇଟି ଦଳ । ସାଧକ ଅଚ୍ୟୁତଙ୍କ ଭାଷାରେ ଭଗବାନ ଶ୍ରୀକୃଷ୍ଣ କହିଛନ୍ତି:—

"ଆଗେ ରାଧା ପଛେ ମୁହିଁ ଲମ୍ପଟ ଭାବରେ
ଏକ ବୀଜ ଦେନି ଫାଳ ଯୁଗଳ ଅଙ୍ଗରେ ।"

ସେହିପରି କବି ଓ ସାଧକ ଦେବଦୁର୍ଲ୍ଲଭଙ୍କ ଭାଷାରେ :—

"ସେ ମହା ରାସମଣ୍ଡଳୀ ନିତ୍ୟ ବୃନ୍ଦାବନେ,
ତହିଁ ମୁଁ ବଞ୍ଚଇ ରାଧା ଅଙ୍ଗ ଆଲିଙ୍ଗନେ ।"

ତେବେ ଆଧ୍ୟାତ୍ମିକ ଦୃଷ୍ଟିରୁ ଯାହା ହେଉନା କାହିଁକି, କାବ୍ୟନାୟିକା ଭାବରେ ଦେବଦୁର୍ଲ୍ଲଭଙ୍କ କାବ୍ୟରେ ରାଧାଙ୍କର ସ୍ଥାନ ମଧ୍ୟ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ରୁକ୍ମଣୀ ଯଦିଓ କାବ୍ୟରେ ମୁଖ୍ୟା ନାୟିକା; ତଥାପି ରାଧାଙ୍କର ବିଭିନ୍ନ ଅବସ୍ଥାର ବର୍ଣ୍ଣନା ଓ ତାଙ୍କର ବିରହବିଧୁର ଜୀବନ ଚିତ୍ର କାବ୍ୟଟିରେ ଅତି ମଞ୍ଜୁଳ ଭାବରେ ବିକଶିତ ହୋଇଛି ।

ନବମ ଓ ଦଶମ ଛାନ୍ଦରେ ରାଧାଙ୍କର ବିରହୋତ୍କଣ୍ଠା ଚରମ ସୀମାରେ ଉପନୀତ । ତେଣୁ ସେ ସଖୀମାନଙ୍କୁ ପରାମର୍ଶ ଦେଇ ମଲ୍ଲିକନ୍ୟାମାନଙ୍କୁ ପ୍ରେରଣ କରିଛନ୍ତି । ତା ସଙ୍ଗେ ସଙ୍ଗେ ୧୦ମ ଛାନ୍ଦରେ ସେ ଜୀବନର ସବୁ କିଛି ଦେଇ ଦୂତୀଙ୍କୁ ପ୍ରେରଣ କରିଛନ୍ତି ଗୋପକୁଳଚନ୍ଦ୍ରମା ମଥୁରାନିବାସୀ କୃଷ୍ଣଙ୍କ ନିକଟକୁ । ଦ୍ୱାଦଶ ଛାନ୍ଦରେ ସେହିପରି ବିରହିଣୀ ରାଧିକାର ମନୋଭାବ କବି ଯେପରି ଭାବରେ ଚିତ୍ରଣ କରିଛନ୍ତି, ତାହା ଯେ କୌଣସି ମରମୀ ପାଠକର ପ୍ରାଣ ସିକ୍ତ କରିବ, ଏଥିରେ ଟିକିଏ ହେଲେ ସନ୍ଦେହ ନାହିଁ । ତ୍ରୟୋଦଶ ଛାନ୍ଦ ତ କାବ୍ୟ ମଧ୍ୟରେ ଅନବଦ୍ୟ । ବିୟୋଗିନୀ ରାଧିକାଙ୍କର ବିରହ ଦଶା ଏହି ଛାନ୍ଦରେ ଚରମ ଅବସ୍ଥାରେ ଉପନୀତ ହୋଇଛି । ଏହି ଛାନ୍ଦରେ ରାଧାଙ୍କର ବିରହବ୍ୟାକୁଳ ପ୍ରାଣରେ ଚିତ୍ର ପ୍ରଦାନ କରିବାକୁ ଯାଇ କବି ଯେଉଁ ଅନୁକୂଳ ପରିବେଶ ସୃଷ୍ଟି କରିଛନ୍ତି, ତାହା ଧ୍ୟାନ ଦେବାର ଯୋଗ୍ୟ ।

"ବୃକ୍ଷକୁ ବୃକ୍ଷ ଦେଖାଇ ତରୁଣୀମାନ ଗୁହିଁ,
କୃଷ୍ଣଙ୍କୁ ସୁମରି ବାଲୀ ପଡ଼ନ୍ତି ଢଳି"

ଏପରି ଅବସ୍ଥାରେ ସଖୀମାନେ ତାଙ୍କୁ ସମ୍ଭାଳି ଗନ୍ଧପୁଷ୍କରିଣୀ ନିକଟକୁ ନେଇ ଯାଇଛନ୍ତି । ସେଠାରେ ହଂସ, ଚକ୍ରବାକ, ଡାହୁକ ଇତ୍ୟାଦିଙ୍କର ସମ୍ଭୋଗ ସନ୍ଦର୍ଶନ କରାଇ କବି ରାଧାଙ୍କୁ ଯେପରି ଭାବରେ ଉତ୍କଣ୍ଠିତା କରିଛନ୍ତି, ସେହିପରି ତାଙ୍କୁ ଅଶୋକ ମୂଳକୁ ନେଇ କାମପୂଜା ଛଳରେ ଶୋକ ପରିହାର କରିବାର ପ୍ରଯତ୍ନ କରିଛନ୍ତି ମଧ୍ୟ । କେବଳ ଏତିକି ନୁହେଁ, ଉତ୍କଣ୍ଠିତା ରାଧିକା କୃଷ୍ଣଙ୍କୁ ଫେରାଇ ଆଣିବା ପାଇଁ ବୃକ୍ଷଲତା-ମାନଙ୍କଠାରୁ ଆରମ୍ଭ କରି କୋକିଳ, ମଧୁକର ପ୍ରଭୃତିଙ୍କୁ ମଧ୍ୟ ଦୂତ ଭାବରେ ବରିଛନ୍ତି । ଏହିପରି ଭାବରେ ରାଧାଙ୍କର ଚିତ୍ର ଅତ୍ୟନ୍ତ ମନୋଜ୍ଞ ।

**ଦେବଦୁର୍ଲ୍ଲଭଙ୍କ ଲୀଳାତତ୍ତ୍ୱ ।** ବୈଷ୍ଣବ ଧର୍ମର ଦର୍ଶନରେ ଲୀଳାର ସ୍ଥାନ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଗୌଡ଼ୀୟ ଓ ଉତ୍କଳୀୟ ଉଭୟ ବୈଷ୍ଣବ ଗୋଷ୍ଠୀ ସେମାନଙ୍କର ଭକ୍ତିର ସୋପାନମାନଙ୍କ ମଧ୍ୟରେ ଲୀଳାକୁ ଅଧିକ ଗୁରୁତ୍ୱ ପ୍ରଦାନ କରିଥାନ୍ତି । ତେବେ ଏ ଉଭୟ ଦର୍ଶନ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟ ପରିଲକ୍ଷିତ ହୋଇଥାଏ । ଗୌଡ଼ୀୟମାନେ କଳ୍ପିତ ନିତ୍ୟ ଗୋଲୋକରେ ବିଶ୍ୱାସ ନ କରି ମର୍ତ୍ତ୍ୟ ବୃନ୍ଦାବନକୁ ନିତ୍ୟସ୍ଥଳ ଓ ମର୍ତ୍ତ୍ୟଲୀଳାକୁ ନିତ୍ୟଲୀଳା ଭାବରେ ଗ୍ରହଣ କରିଥାନ୍ତି । କିନ୍ତୁ ଅପର ପକ୍ଷରେ ଉତ୍କଳୀୟ ବୈଷ୍ଣବମାନେ ମର୍ତ୍ତ୍ୟଲୀଳାକୁ ସ୍ୱୀକାର କରୁଥିଲେ ମଧ୍ୟ ନିତ୍ୟଲୀଳାକୁ ଶ୍ରେଷ୍ଠ ସ୍ଥାନ ପ୍ରଦାନ କରିଥାନ୍ତି । ଉତ୍କଳୀୟ ବୈଷ୍ଣବ ଦେବଦୁର୍ଲ୍ଲଭ ମର୍ତ୍ତ୍ୟ ଓ ନିତ୍ୟ ଉଭୟ ଲୀଳାର ବର୍ଣ୍ଣନା ପ୍ରଦାନ କରିଛନ୍ତି । ପୁରୁଷ ଅଙ୍ଗରେ କେହି ଲୀଳା ଦର୍ଶନ କରିପାରିବ ନାହିଁ । କବି କେବଳ ଏକଥା ବର୍ଣ୍ଣନା କରିନାହାନ୍ତି, ପଦ୍ମ ପୁରାଣ ଓ ଆଦି ପୁରାଣରେ ମଧ୍ୟ ଏ କଥାର ଉଲ୍ଲେଖ ରହିଛି । କବି ମଧ୍ୟ ତାହା ବର୍ଣ୍ଣନା କରିଛନ୍ତି, ନିମ୍ନଲିଖିତ ଭାବରେ—

"ପ୍ରେମଭକ୍ତି ପ୍ରାପତ ଗୋପୀଙ୍କ ପରସନେ
ପୁଲଙ୍ଗ ପାଲଟି ସ୍ତ୍ରିଷ୍ଠ ହୁଅଇ ତକ୍ଷଣେ । × × ×
ପୁରୁଷ ଅଙ୍ଗରେ କେହୁ ଦର୍ଶନ କରବ,
ମୁଣ୍ଡର ଉପରେ କେହୁ ମୁଣ୍ଡକେ ବହବ ।
ସ୍ତ୍ରିଷ୍ଠବୃନ୍ଦ ମଧ୍ୟରେ ପୁରୁଷବର ମୁହିଁ,
ସେ ପୁରେ ପଶିବ କେ ପୁରୁଷ ଅଙ୍ଗ ବହ ?"

ଭଗବାନ କେବଳ ହିଁ ପୁରୁଷ ଏବଂ ପ୍ରକୃତ ତାହାଙ୍କର ଦାସୀ । ପ୍ରକୃତ ଅନ୍ତର୍ଗତ ଜୀବଜଗତ ମଧ୍ୟ ପ୍ରକୃତ୍ୟାତ୍ମିକ । ତେଣୁ ନାରୀ । ଏହ ଜୀବର ସ୍ତ୍ରୀତ୍ୱରେ ପରମଠାରେ ପ୍ରୀତ ହିଁ ଗୋପଲୀଳା । କେବଳ ହନ୍ଦୁ ଦର୍ଶନରେ ନୁହେଁ, ବାଇବେଲ ଓ ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ଭଗବାନ ଓ ଜୀବର ପ୍ରେମ ପତପତ୍ନୀର ପ୍ରେମ ସମ୍ପର୍କ ଭାବରେ ବର୍ଣ୍ଣିତ ହୋଇଛ । କନ୍ତୁ ଏଠାରେ ଗୋଟିଏ କଥା ସ୍ମରଣ ରଖିବାକୁ ହେବ ଯେ, ସ୍ତ୍ରୀତ୍ୱ ପ୍ରାପ୍ତିର ଅର୍ଥ ପୁଂସତ୍ୱର ପରହାର । ତାହାର ଆଧ୍ୟାତ୍ମିକ ଅର୍ଥ ଅହଂ ଭାବର ବନାଶ । ଏହ ଅହଂ ଭାବର ବନାଶରେ ବାସ୍ତବରେ ଭଗବତ୍ ପ୍ରାପ୍ତି ସମ୍ଭବପର ହୋଇଥାଏ । ଏହା ହିଁ ସ୍ତ୍ରୀତ୍ୱ ପ୍ରାପ୍ତିର ଆଧ୍ୟାତ୍ମିକ ବ୍ୟାଖ୍ୟା । ଏହପର ଭାବରେ ଲୀଳାର ସୁନ୍ଦର ଚତ୍ର ପ୍ରଦାନ କର କବ ଆଧ୍ୟାତ୍ମିକ ତଥା ସାହତ୍ୟକ ଉଭୟ ଦଗରୁ 'ରହସ୍ୟମଞ୍ଜରୀ'ର ମୂଲ୍ୟ ବୃଦ୍ଧି କରଅଛନ୍ତ ।

**ରହସ୍ୟମଞ୍ଜରୀରେ ପ୍ରକୃତ**—ଯୁଗେ ଯୁଗେ ପ୍ରକୃତ କବ, ସାହତ୍ୟକ, ଦାର୍ଶନକମାନଙ୍କ ହୃଦୟରେ ସ୍ପନ୍ଦନ ସୃଷ୍ଟି କର ସେମାନଙ୍କ ମଧ୍ୟରେ ଜଗାଇଛ ସୃଷ୍ଟିର ବପୁଳ ପ୍ରେରଣା । ସେହ ପ୍ରେରଣାର ବଶବର୍ତ୍ତୀ ହୋଇ ପ୍ରକୃତକୁ କେନ୍ଦ୍ର କର କବ ସୃଷ୍ଟି କରଯାଇଛ ରାଶି ରାଶି କାବ୍ୟ ଛନ୍ଦ । ତେଣୁ ସାହତ୍ୟରେ ପ୍ରକୃତର ପ୍ରାଧାନ୍ୟ ଯେ ଯଥେଷ୍ଟ ବେଶି; କହଲେ ବାହୁଲ୍ୟ ହେବ ।

ରହସ୍ୟମଞ୍ଜରୀର ଦ୍ୱାଦଶ ଛାନ୍ଦରେ କବ ଦେବଦୁର୍ଲ୍ଲଭ ବାରମାସୀ ପ୍ରକୃତର ଏକ ଅନବଦ୍ୟ ଚତ୍ର ଦେଇଅଛନ୍ତ । ପ୍ରତଟି ମାସ ଓ ଋତୁରେ ପ୍ରକୃତ ରାଜ୍ୟରେ ଯେଉଁ ବପୁଳ ପରବର୍ତ୍ତନ ସଂଘଟିତ ହୋଇଯାଉଛ, କବ ଅତ୍ୟନ୍ତ ଦକ୍ଷତାର ସହ ତାହାର ବର୍ଣ୍ଣନା କରଅଛନ୍ତ । ଗ୍ରୀଷ୍ମଋତୁରେ ଆମ୍ବ, ପଣସ ପାଚଯିବା, ପାଣି ତାତଯିବା, ବର୍ଷା-ଋତୁରେ ଘଡ଼ଘଡ଼ି ଚଡ଼ଚଡ଼ିର ଗର୍ଜ୍ଜନ, ଶରତ ଋତୁରେ ମେଘର ନାନାବର୍ଣ୍ଣ ଶୋଭା, ଶୀତ ଋତୁରେ କାକର ପଡ଼ିବା, ଶିଶିର ଋତୁରେ ମକର ସ୍ନାନ, ବସନ୍ତ ଋତୁରେ ରାଧା-ମାଧବଙ୍କ ରସ୍‌ଚେଷ୍ଟା ଖେଳ କବ ଲେଖନୀରେ ଅତ ଜୀବନ୍ତ ଭାବରେ ଫୁଟି ଉଠିଛ । ପ୍ରକୃତ ଚତ୍ରଣରେ ଶୃଙ୍ଗାରକବ ଦେବଦୁର୍ଲ୍ଲଭଙ୍କ ପ୍ରକୃତ ବର୍ଣ୍ଣନାର ଅନ୍ୟତମ ବୈଶିଷ୍ଟ୍ୟ, ପରବର୍ତ୍ତୀ

ସମସ୍ତରେ ଉପେନ୍ଦ୍ରଙ୍କ ପ୍ରକୃତି ଚିତ୍ରଣରେ ଏହି ଚିତ୍ରଣ-ଶିଳ୍ପର ଅଧିକ ବିକାଶ ହୋଇଥିଲେ ହେଁ, ଏହାର ଆଦ୍ୟ ପ୍ରବର୍ତ୍ତକ ହିସାବରେ ଦେବଦୁର୍ଲ୍ଲଭ ହିଁ ସ୍ମରଣୀୟ । କବିଙ୍କ ଭାଷାରେ—

"ଗମ୍ଭୀର ଘରରେ ଗୋ ଗ୍ରୀଷ୍ମେ ନୋହେ ଶୋଇ
ଦକ୍ଷିଣ ମେଲ ମନ୍ଦିରେ ପ୍ରଭୁ ସଙ୍ଗେ ରହି
କର୍ପୂର ଚନ୍ଦନ ସୁଶୀତଳ ଜଳେ ଗୋଳି
ସ୍ୱାମୀ ସଙ୍ଗେ ବିବିଧ ବିନୋଦେ ବୋଲାବୋଲି ।"

ଏହିପରି ପ୍ରତ୍ୟେକ ଋତୁ ବର୍ଣ୍ଣନାରେ ଶୃଙ୍ଗାର ରସର ସୂଚନା ପ୍ରଦତ୍ତ ହୋଇଛି । ବସ୍ତୁତଃ ଏହା ହିଁ ଦେବଦୁର୍ଲ୍ଲଭଙ୍କ ପ୍ରକୃତି ଚିତ୍ରଣର ସର୍ବୋତ୍କୃଷ୍ଟ ଓ ସର୍ବଶ୍ରେଷ୍ଠ ବୈଶିଷ୍ଟ୍ୟ ।

ବାସ୍ତବିକ ଓଡ଼ିଆ ସାହିତ୍ୟ ରାଜ୍ୟରେ ରହସ୍ୟମଞ୍ଜରୀ ଯେଉଁ ରହସ୍ୟର ଦ୍ୱାର ଉଦ୍‌ଘାଟନ କରିଦେଇଛି, ସେହି ରହସ୍ୟ କବି ଦେବଦୁର୍ଲ୍ଲଭଙ୍କ ଅମର ଲେଖନୀର ଜୟଗାନରେ ମୁଖରିତ ହୋଇଉଠିଛି । କବି ଇହଲୋକରୁ ବିଦାୟ ନିଏ । ତା'ର ମରଣଶୀଳ ଦେହ ନଷ୍ଟ ହୋଇଯାଏ । ମାତ୍ର ତା'ର କାବ୍ୟ ମରି ପାରେନା । ତାହାରି ମଧ୍ୟରେ ସେ ଚିରକାଳ ପାଇଁ ଜୀଇଁ ରହେ । ସେ ହୁଏ ଅମର । କବି ଦେବଦୁର୍ଲ୍ଲଭ ମରଣଶୀଳରରେ ଆଜି ନାହାନ୍ତି, ମାତ୍ର ସାହିତ୍ୟ-ସାଧନାର ଅମଡ଼ାବାଟରେ ଯେଉଁ ନୂତନ ସରଣୀ ଉଦ୍‌ଘାଟନ କରି ଦେଇଯାଇଛନ୍ତି ଓ ସାହିତ୍ୟକୁ ଦେଇଛନ୍ତି ଅପୂର୍ବ ଦିଗ୍‌ଦର୍ଶନ, ତାହା ତାଙ୍କୁ ଓଡ଼ିଆ ସାହିତ୍ୟ ବଞ୍ଚି ରହିଥିବା ପର୍ଯ୍ୟନ୍ତ ଅମର କରି ରଖିବ ।



# ଦୀନକୃଷ୍ଣ ଓ ରସକଲ୍ଲୋଳ

କାବ୍ୟ କବିର ମାନସନନ୍ଦିନୀ, କବିର ମାନସଛବି । ଜୀବନର ଅଭିବ୍ୟକ୍ତି କାବ୍ୟମୁକୁରରେ ପ୍ରତିବିମ୍ବିତ ହୁଏ । କବିର ଜୀବନ ଆଲେଖ୍ୟ, ଜୀବନ ଦର୍ଶନ କାବ୍ୟକୁ ଯେତେ ସ୍ପଷ୍ଟ କରେ, କାବ୍ୟାତ୍ମା ସେତେ ବଳିଷ୍ଠ ହୁଏ । କାବ୍ୟ ସେତେ ସୁଖପାଠ୍ୟ, ଶ୍ରବଣ ସୁଖଦାୟୀ ହୁଏ । କାଳିଦାସଙ୍କ ମେଘଦୂତରେ ବିରହ ବିଧୁର ଯକ୍ଷ କାଳିଦାସ ନିଜେ ଆଷାଢ଼ର ପ୍ରଥମ ସମାଗମରେ ନବଢ଼ କାଦମ୍ବିନୀମାଳାର ବର୍ଣ୍ଣବୈଭବ, ନୀପକୁ ସୁମର ଶୀତଳ ସୁରଭି, କେକାକେକୀର ହର୍ଷୋତ୍ଫୁଲ୍ଲ ରବ କାଳିଦାସଙ୍କ ପ୍ରାଣକୁ ରସାଣିତ କରିଛି । ତେଣୁ ମେଘଦୂତରେ କାଳିଦାସ ନିଜକୁ ପୂର୍ଣ୍ଣ ଭାବରେ ପ୍ରକାଶ କରିଅଛନ୍ତି । କେବଳ ଯେ କବିଙ୍କ ଜୀବନୀ କାବ୍ୟରେ ପ୍ରତିଭାସିତ ହୁଏ, ତାହା ନୁହେଁ; ପରନ୍ତୁ ଦେଶର ପାରିପାର୍ଶ୍ୱିକ ଅବସ୍ଥା, ସାମାଜିକ, ରାଜନୈତିକ ଓ ଅର୍ଥନୈତିକ ଅବସ୍ଥାର ଚିତ୍ର ମଧ୍ୟ କାବ୍ୟରେ ପ୍ରତିଫଳିତ ହୋଇଥାଏ । ଦୀନକୃଷ୍ଣଙ୍କ ରସକଲ୍ଲୋଳ ପାଠ କଲେ ତାଙ୍କ ଜୀବନର ଛାୟା କିପରି କାବ୍ୟକଳେବରକୁ ଦୃଢ଼ଭାବରେ ଅଚ୍ଛନ୍ନ କରିଛି, ତାହା ସ୍ପଷ୍ଟରୂପେ ପ୍ରତୀୟମାନ ହୁଏ । ଜୀବନର ତିକ୍ତାନୁଭୂତି, ଆଶା, ନିରାଶା, ନିରାନନ୍ଦ ହିଁ କବିଜୀବନକୁ ଉଦ୍‌ବେଳିତ କରିଛି । ସମାଜର ତାଡ଼ନା, ଅର୍ଥନୈତିକ ଅନଟନ ଓ ପ୍ରତିବେଶୀର ନିର୍ଯ୍ୟାତନା ତାଙ୍କ ହୃଦୟକୁ ବିକ୍ଷୋଭିତ କରିଛି । ସର୍ବୋପରି ନିଜର ଶାରୀରିକ ଅସୁସ୍ଥତା ଓ ରାଜଦଣ୍ଡ ତାଙ୍କୁ ବିଶେଷଭାବରେ ବ୍ୟଥିତ କରିଛି । ତଥାପି ଅଦମ୍ୟ ସାହସ ଓ ଅସାମାନ୍ୟ ଧୈର୍ଯ୍ୟ ବଳରେ ସେ ନିଜକୁ ପ୍ରତିଷ୍ଠା କରି ଯାଇଛନ୍ତି । କେଉଁଆଡ଼ୁ ଆଶ୍ରୟ ନ ପାଇ କବି ଧରି ବସିଲେ କଲମ । ନୀଳାଚଳନାଥ ଜଗନ୍ନାଥଙ୍କ ପାଦ ପଦ୍ମରେ ଜୀବନ-ନୈବେଦ୍ୟ ଅର୍ପଣ କରି ପରମାରାଧ୍ୟ ଲୀଳାମୟ ଗୋପୀଜନବଲ୍ଲଭ କୃଷ୍ଣଙ୍କ ଚରିତବର୍ଣ୍ଣନାରେ ମନପ୍ରାଣ ଢାଳିଦେଇ ଆଦର୍ଶ ବୈଷ୍ଣବ ରୂପେ ତାଙ୍କ ଶ୍ରେଷ୍ଠ ଭକ୍ତିର ଜ୍ୱଳନ୍ତ ନିଦର୍ଶନ ଦେଖାଇ ଦେଇଅଛନ୍ତି । ଲୀଳାଚତୁର ଶ୍ରୀକୃଷ୍ଣଙ୍କ ନୟନାଭିରାମ ରୂପ ସେ ନିତ୍ୟ ଚକ୍ଷୁ ସମକ୍ଷରେ ଧରି କୃଷ୍ଣଚରିତ ଗାନ କରି ଯାଇଅଛନ୍ତି । ତେଣୁ ତାଙ୍କ ରସକଲ୍ଲୋଳ ପାଠକ ହୃଦୟରେ ରସଭଣ୍ଡାର ସୃଷ୍ଟି କରେ । ଉଚ୍ଚକୋଟୀର କବିତ୍ୱ ସହ କବି ସ୍ୱୀୟ କାବ୍ୟରେ ନିଜର ଧର୍ମପ୍ରାଣତା, ଆଧ୍ୟାତ୍ମିକତା, ଆତ୍ମବିଶ୍ୱାସ, ଆତ୍ମନିଷ୍ଠା, ଆତ୍ମବଳ, ଜୀବନର ପରମ ବୈଷ୍ଣବପ୍ରାଣତା, କର୍ତ୍ତବ୍ୟନିଷ୍ଠା. ରସିକତା; ସୁଗଭୀର ଅଭିଜ୍ଞତା; ତେଜସ୍ୱୀତା ପ୍ରଭୃତି

ତଦ୍‌ଗୁଣବୃନ୍ଦର ନିଦର୍ଶନ ଦେଇଯାଇଅଛନ୍ତି । ବିଶେଷତଃ ତାଙ୍କର ନାଥପ୍ରୀତି, ଉତ୍କଳୀୟତ୍ୱ, ପୁରୀର ନିତ୍ୟତା, ସର୍ବାଗ୍ରେ ତାଙ୍କ କାବ୍ୟରେ ସୂଚିତ ହୋଇଅଛି । ତେଣୁ କବି ରସିକଶେଖର କଳାମୟ କୃଷ୍ଣଙ୍କର ଚରିତ ବର୍ଣ୍ଣନା କଲେ ମଧ୍ୟ ଗ୍ରନ୍ଥାରମ୍ଭରେ ନୀଳଗିରିପତି କୈବଲ୍ୟ ଦାୟକ ଜଗନ୍ନାଥଙ୍କୁ ବନ୍ଦନା କରିଅଛନ୍ତି । ଜଗନ୍ନାଥ ତାଙ୍କର ସର୍ବସ୍ୱ । ପରମଅବତାରୀ ରୂପେ ସେ ଜଗନ୍ନାଥଙ୍କୁ ବର୍ଣ୍ଣନା କରିଅଛନ୍ତି । ମତ୍ସ୍ୟ, କୂର୍ମ ଓ କୃଷ୍ଣ ଅବତାରାଦି ସେହି ଜଗନ୍ନାଥଙ୍କ ଅଂଶର ଆବିର୍ଭାବ, ଏହା କବି ପ୍ରାରମ୍ଭରେ ଦର୍ଶାଇ-ଅଛନ୍ତି । ସେ କୃଷ୍ଣଙ୍କୁ ଅବତାର ରୂପେ ଗ୍ରହଣ କରିନାହାନ୍ତି । ତାଙ୍କ ମତରେ କୃଷ୍ଣ ଅବତାର ମାତ୍ର ଜଗନ୍ନାଥ ଅବତାରୀ—ଏହା ତାଙ୍କର ଉତ୍କଳୀୟ ବୈଷ୍ଣବ ଭାବର ସୂଚନା । ଦିବାକର ଦାସ ଚରିତାମୃତରେ ଲେଖିଛନ୍ତି—

"ଜଗନ୍ନାଥ ଯେ ଷୋଳକଳା ।
ତହୁଁ କଳାଏ ନନ୍ଦବଳା
କଳାକୁ ଷୋଳକଳା କରି
ଗୋପେ ବିହରେ ନରହରି ।"

କବି ଦୀନକୃଷ୍ଣ ଉପରୋକ୍ତ ମତର ସମର୍ଥକ ଅଟନ୍ତି । ତେଣୁ ସେ ଜଗନ୍ନାଥଙ୍କୁ ହିଁ ପୂର୍ଣ୍ଣ ବୋଲି ଧରିଛନ୍ତି । ଭାଗବତାନୁଯାୟୀ ସେ କୃଷ୍ଣଙ୍କୁ "ଏତେଚାଂଶ କଳାଃ ପୁଂସ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍" ବୋଲି କହିନାହାନ୍ତି । ବରଂ ସେ ଲେଖିଲେ—

"କମଳ ନେତ୍ରୀ କମଳ ପ୍ରାଣନାୟକ
କଳା ପଟନ୍ତରେ ଲୀଳା କରି ଅନେକ
କଲେ ଇଚ୍ଛା ମନେ ହେବା କଂସଅନ୍ତକ
କରିବା ଉଶ୍ୱାସ ମହୀଭାର ଯେତେକ ।
କପଟେ ହୋଇବା ବ୍ରଜେ ନନ୍ଦବାଳକ
କଉତୁକେ ବୋଲାଇବା ପଶୁପାଳକ ।"

କେହି କେହି ଭୁଲବଶତଃ ଦୀନକୃଷ୍ଣଙ୍କୁ ଗୌଡ଼ୀୟବୈଷ୍ଣବ ସମ୍ପ୍ରଦାୟଭୁକ୍ତ ବୋଲି ମତପୋଷଣ କରନ୍ତି; ମାତ୍ର ଏହା ସମ୍ପୂର୍ଣ୍ଣ ଭ୍ରମାତ୍ମକ । ଦୀନକୃଷ୍ଣ ବୃନ୍ଦାବନକୁ ନ ଯାଇ ନୀଳାଚଳକୁ ନିତ୍ୟ ବୃନ୍ଦାବନ ରୂପେ ଗ୍ରହଣ କରିଛନ୍ତି । କାବ୍ୟର ଉପସଂହାରରେ କବି ପୁଣି ତାଙ୍କର ମନୋରଥ ପୂରଣକାରୀ ଜଗନ୍ନାଥଙ୍କୁ ପ୍ରାର୍ଥନା କରିଅଛନ୍ତି । କବି ଗାଇଲେ—

"କୋଟି ବ୍ରହ୍ମାଣ୍ଡ ପ୍ରଭୁ ଜଗନ୍ନାଥ
କରନ୍ତି ପୂର୍ଣ୍ଣ ଜନ ମନୋରଥ ।
କଲ ମୁଁ ଏହି ଯେହ୍ନ ଅଭିମତ
କହିବାକୁ ରସକଲ୍ଲୋଳ ଗୀତ ।
କହିଲେ ସେ ଯେଣ୍ଡୁ,
କରରେ ମାତ୍ର ଲେଖିଲି ମୁଁ ତେଣ୍ଡୁ ।"

ଦୀନକୃଷ୍ଣ, ବଳରାମ, ଜଗନ୍ନାଥ ଓ ଅଚ୍ୟୁତାନନ୍ଦଙ୍କ ସଦୃଶ ଉତ୍କଳୀୟ ବୈଷ୍ଣବ । କିନ୍ତୁ ଅଭିମନ୍ୟୁ ଓ ଗୋପାଳକୃଷ୍ଣଙ୍କ ଭଳି ସେ ଗୌଡ଼ୀୟବୈଷ୍ଣବଧର୍ମର ସମର୍ଥକ ନୁହନ୍ତି । ତାଙ୍କ କାବ୍ୟରେ ଶୁଦ୍ଧାଭକ୍ତିର ନିଦର୍ଶନ ମିଳୁଥିଲେ ମଧ୍ୟ ଯୋଗମାର୍ଗ ଓ ଓ ଜ୍ଞାନମାର୍ଗକୁ ପରିହାର କରିନାହାନ୍ତି । ସେ ଏକାଧିକବାର "ମନକୁ ଏକ ଓ ମନକୁ ସ୍ଥାପି ସ୍ଥିର ଆସନେ" ଆଦି ଉକ୍ତିର ଉଲ୍ଲେଖ କରିଛନ୍ତି । ଅତଏବ ସେ ଯେ ଉତ୍କଳୀୟ ବୈଷ୍ଣବଧର୍ମର ପୃଷ୍ଠପୋଷକ ଥିଲେ, ଏହା ଅନୁମିତ ହୁଏ । ପ୍ରକାଶ ଥାଉ କି ଯୋଗ-ସୂତ୍ରର ନିତ୍ୟତା, ପିଣ୍ଡବ୍ରହ୍ମାଣ୍ଡ ତତ୍ତ୍ୱ, ନିବୃତ୍ତିମାର୍ଗ, ଜଗନ୍ନାଥଙ୍କ ଅବତାରତ୍ୱର ସୂଚନା ଉତ୍କଳୀମାନଙ୍କର ପ୍ରଧାନ ବୈଶିଷ୍ଟ୍ୟ । କବି ଉତ୍କଳୀୟ ଓ ଗୌଡ଼ୀୟବୈଷ୍ଣବଧର୍ମର ଆରାଧ୍ୟଦେବତା ଜଗନ୍ନାଥ ଓ କୃଷ୍ଣ ମଧ୍ୟରେ ଯୋଗସୂତ୍ର ସ୍ଥାପନ କରି ଏକ ସମନ୍ୱୟ ସାଧନ କରିଅଛନ୍ତି । ଦୀନକୃଷ୍ଣ ଜାତୀୟ କବି । ଜାତୀୟ ପରମ୍ପରାରୁ ସେ ବିଚ୍ୟୁତ ହୋଇ ନାହାନ୍ତି । ପୂର୍ବରୁ କୁହାଯାଇଛି ଯେ, କବିଙ୍କ ଜୀବନ ଦର୍ଶନ ବ୍ୟତୀତ କବିଜୀବନୀ ମଧ୍ୟ ତାଙ୍କ କାବ୍ୟରେ ପ୍ରତିବିମ୍ବିତ ହୋଇଥାଏ । ଆଲୋଚ୍ୟ କାବ୍ୟରେ ଦୀନକୃଷ୍ଣଙ୍କ ଜୀବନୀ ଓ ସମସାମୟିକ ଚିତ୍ର ସୁସ୍ପଷ୍ଟ ଭାବରେ ଆତ୍ମପ୍ରକାଶ କରିଛି । ଆମର ମନେହୁଏ, ଆଉ କୌଣସି କାବ୍ୟରେ କୌଣସି କବିଙ୍କର ଆତ୍ମଲିପି ଏପରି ପ୍ରାଞ୍ଜଳ ଭାବରେ ପ୍ରକାଶିତ ହୋଇନାହିଁ । କବି ହୃଦୟର ମର୍ମଭେଦୀ ବ୍ୟଥା, ଦାରିଦ୍ର୍ୟ, ନିଃସହାୟତା ରୂପାୟିତ ହୋଇଛି ଉପଯୁକ୍ତ ଭାଷା ମାଧ୍ୟମରେ । କବି ଗାଇଲେ—

"କାହିଁକି ମୋତେ ନ ପାରିଲଟ, ମଧ୍ୟରେ ପ୍ରଭୁ କଲ ନ ଘଟ
କହିଁ। ନ କଲ ଚରଣ ପଦ୍ମ କୁସୁମ କିଟ ହେ,
କହିଁ। ଗୁଡ଼ନ୍ତି ଭକତ ବାଟ ଆନନ୍ଦ ହୋଇ କରନ୍ତି ନାଟ,
ଏବେ ଅନେକ ରୂପ କଲଣି ଏ ପୋଡ଼ା ପେଟ ହେ ।"

କି ମର୍ମସ୍ପର୍ଶୀ ଆତୁରତା !

ଆହୁରି—କେତେବେଳେ ବୋହିତ ଗଲ୍ପ କରଇ ହେ
କେତେବେଳେ ମୂର୍ଚ୍ଛନାଯୁକ୍ତ ଗୀତ ହେ

କେତେବେଳରେ ଅଦ୍ଭୁତ ନଟ
କେତେବେଳରେ ଗମ୍ଭୀର ବାଟ
କେତେବେଳରେ ପଇଡ଼ଖୋଲା ମର୍କଟ ହେ ।

ସାଂସାରିକ ଜଞ୍ଜାଳ, ଜୀବନର ଜଟିଳତା, ପେଟର ଦାଉ ତାଙ୍କୁ ବିବ୍ରତ ଓ ବିବଶ କରିପକାଇଛି । ଉଦାସମନା ବୈଷ୍ଣବ ସେ; ଭଗବାନଙ୍କ ପାଦପଦ୍ମରେ ଅହରହ ଧ୍ୟାନ ରଖି ତାଙ୍କ ଗୁଣ କୀର୍ତ୍ତନ କରିବାକୁ ତାଙ୍କର ପ୍ରଗାଢ଼ ବାସନା; ଅଥଚ ନାନାପ୍ରକାର ବାଧା-ବିପତ୍ତି ତାଙ୍କୁ ବିବ୍ରତ କରିପକାଇଛି । ଦିବ୍ୟସିଂହ ଦେବଙ୍କ ଯଶୋଗାନ କରିବାକୁ ଅନିଚ୍ଛା ପ୍ରକାଶ କଲାରୁ ସେ ରାଜାନୁଗ୍ରହରୁ ବଞ୍ଚିତ ହୋଇଥିଲେ । ସେ ସମୟରେ କେତେକ ଚାଟୁକର୍ମୀ କବିଙ୍କ ପ୍ରତି ଅସୂୟାପରବଶ ହୋଇ କବିଙ୍କ କାବ୍ୟର ନିନ୍ଦାବାଦ କରୁଥିଲେ ହେଁ ସେଥିପ୍ରତି ତିଳେ ମାତ୍ର ଭ୍ରୂକ୍ଷେପ ନ କରି ସେ ନିର୍ଭୀକ ଭାବରେ କୌଣସି ସମାଲୋଚନା ପ୍ରତି ଦୃଷ୍ଟି ନ ଦେଇ ତାଙ୍କର ମର୍ମବେଦନା ପ୍ରକାଶ କଲେ ।

"କଲେ ତୁମ୍ଭର ରସରେ ଗୀତ ରସିକ ନାହିଁ କାହାର ଚିତ୍ତ,
କର୍ଣ୍ଣରେ ପୁଣି ବୋଲନ୍ତି ରସ ବିଶେଷ ନୋହେ ତ ସେ ।
କରିତ ଆନ୍ତି ଜ୍ଞାନକୁ ହତ, ମୋହ ମଦରେ ହୋଇ ସମ୍ମତ
ମୁଁ ତାଙ୍କୁ କି ବୋଲିବି ମୋହର ନ ଥାଇ କୃତ୍ୟ ସେ ।
କିଛି କିଛି ଅଛନ୍ତି ଯେତେକ ଗୁଣୀ, କେତେ କହିବି ତାଙ୍କ ଚରିତ ପୁଣି ହେ
କେ ଶିଶୁ ପଶୁ, କେ ମହାଫଣୀ ବୋଧ ନୁହନ୍ତି କର୍ଣ୍ଣରେ ଶୁଣି
କେ ତୁଷ୍ଣୀଭୂତ ହୋଇ ରହେ କେ ପଶନ୍ତି ହାଣି ହେ ।
କାହାରି ହୃଦ ଦ୍ରବଇ ନାହିଁ, ଜଳ ଉପଳ ପରାଏ ହୋଇ
କେବଳ ବାହାରକୁ ଚିକ୍କଣ ପରାଏ ଦିଶେ ସେ ।
କରନ୍ତି ଅଙ୍ଗେ ଅନେକ ରୂପ, କେହି ନ ଜାଣେ ଭିତର ପାପ,
ଚିତ୍ରକାରିକ ପଟ ପରାଏ ପ୍ରତ୍ୟକ୍ଷ ଦିଶେ ହେ ।
କଥା କଥାକେ କହିବାକୁ ଏ ଶଳ ଯେ, କପି ଦୀନକୃଷ୍ଣଙ୍କୁ ଏମନ୍ତ କଲ ହେ
କବି ଯା କରେ ମୂର୍ଖକୁ ସ୍ତୁତି ଏଥି ବଡ଼ ନାହିଁ ବିପତ୍ତି
ଏଥିକି ପ୍ରତି ଗ୍ରୀବରେ କାତି ମାରିବା ଭଲ ହେ ।"

କବିଙ୍କର ବଳିଷ୍ଠ ବ୍ୟକ୍ତିତ୍ୱର ଗୁରୁତ୍ୱ ଏଠାରେ ସୁପ୍ରକାଶିତ । ନିର୍ଭୀକ ଅଟଳ ସେ । ତାଙ୍କ ଜୀବନ ଭାବବିହ୍ୱଳ । ଅନଟନଅତ୍ୟାଚାରର ମର୍ମନ୍ତୁଦ ଆଘାତ ତାଙ୍କୁ କଦାପି ତାଙ୍କ ପରମାରାଧ୍ୟଠାରୁ ଦୂରକୁ ନେଇପାରି ନାହିଁ । ସମାଜର ଅଧଃପତନ ଦେଖି ଅତ୍ୟାଚାରୀ ରାଜା ଓ ଅସାଧୁମାନଙ୍କୁ ତୀବ୍ରଭାବରେ ଭର୍ତ୍ସନା କରିଅଛନ୍ତି ଏବଂ ସାଧୁ ଓ

ପଣ୍ଡିତ ଧର୍ମପ୍ରାଣ ବ୍ୟକ୍ତିମାନଙ୍କୁ ନୀତିଶିକ୍ଷା ଦେଇଯାଇଅଛନ୍ତି । ଗଭୀର ଅଭିଜ୍ଞତାର ନିଦର୍ଶନ ତାଙ୍କ କାବ୍ୟରୁ ମିଳେ । ସମାଜର ଅନ୍ଧବିଶ୍ୱାସ ଓ କୁସଂସ୍କାର ରୂପ ଘନାନ୍ଧକାରରେ ତାଙ୍କ ରସକଲ୍ଲୋଳ ଜ୍ଞାନାଲୋକର ଗୋଟିଏ ଜ୍ୱଳନ୍ତ ବର୍ତ୍ତିକା । କବି-ଜୀବନର କୋମଳତା ପରିସ୍ଫୁଟ ହୋଇଛି ରସକଲ୍ଲୋଳର କମନୀୟତାରେ । ତେଣୁ ସେ ଗାଇଲେ—

"କେବଳ ସାଧୁ ସଙ୍ଗେ ସାଙ୍ଗ ହୁଅ
କଟିଳ ଲୋକ ପାଖକୁ ନ ଯାଅ
କୋମଳ କରି କଥାମାନ କହ
କୃଷ୍ଣ ଭକତଜନ ମନ ମୋହ
କୃଷ୍ଣ କର ଧ୍ୟାନ; କୃଷ୍ଣ ଚରିତମାନ କର ପାନ ।"

ନାନା ଦୁଃଖକଷ୍ଟରେ ପଡ଼ି ମଧ୍ୟ କବି ତାଙ୍କର ସ୍ୱାଭାବିକ ରସିକତା ପରିହାର କରି ନ ଥିଲେ । ନିମ୍ନୋକ୍ତ କେତେକ ପଂକ୍ତିରେ ତାଙ୍କର ରସିକତା ଫୁଟିଉଠିଛି ।

କବି ରଚିଲେ—

"କବି ହୋଇ କରୁଥିବ ନିର୍ମଳ କବିତ୍ୱ
କର୍ଣ୍ଣ ଦେଇ ଶୁଣୁଥିବ ରସିକ ପଣ୍ଡିତ
କଳ୍ପିତ କରି ଆସ୍ୱାଦ କରୁଥିବ ତାହା
କହେ କୃଷ୍ଣ କି ମଧୁରେ ଲେଖିବି ମୁଁ ଏହା ।"

ପୁନଶ୍ଚ—

"କବିତା ବନିତା କବିତା ପିତା
କନ୍ଧିବା ଲୋକ ତାର ଉପମାତା ।
କଲେ ତାକୁ ଭୋଗ ରସିକ ନେତା,
କେତେ ହେ ଅବା ରହଇ ଯୋଗ୍ୟତା ।
କୁମତି ଗୁଆଁର, କେବଳ ବଇମାନିଆଇ ତାର ।
କବିତ୍ୱ ମଳୟପବନ ମତ,
କରେ ରସିକରେ ପଲ୍ଲବିତ
କର୍କଶ ମୂର୍ଖ ଶୁଷ୍କ ତରୁ ମାନ,
କେତେବେଳେ ହେଁ ନ ଧରଇ ପଣ
କାମିନୀ ବିଭବ, କରଇ ନିଜ ନପୁଂସକ ଭ୍ରୁବ ।"

ଆତୁର —

"କବିତ୍ୱରସ ଉତ୍ତମ ଗୋକ୍ଷୀର
କରି ଚନ୍ଦ୍ରି ସଙ୍ଗ ସ୍ନେହଯାକର
କର୍ଣ୍ଣ ଭୃଙ୍ଗରେ ଯେ କରଇ ପାନ,
କିଛୁ ହିଁ ସ୍ୱାଦୁ ଜାଣେ ସେ ଜନ
କୁତ୍ସିତ ଯା ବୁଦ୍ଧି, କରେ ତା ବଚନ ଆମ୍ଳି ଲ୍ୟଧି ।"

କାବ୍ୟ କେତେବେଳେ ସଙ୍ଗୀତମୟୀ, ସେ କେତେବେଳେ ଭାବମୟୀ, ଆଉ କେତେବେଳେ ସେ ଚିତ୍ରମୟୀ । ଦୀନକୃଷ୍ଣଙ୍କ କାବ୍ୟ ରସମୟୀ, ଆନନ୍ଦମୟୀ, ଲାଳିତ୍ୟମୟୀ ଓ ସଙ୍ଗୀତମୟୀ । ଏହାର ସଙ୍ଗୀତମୟତ୍ୱ କାବ୍ୟକୁ ଅପୂର୍ବ ଶ୍ରୀରେ ବିମଣ୍ଡିତ କରିଛି ଏବଂ ପାଠକସମାଜରେ ହୃଦ୍ୟ କରିଅଛି । ବିଭିନ୍ନ ରାଗରାଗିଣୀର ସୁସମାବେଶ ନାନାବିଧ ଅଳଙ୍କାରର ସନ୍ନିବେଶ, ଅଦ୍‌ଭୁତ କଳ୍ପନା ବିଳାସ, କାଳିଦାସସୁଲଭ ଶବ୍ଦବିନ୍ୟାସପାଟବ,ନୈଷଧୀୟ ଶବ୍ଦପାଣ୍ଡିତ୍ୟ ଓ ବର୍ଣ୍ଣନାକୁଶଳତା, ସ୍ଥଳବିଶେଷରେ ଗୀତଗୋବିନ୍ଦସୁଲଭ ପଦଲାଳିତ୍ୟ ତାଙ୍କ କାବ୍ୟକୁ ଜନପ୍ରିୟ ଓ ପରମଭୋଗ୍ୟ କରିଅଛି । ଭଞ୍ଜଙ୍କଠାରୁ ଆରମ୍ଭ କରି ରାଧାନାଥ, ମଧୁସୂଦନ, ଗଙ୍ଗାଧରଙ୍କ ପର୍ଯ୍ୟନ୍ତ କବିମାନେ ତାଙ୍କ ରଚନା ଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ଯୁଗଧର୍ମାନୁଯାୟୀ କବି ଶୃଙ୍ଗାର ରସର ପ୍ରାଧାନ୍ୟ ଦେଖାଇବାକୁ ଯାଇ କାବ୍ୟକୁ କେତେକ ସ୍ଥଳରେ ଅଶ୍ଳୀଳତା ଦୋଷରେ ଦୁଷ୍ଟ କରିଅଛନ୍ତି । ଅକ୍ଷର ନିୟମରେ କାବ୍ୟ ରଚିତ ହୋଇ-ଥିବାରୁ ସମୟ ସମୟରେ କ୍ଲିଷ୍ଟ କଳ୍ପନାର ଆଶ୍ରୟ ନେଇ କବି କ୍ଲିଷ୍ଟ ଶବ୍ଦ-ଯୋଜନାଦ୍ୱାରା କେତେକ ଛାନ୍ଦକୁ ଯେପରି ନୀରସ କରିପକାଇଛନ୍ତି । ମାତ୍ର ତାଙ୍କ ଲଳିତ ପଦବିନ୍ୟାସ ଆଲୋଚ୍ୟ କାବ୍ୟକୁ ଉତ୍କଳ କାବ୍ୟ-ସାହିତ୍ୟ-ଇତିହାସରେ ଅନ୍ୟତମ ଶ୍ରେଷ୍ଠ କାବ୍ୟ ରୂପେ ପରିଚିତ କରାଇଅଛି । ଗୁଣ ଅନୁପାତରେ କାବ୍ୟର ଦୋଷ ସ୍ୱଳ୍ପ, ଏଥିରେ ସନ୍ଦେହ ନାହିଁ । ତାଙ୍କର ରଚନାଶୈଳୀ କାବ୍ୟକୁ ଶ୍ରୁତିମଧୁର କରିଅଛି । ତାଙ୍କ କବିତା-ସୁନ୍ଦରୀଙ୍କର ସୌନ୍ଦର୍ଯ୍ୟବୃଦ୍ଧି ନିମନ୍ତେ ସେ ଶ୍ଳେଷ, ଉତ୍ପ୍ରେକ୍ଷା, ରୂପକ, ଉପମା, ଯମକ, ଅତିଶୟୋକ୍ତି, ସ୍ୱଭାବୋକ୍ତି, ବ୍ୟତିରେକ, ବିଷମ, ନିଦର୍ଶନ ପ୍ରଭୃତି ଶ୍ରେଷ୍ଠ ଅଳଙ୍କାରମାନ ସନ୍ନିବେଶିତ କରିଅଛନ୍ତି । କେଉଁ ସ୍ଥାନରେ କେଉଁ ଅଳଙ୍କାରର ପ୍ରୟୋଗ କାବ୍ୟକୁ ସୁଶ୍ରାବ୍ୟ କରିବ, ତାହା ସ୍ଥିରକରି କବି ଅଭିଜ୍ଞ-ତାର ପରିଚୟ ଦେଇଅଛନ୍ତି । ଆଲୋଚ୍ୟ କାବ୍ୟଟି ୩୪ଟି ଛାନ୍ଦରେ ସମ୍ପୂର୍ଣ୍ଣ ହୋଇ-ଅଛି । ଏହି ଛାନ୍ଦଗୁଡ଼ିକ ବିଭିନ୍ନ ରାଗରାଗିଣୀରେ ଲିଖିତ । ଛାନ୍ଦଗୁଡ଼ିକ କେବଳ ଯେ ଭିନ୍ନ ଭିନ୍ନ ରାଗରାଗିଣୀରେ ଲେଖାଯାଇଛି, ତାହା ନୁହେଁ— କିପରି ଗାଇଲେ ସେଗୁଡ଼ିକ ସୁଶ୍ରାବ୍ୟ, ହୃଦୟଗ୍ରାହୀ ଓ ଚିତ୍ତଉଲ୍ଲାସକ ହେବ, ତାହା ଦର୍ଶାଇବା ନିମନ୍ତେ

ବିଭିନ୍ନ ବାଣୀର ଉଲ୍ଲେଖ ଅଛି । ରସକଲ୍ଲୋଳରେ ଗୁର୍ଜ୍ଜରୀ, ଆହାରି, କଲ୍ୟାଣ ଆହାରି କୌଶିକ, ବରାଡ଼ି, ପଞ୍ଚମ ବରାଡ଼ି, କାମୋଦୀ, କାଳୀ ପ୍ରଭୃତି ଅତି ପରିଚିତ ଓ ସଚରାଚର ବ୍ୟବହୃତ ରାଗିଣୀର ପରିଚୟ ମିଳେ । କେଉଁ ଋତୁରେ କି ରାଗରେ ଛାନ୍ଦ ଗାଇବାକୁ ହେବ, ତାହା ଜାଣି କବି ବିଭିନ୍ନ ଋତୁବର୍ଣ୍ଣନାରେ ବିଭିନ୍ନ ଛାନ୍ଦ ଓ ରାଗ ଦେଇଛନ୍ତି । ଗ୍ରୀଷ୍ମଋତୁ ବର୍ଣ୍ଣନାରେ କବି ବସନ୍ତ ବରାଡ଼ି, ବସନ୍ତ ବର୍ଣ୍ଣନାରେ କଲ୍ୟାଣ ଆହାରି, ଶୀତଋତୁ ବର୍ଣ୍ଣନାରେ ଚକ୍ରକେଳି, ବର୍ଷାଋତୁ ବର୍ଣ୍ଣନାରେ ପାହାଡ଼ିଆ କେଦାର ରାଗର ସୂଚନା ଦେଇଅଛନ୍ତି । ପୁଣି ବିଷୟବସ୍ତୁ ପ୍ରତି ଲକ୍ଷ୍ୟ ରଖି ତାଙ୍କ ରଚିତ ଛାନ୍ଦ ପାଇଁ ଉପଯୁକ୍ତ ରାଗରାଗିଣୀ ସ୍ଥିର କରିଯାଇଛନ୍ତି । ବିରହଭାବ ବର୍ଣ୍ଣନା କରିବାକୁ ଯାଇ କବି କାମୋଦୀ ବା ଚନ୍ଦ୍ରାଦେଶାକ୍ଷ ରାଗକୁ ସନ୍ନିବେଶିତ କରିଯାଇଅଛନ୍ତି । ବିଷୟବସ୍ତୁର ବର୍ଣ୍ଣନା ସହିତ ରାଗରାଗିଣୀର ସାମଞ୍ଜସ୍ୟ ରଖି ଲେଖାଯାଇଥିବାରୁ ରସକଲ୍ଲୋଳ କାବ୍ୟଟି ଅତୀବ ରମଣୀୟ ଓ ମନୋଜ୍ଞ ହୋଇଅଛି । ସମଗ୍ର କାବ୍ୟରେ କରୁଣ ରସ ହିଁ ବାରମ୍ବାର ବ୍ୟବହୃତ ହୋଇଅଛି । ଷଡ଼ବିଂଶ, ଦ୍ୱାବିଂଶ ଓ ଚତୁର୍ବିଂଶ ଛାନ୍ଦଗୁଡ଼ିକ କରୁଣରସ ପ୍ରବାହରେ ଉଚ୍ଛଳ ଓ ଜର୍ଜରିତ ହୋଇଅଛି । ସହାନୁଭୂତିର ଆତିଥେୟତାରେ ସେଗୁଡ଼ିକ ପୂର୍ଣ୍ଣତାପ୍ରାପ୍ତ ହୋଇଅଛି । ରସକଲ୍ଲୋଳରେ କବିଙ୍କ ବର୍ଣ୍ଣନାଚାତୁରୀ ଓ ବହୁଶାସ୍ତ୍ରଦର୍ଶିତା ଲକ୍ଷ୍ୟ କରିବାର କଥା । ବସନ୍ତ, ଗ୍ରୀଷ୍ମ, ବର୍ଷା, ହେମନ୍ତ ଋତୁବର୍ଣ୍ଣନା ଏକାନ୍ତ ଉପଭୋଗ୍ୟ ହୋଇଅଛି । ବିରହଭାବ ଓ ନାୟିକାର ମନସ୍ତତ୍ତ୍ୱ ବର୍ଣ୍ଣନାରେ କବି ସୁଦକ୍ଷ ଥିଲେ । ତାଙ୍କର ବହୁଶାସ୍ତ୍ରଦର୍ଶିତାର ପ୍ରମାଣସ୍ୱରୂପ କୁହାଯାଇପାରେ ଯେ, ଦୀନକୃଷ୍ଣ ରସକଲ୍ଲୋଳରେ ସ୍ଥାନେ ସ୍ଥାନେ ରଘୁବଂଶ, କୁମାରସମ୍ଭବ, ନୈଷଧ, ଗୀତଗୋବିନ୍ଦ, ଶକୁନ୍ତଳା ନାଟକ, ଉଜ୍ଜ୍ୱଳନୀଳମଣି, ଚଣ୍ଡୀଦାସକୃତ କବିତାବଳୀ ଓ ଅନ୍ୟାନ୍ୟ ଅଳଙ୍କାରଶାସ୍ତ୍ରର ଶ୍ଳୋକାଦିରେ ସରଳ, ରସାଳ ଓ ସରସ ଅନୁବାଦ ଦେଖିବାକୁ ମିଳେ । ଦ୍ୱାବିଂଶ ଛାନ୍ଦରେ କବି ଗୋପାଙ୍ଗନାମାନଙ୍କ ବିରହୋକ୍ତିରେ ତୈତ୍ତିରୀୟ ବ୍ରାହ୍ମଣରେ ଥିବା ଗୋଟିଏ ମନ୍ତ୍ରର ଓଡ଼ିଆ ଅନୁବାଦ କରିଥିଲା ପରି ପ୍ରତୀୟମାନ ହୁଏ ।

କବି ଲେଖିଲେ—

"କୋଟି କୋଟି ଦେବତାୟେ
ଖାଇଲେ ନୋହିଲେ କ୍ଷୟେ
କି କି ହୋଇ ଉଦେ ହୋଏ
ନିଶା ସମୟେ ସଜନୀ ।"

"ତଂ ଚ ଦେବଂ ସୋମଂ ପଯ୍ଯୁର୍ଦେବାଃ ପର୍ଯ୍ୟାୟେଣାନୁପୂର୍ବଶଃ

ଦୀନକୃଷ୍ଣ କବି ହିସାବରେ, ଧର୍ମୋପାସକ ହିସାବରେ ନିର୍ମଳ ନିଷ୍କଳଙ୍କ ଭାବ ପବିତ୍ର କାବ୍ୟରେ ଫୁଟାଇଅଛନ୍ତି । ତାହା ଓଡ଼ିଆ ଜାତିକୁ ଆନନ୍ଦ ଦେବ, ମୁକ୍ତିଦେବ ।

ଚେଷ୍ଟା କର ଓଡ଼ିଆ ଜାତିର ନମସ୍ୟ । ସେ ଓଡ଼ିଶାର ଜନସାଧାରଣଙ୍କୁ ସାବଧାନ ବାଣୀ ସିଂହାବଲୋକନ ଅଳଙ୍କାର ସାହାଯ୍ୟରେ ଶୁଣାଇଅଛନ୍ତି । ତାହା ସର୍ବଦା ଓ ସର୍ବଥା ଗ୍ରହଣୀୟ ।

"କାହିଁପାଇଁ ଚିନ୍ତ ନାହିଁ ହୃଷୀକେଶ
କେଶ ଧଇଲେ କାଳ କି ଅବକାଶ
କାଶ କୁସୁମ ପରାଏ ମନେକର
କର ଭାବନା ବାଳମୁକୁନ୍ଦର ।"



# ବିଦଗ୍ଧ କବି ଅଭିମନ୍ୟୁ

ମଧ୍ୟଯୁଗୀୟ ଓଡ଼ିଆ କାବ୍ୟସାହିତ୍ୟକୁ ଯେ କେତେଜଣ ସାହିତ୍ୟରଥୀ ନାନାଦିଗରୁ ସମୃଦ୍ଧ କରିଅଛନ୍ତି, "ବିଦଗଧ କବି ଅଭିମନ୍ୟୁ" ସେମାନଙ୍କ ମଧ୍ୟରେ ଅନ୍ୟତମ । ତାଙ୍କ ପ୍ରଣୀତ କାବ୍ୟ ବିଦଗ୍ଧ ଚିନ୍ତାମଣି ପାଠକଲେ କବିଙ୍କର ଅସାମାନ୍ୟ ପାଣ୍ଡିତ୍ୟ, ଅପୂର୍ବ ପ୍ରତିଭା ଓ ବହୁ ଶାସ୍ତ୍ରଦର୍ଶିତାର ପ୍ରମାଣ ମିଳେ । ନାନାବିଧ ବୈଶିଷ୍ଟ୍ୟରେ ସେ କାବ୍ୟ ଗୌରବାନ୍ୱିତ । ଚିରକାଳ ଧରି ଓଡ଼ିଆ ପାଠକପାଠିକା ଉକ୍ତ କାବ୍ୟରସାସ୍ୱାଦନରେ ପ୍ରଭୂତ ଆନନ୍ଦ ଅନୁଭବ କରିବେ ।

ଆଲୋଚ୍ୟ କାବ୍ୟର ସୃଷ୍ଟି ଓ ନିର୍ମାଣକୌଶଳରେ କବି ସମ୍ରାଟ ଭଞ୍ଜଙ୍କର "ଲାବଣ୍ୟବତୀର" ଓ ଅନ୍ୟାନ୍ୟ ସଂସ୍କୃତ ଭକ୍ତିମୂଳକ କାବ୍ୟର ପ୍ରଭାବ ଅତୁଟ ରହିଛି । ଅନ୍ୟାନ୍ୟ ଓଡ଼ିଆ କାବ୍ୟର ପ୍ରଭାବ ଯେ ନ ପଡ଼ିଛି, ତାହା ନୁହେଁ । କବି ନିଜେ ସେ କଥା ସ୍ୱୀକାର କରିଅଛନ୍ତି । । କେବଳ ଭଞ୍ଜ କାହିଁକି ତାଙ୍କ ଗୁରୁ ସାଧୁଦାସଙ୍କ ପ୍ରତ୍ୟକ୍ଷ ପ୍ରଭାବରୁ ସେ ନିଜକୁ ମୁକ୍ତ କରିପାରି ନାହାନ୍ତି । ଏତଦ୍‌ବ୍ୟତୀତ ରୀତିଯୁଗର ପରମ୍ପରା ଉକ୍ତ କାବ୍ୟରେ ସୁରକ୍ଷିତ । ଆଲୋଚ୍ୟ କାବ୍ୟର ଗୋଟିଏ ମାତ୍ର ବିଭାଗ ନେଇ ଆଲୋଚନା କଲେ ପ୍ରକାଣ୍ଡ ଗ୍ରନ୍ଥ ହେବ । ବିଶେଷତଃ ତାଙ୍କ କାବ୍ୟରେ ପଦଲାଳିତ୍ୟ, ଅର୍ଥଗୌରବ, ଉପମାବୈଚିତ୍ରୀ, ଶୈଳୀ, ବ୍ୟକ୍ତିତ୍ୱ, ଧର୍ମପ୍ରାଣତା, ଧର୍ମମତ, ଉଜ୍ଜ୍ୱଳ ଓ ଭକ୍ତିରସର ନିଦର୍ଶନ, ପ୍ରୀତିବର୍ଣ୍ଣନା ଓ ନାୟକ ନାୟିକାର ସୁଷମା ବର୍ଣ୍ଣନା ପ୍ରଭୃତି ବିଷୟରେ ଆଲୋଚନା ଏବଂ ତୁଳନାତ୍ମକ ବିଚାର କଲେ କବିଙ୍କର ବହୁମୁଖୀ ପ୍ରତିଭାର ପ୍ରକୃଷ୍ଟ ପ୍ରମାଣ ମିଳିବ । ସମଗ୍ର କାବ୍ୟକୁ ଛାଡ଼ିଦେଲେ ମଧ୍ୟ ତାଙ୍କର ମଙ୍ଗଳାଚରଣଗ୍ରନ୍ଥ ଅନୁଶୀଳନ କଲେ କବିଙ୍କର ଈଶ୍ୱରତତ୍ତ୍ୱ ସମ୍ବନ୍ଧରେ ଧାରଣା ପାଠକର ମନୋରାଜ୍ୟରେ ଜାତ ହୁଏ ।

ସମଗ୍ର କାବ୍ୟ ପାଠକଲେ କେତେଗୁଡ଼ିଏ ବିଶେଷତ୍ୱ ମଧ୍ୟ ପରିଲକ୍ଷିତ ହୁଏ । ପାଦର ଆଦ୍ୟରେ ସ୍ୱରବର୍ଣ୍ଣ ଘଟିତ ରଚନା ଓ ଶୃଙ୍ଖଳା ଅଳଙ୍କାରର ବିକାଶ ତାଙ୍କର ଅନ୍ୟତମ ବୈଶିଷ୍ଟ୍ୟ । ଭଞ୍ଜଯୁଗରେ ଏହା ଦୁର୍ଲ୍ଲଭ କହିଲେ ଅତ୍ୟୁକ୍ତି ହେବ ନାହିଁ । କାବ୍ୟରେ ନାଟକୀୟ ସଂଳାପ ସଦୃଶ କଥୋପକଥନଭଙ୍ଗୀ ତାଙ୍କର ଅପର ବୈଶିଷ୍ଟ୍ୟ । ସମାଲୋଚକ ମୃତ୍ୟୁଞ୍ଜୟ ଭଞ୍ଜ ରସକଲ୍ଲୋଳକାର ଦୀନକୃଷ୍ଣ ଏବଂ ବିଦଗ୍ଧ କବି ଅଭିମନ୍ୟୁଙ୍କର

କାବ୍ୟ ପାଠକଗଣ ଯେଉଁ ମତ ପୋଷଣ କରିଅଛନ୍ତି, ତାହା ବାସ୍ତବିକ ପ୍ରଣିଧାନଯୋଗ୍ୟ । ତାଙ୍କ ମତରେ :—

"ଉପମା ଭଞ୍ଜବୀରସ୍ୟ, ତଥୈବାର୍ଥଗୌରବମ୍ ।
କଲ୍ଲୋଲେ ପଦଲାଲିତ୍ୟଂ, ସନ୍ତି ଚିନ୍ତାମଣୌ ତ୍ରୟଃ ।"

ଭଞ୍ଜଙ୍କ କାବ୍ୟରେ ଉପମା, ଅର୍ଥଗୌରବ ଓ ରସକଲ୍ଲୋଳରେ ପଦଲାଳିତ୍ୟ ରହିଛି । ମାତ୍ର 'ଚିନ୍ତାମଣି'ରେ ଉକ୍ତ ତିନୋଟି ମୂଲ୍ୟବାନ୍ ବିଭବର ପରିଚୟ ମିଳେ ।

ଏତଦ୍‌ବ୍ୟତୀତ ପ୍ରୀତି ବର୍ଣ୍ଣନାରେ ସେ ଯେଉଁ ପାଟବ ପ୍ରଦର୍ଶନ କରିଅଛନ୍ତି, ତାହା ଭଞ୍ଜ ଓ ଭଞ୍ଜୋତ୍ତର ଯୁଗରେ ମଧ୍ୟ ଦୁର୍ଲ୍ଲଭ । ଭଞ୍ଜକାବ୍ୟଗୁଡ଼ିକ ଅଳଙ୍କାରାଢ଼ ଓ ଅନ୍ୟାନ୍ୟ ଗୁଣରେ ବିଭୂଷିତ । ଅଭିମନ୍ୟୁଙ୍କର "ଚିନ୍ତାମଣି" ମଧ୍ୟ ଉକ୍ତ ଗୁଣରେ ଭୂଷିତ ହୋଇ ଭକ୍ତି ଓ ଦାର୍ଶନିକ ତତ୍ତ୍ୱସମ୍ବଳିତ ଗ୍ରନ୍ଥ ହିସାବରେ ଅଦ୍ୟାପି ବହୁ ପାଠକର ଚିତ୍ତବିନୋଦନର ପ୍ରଧାନ ସାମଗ୍ରୀ ହୋଇ ରହିଛି । ବୈଷ୍ଣବ ଧର୍ମ ଓ ଦର୍ଶନର ଏହା ଏକ ପ୍ରଧାନ ଗ୍ରନ୍ଥ କହିଲେ ଅତ୍ୟୁକ୍ତି ହେବ ନାହିଁ । ଭଞ୍ଜ ପଣ୍ଡିତ ଓ ରସିକ କବି; ମାତ୍ର ଅଭିମନ୍ୟୁ ପଣ୍ଡିତ, ରସିକ ଓ ଭକ୍ତ କବି । ଅଭିମନ୍ୟୁଙ୍କର ଶ୍ଳେଷୋକ୍ତି ଅତି ସୁନ୍ଦର ହୋଇଅଛି ।

ଉପରୋକ୍ତ ବୈଶିଷ୍ଟ୍ୟର ପରିଚୟ ମିଳୁଥିଲେ ମଧ୍ୟ କବିଙ୍କର କୃତିରେ କେତେକ ତ୍ରୁଟି ପରିଲକ୍ଷିତ । ମାତ୍ର ଏଗୁଡ଼ିକ ଯୁଗୋଚିତ କାବ୍ୟଧର୍ମଦ୍ୱାରା ଅନୁମୋଦିତ । ଉଦାହରଣ ସ୍ୱରୂପ ଶୃଙ୍ଗାରରସର ଅତ୍ୟଧିକ ପରିଚୟ ଦେବାକୁ ଯାଇ କବି ଅନେକ ସ୍ଥଳରେ ଅଶ୍ଳୀଳତାର ଆଶ୍ରୟ ନେଇଛନ୍ତି । "ମ" ଅନୁପ୍ରାସରେ ଯେଉଁ 'ଚନ୍ଦ୍ରାବଳୀ-ସମ୍ଭୋଗ' ଉକ୍ତ କାବ୍ୟରେ ସନ୍ନିବେଶିତ ହୋଇଅଛି, ତାହା ପାଠକଲେ ଏହା ପ୍ରମାଣିତ ହେବ । ଭଞ୍ଜଙ୍କ କାବ୍ୟରେ ଯେପରି ପୁନରାବୃତ୍ତି ଦୋଷ ପରିଦୃଷ୍ଟ, ଆଲୋଚ୍ୟ କାବ୍ୟ ମଧ୍ୟ ସେହି ଦୋଷରୁ ବଞ୍ଚିତ ନୁହେଁ । ନାୟକ ନାୟିକାର ଶୋଭା ବର୍ଣ୍ଣନାରେ ଏକ ପ୍ରକାର ଉପମାର ପ୍ରୟୋଗ ଦେଖିଲେ ମନେହୁଏ କବିମାନେ କେବଳ ଗତାନୁଗତିକତା ରକ୍ଷା କରିଅଛନ୍ତି ମାତ୍ର ।

ପୂର୍ବରୁ କୁହାଯାଇଛି ଯେ— କାବ୍ୟ ନିର୍ମାଣକୌଶଳରେ ଅଭିମନ୍ୟୁ ନିଜର ସ୍ୱାତନ୍ତ୍ର୍ୟ ରକ୍ଷା କରିଅଛନ୍ତି । ପୂର୍ବୋକ୍ତ ଲାବଣ୍ୟବତୀର ପ୍ରଭାବରେ "ବିଦଗ୍ଧ ଚିନ୍ତାମଣି" ରଚିତ ହୋଇଅଛି କହିଲେ ସତ୍ୟର ଅପଲାପ ହେବ ନାହିଁ । କାରଣ ଲାବଣ୍ୟବତୀ ଓ ଅନ୍ୟାନ୍ୟ କାବ୍ୟରେ ଯେପରି ପ୍ରଥମରେ ନାୟକ ନାୟିକା ଜନ୍ମାଦି ଉତ୍ସବଠାରୁ ଆରମ୍ଭ କରି ସେମାନଙ୍କର ଶୋଭା ବର୍ଣ୍ଣନା, ଚିତ୍ରପଟଦର୍ଶନ, ସ୍ୱପ୍ନାନ୍ତରବିଳାସ, ବିଭିନ୍ନ ଋତୁର

ବର୍ଣ୍ଣନା, ପ୍ରଭାତ ଓ ସନ୍ଧ୍ୟା ବର୍ଣ୍ଣନା ଇତ୍ୟାଦିର ସୁସମାବେଶ ହୋଇଛି, ଆଲୋଚ୍ୟ କାବ୍ୟରେ ମଧ୍ୟ ସେହିପରି ବର୍ଣ୍ଣନାକ୍ରମର ଅନୁଗତ ଅଛି । ତଥାପି କବିଙ୍କର ପ୍ରକାଶଭଙ୍ଗୀ ଅଭିନବ ଓ ସ୍ୱତନ୍ତ୍ର । କୃଷ୍ଣଙ୍କ ରୂପ ବର୍ଣ୍ଣନାରେ ଭକ୍ତ କବି ଯେଉଁ ଭାବ ଫୁଟାଇଅଛନ୍ତି ସେ ଭାବ ଅନ୍ୟତ୍ର ଦୁର୍ଲ୍ଲଭ । ସେପରି ସୁନ୍ଦର ଓ ମନୋମୁଗ୍ଧକର ବର୍ଣ୍ଣନା ସମଗ୍ର ଭଞ୍ଜସାହିତ୍ୟରେ ଦୁର୍ଲ୍ଲଭ କହିଲେ ଚଳେ । ଭକ୍ତିଭାବ ଦ୍ୱାରା କବିଙ୍କ ହୃଦୟ ସତତ ଉଦ୍‌ବେଳିତ ହୋଇ-ଥିବାରୁ ସେ ହୃଦୟରୁ ଯାହା ଜନ୍ମଲାଭ କରିଅଛି, ତାହା ସହୃଦୟର ହୃଦୟଗ୍ରାହୀ ଓ ପ୍ରାଣସ୍ପର୍ଶୀ ହୋଇଉଠିଛି । ଯାହାହେଉ, ଆଲୋଚ୍ୟ ପ୍ରବନ୍ଧରେ କବିଙ୍କ ମଙ୍ଗଳାଚରଣ ଗ୍ଲୋକର ବୈଶିଷ୍ଟ୍ୟ ଆଲୋଚନା କରି ସେଥିରେ କିପରି ଈଶ୍ୱରତତ୍ତ୍ୱ ପ୍ରକାଶିତ ହୋଇଛି, ତାହା ହିଁ ବିଚାର୍ଯ୍ୟ ।

କବି ପରମେଶ୍ୱରଙ୍କର ସାକାର ମୂର୍ତ୍ତି କଳ୍ପନା କରି ଲେଖିଲେ —
"ଅପ୍ରାକୃତ ପ୍ରେମମୂର୍ତ୍ତି ଜୟ ରାଧାହରି
ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରି ଅବତରି ହେ ।"

ପ୍ରତ୍ୟେକ ପଦ କବି ବିଜ୍ଞତାର ସହିତ ବ୍ୟବହାର କରିଅଛନ୍ତି । ପ୍ରଥମେ ପ୍ରେମମୂର୍ତ୍ତି ଓ ଅପ୍ରାକୃତ ପଦର ଯାଥାର୍ଥ୍ୟ ବିଚାର କରାଯାଉ । ପ୍ରେମମୂର୍ତ୍ତି—ଆନନ୍ଦ ଚିନ୍ମୟ ମୂର୍ତ୍ତି ତଥା ଶରୀର ଯାହାଙ୍କର, ଅଥବା ଆନନ୍ଦଗୁଣରେ ଯାହାଙ୍କ ଶରୀର ଗଠିତ । ସଂସାରରେ କେବଳ ଗୁଣ ମୂର୍ତ୍ତିକାର୍ଯ୍ୟର ଉତ୍ପାଦକ ହୋଇ ନ ପାରେ । କିନ୍ତୁ ଯେଉଁ ଜଗତ ନିତ୍ୟ ଓ କେବଳ କଳ୍ପନାରେ ସୃଷ୍ଟିତ, ସେପରି ଜଗତରେ କେବଳ ଗୁଣମୟ ମୂର୍ତ୍ତି ଅସମ୍ଭବ ନୁହେଁ । ଏହା ବ୍ୟକ୍ତ କରିବା ପାଇଁ ମୂଳରେ ପ୍ରେମମୂର୍ତ୍ତିର ବିଶେଷଣ ରୂପେ ଅପ୍ରାକୃତ ପଦ ଉଲ୍ଲିଖିତ ହୋଇଅଛି ।

୧ । ରାଧାହରି—ରାଧାଯୁକ୍ତ ହରି = ରାଧାହରି । ଏପରି "ମଧ୍ୟପଦଲୋପୀ କର୍ମଧାରୟ" ସମାସ କରାଗଲେ "ରାଧାହରି" ପଦ ଏକବ୍ୟକ୍ତିବୋଧକ ନ ହୋଇ ଦୁଇବ୍ୟକ୍ତିବୋଧକ ହେବ । ତେଣୁ ରାଧାହରି ପଦ "ରାଧାର୍ଦ୍ଧହରି" ଏହିପରି ବିଗ୍ରହବାକ୍ୟର ବୋଧକ । ତାହାହେଲେ ଅର୍ଦ୍ଧ ଶରୀର ରାଧା ଓ ଅର୍ଦ୍ଧ ଶରୀର ହରି, ଏହିପରି ଉଭୟ ଶରୀର ମିଳିତ ଭାବେ ଅର୍ଦ୍ଧନାରୀଶ୍ୱର ସଦୃଶ ଏକ ଶରୀର ପ୍ରତୀତ ହୋଇପାରିବ । ଅତଏବ "ଜୟ" ପଦକୁ ଆମ୍ରେଡ଼ିତ ନ କରି ଏକବାର ମାତ୍ର ଉଲ୍ଲେଖ କରି ରାଧାହରିଙ୍କର ଏକ-ବ୍ୟକ୍ତିକତ୍ୱ ବୁଝାଇଅଛନ୍ତି ।

ପୁନଶ୍ଚ ରାଧାହରି ପଦକୁ ରାଧାର୍ଦ୍ଧହରି ଏପରି ବିଗ୍ରହବାକ୍ୟ ନ କରି "ରାଧା ବିଶିଷ୍ଟ ହରି" ରୂପ ବିଗ୍ରହବାକ୍ୟରେ ହିଁ ପ୍ରଯୁକ୍ତ କରିବା ଉଚିତ । ରାଧାର ମନୋ-ହରଣ କରିବାପାଇଁ ହରି ଶବ୍ଦର ପ୍ରୟୋଗ । ରାଧା ବିଶେଷଣ ହରି ବିଶେଷ୍ୟ । ରାଧା

ଉପାସିକା ଓ ହରି ଉପାସ୍ୟ ଜ୍ଞାନ ଜ୍ଞେୟରୂପ ଭଳି ଏ ଦୁହିଁଙ୍କର ସମ୍ବନ୍ଧ ଅତି ଘନିଷ୍ଠ । ଜ୍ଞାନ ଯେ ପର୍ଯ୍ୟନ୍ତ ଅନ୍ତର୍ନିହିତ ସେ ପର୍ଯ୍ୟନ୍ତ ତାର ସ୍ୱାଦୁ ଅନୁଭବ କରିହେବ ନାହିଁ ବା ତାର ବିକାଶ ନାହିଁ । ଜ୍ଞେୟ ପଦାର୍ଥକୁ ଆଶ୍ରୟ କରି ଜ୍ଞାନର ବିକାଶ । ତେଣୁ ଜ୍ଞେୟ ଦ୍ୱାରା ଜ୍ଞାନକୁ ଜାଣିବାକୁ ହୁଏ । ସେହିପରି ରାଧା ବ୍ୟତୀତ ହରିଙ୍କୁ ଅନୁଭବରେ ଆଣିବା ଅସମ୍ଭବ ଏବଂ ହରି ବ୍ୟତୀତ ରାଧାଙ୍କ ଅସ୍ତିତ୍ୱ ମଧ୍ୟ ଅସମ୍ଭବ ।

ରାଧାହରି ପଦକୁ ରାଧାଭିନ୍ନ ହରି ବା ରାଧାବିଶିଷ୍ଟ ହରି—ଏହିପରି ବିଗ୍ରହବାକ୍ୟରେ ପ୍ରକାଶ ନ କରି "ରାଧାରୂପ ହରି" ଏରୂପ ବିଗ୍ରହବାକ୍ୟରେ ସମାସ କଲେ ଅର୍ଥ ଅଧିକ ସ୍ପଷ୍ଟ ହେବ । ରାଧାରୂପ ହରି=ରାଧାହରି; ଅର୍ଥାତ୍ ରାଧାଽଭିନ୍ନ ମୂର୍ତ୍ତି ଯେଉଁ ହରି । ଅପ୍ରାକୃତ – ମାୟାପ୍ରପଞ୍ଚାତୀତ; ପ୍ରେମ – ଅହ୍ଲାଦିନୀ ଶକ୍ତି; ମୂର୍ତ୍ତି – ତନ୍ମୟମୂର୍ତ୍ତି ଅପ୍ରାକୃତ ପ୍ରେମମୂର୍ତ୍ତି—ମାୟା ପ୍ରପଞ୍ଚାତୀତ ଆହ୍ଲାଦିନୀ ଶକ୍ତି ତନ୍ମୟ ମୂର୍ତ୍ତି । ରାଧାହରି ରାଧାଙ୍କ-ଠାରୁ ଅଭିନ୍ନ । ଏଠାରେ ଅହ୍ଲାଦିନୀ ଶକ୍ତିରୂପେ ବର୍ତ୍ତିମାନତାରୂପ ଏକତା "ରାଧାହରି" ଶବ୍ଦର ଲକ୍ଷ୍ୟ ଅର୍ଥ । ତେଣୁ ହିଁ ଅପ୍ରାକୃତ ପ୍ରେମର ଆତ୍ୟନ୍ତିକତା ଓ ଶକ୍ତି ଶକ୍ତିମାନର ଅଭେଦତ୍ୱ ଏଠାରେ ପ୍ରକଟିତ ।

ଅବ୍ୟକ୍ତ ଲୀଳା ଅର୍ଥ ପ୍ରକାଶ ଲୀଳା । ପ୍ରକାଶ ପାଇଁ ଦ୍ୱିତୀୟ ପ୍ରକାଶ୍ୟ ବସ୍ତୁ ଆବଶ୍ୟକ । ଅନ୍ୟଥା ପ୍ରକାଶର ଅବକାଶ ନାହିଁ । ଯେପରି ବିଷୟର ଅଭାବରେ ବିଷୟୀର (ଜ୍ଞାନର) ପ୍ରକାଶ ହୁଏ ନାହିଁ, ସେହିପରି ହ୍ଲାଦିନୀ ଶକ୍ତି ରୂପା ରାଧା ଯେତେବେଳେ (ହ୍ଲାଦିନୀ ଶକ୍ତି ପ୍ରେମ) ପ୍ରକାଶ ରୂପ ହରିଙ୍କ ସହିତ ଅଭିନ୍ନ ରହିବେ, ସେ ଅବସ୍ଥାରେ ଅର୍ଥାତ୍ ସୃଷ୍ଟି ପୂର୍ବଲୀଳା ଅବ୍ୟକ୍ତ, ଏହା ହିଁ ସୂଚିତ ।

ପୁନଶ୍ଚ ଶ୍ରୀକୃଷ୍ଣଙ୍କ ଲୀଳା ଦ୍ୱିବିଧ ।

"ଅପ୍ରକଟ ରୂପା ଅପ୍ରକଟ ରୂପାଷ୍ଟ" ଅପ୍ରକଟ ବା ଅବ୍ୟକ୍ତ ଲୀଳା ସଙ୍ଗେ ପ୍ରାପଞ୍ଚିକ ବା ମାୟିକ ଲୋକର ବା ବସ୍ତୁର ମିଶ୍ରଣ ନାହିଁ । ଅବ୍ୟକ୍ତ ଲୀଳାର ସ୍ଥାନ ବସ୍ତୁ ଆଦି ସମସ୍ତ ପ୍ରପଞ୍ଚାତୀତ । ଏହା ମାୟାତୀତ ଚିନ୍ମୟ ଭଗବଦ୍ଧାମରେ ଏହା ଅନୁଷ୍ଠିତ । କାଳପରି ଏହାର ଆଦି, ମଧ୍ୟ, ଅନ୍ତ ନାହିଁ ।

ପ୍ରକଟ ବା ବ୍ୟକ୍ତ ଲୀଳାରେ ଭେଦ ଅଛି । ଆଦି ଅନ୍ତ ଅଛି । ପ୍ରବାହରୂପତା ନାହିଁ । ଆଜି ଏଠାରେ ତ କାଲି ସେଠାରେ ଏ ଲୀଳା ଆଚରିତ ହେଉଛି, ଯେପରି ସୂର୍ଯ୍ୟଙ୍କର ଲୀଳା ସୂର୍ଯ୍ୟରଶ୍ମି ।

ହ୍ଲାଦିନୀ ଶକ୍ତି ସ୍ୱତନ୍ତ୍ରା ହେଲେ ପ୍ରକାଶର ଅର୍ଥାତ୍ ସ୍ଫୁରଣର (ହରି) ବିଷୟ ହୋଇ ପ୍ରାକୃତ ଲୀଳା ବ୍ୟକ୍ତ କରିବେ । ଏହା ହିଁ 'ଅବତରି' ଶବ୍ଦର ସାର୍ଥ୍ୟ । ଅବତରି– ଅର୍ଥାତ୍ ରାଧାହରି ରୂପ ଯୁଗଳଭାବ ଧରି ଅବ୍ୟକ୍ତ ଲୀଳା ବ୍ୟକ୍ତ କରି । ଏ

ସ୍ଥଳରେ ଏହା ଲେଖା ଯାଇପାରେ ଯେ, ରାଧା ହେଉଅଛନ୍ତି ବୁଦ୍ଧିବୃତ୍ତିରାଧା, ହରି କେବଳ ବିଶୁଦ୍ଧ ଜ୍ଞାନ । ବିଶୁଦ୍ଧ ଜ୍ଞାନଟି ବୃତ୍ତି ଧାରାରେ ଯେପର୍ଯ୍ୟନ୍ତ ଉପନୀତ ହୋଇ ନାହିଁ, ସେପର୍ଯ୍ୟନ୍ତ ଜ୍ଞାନଜ୍ଞେୟଭାବର ଅବକାଶ ନ ଥାଏ । ଜ୍ଞାନଜ୍ଞେୟ ସମ୍ବନ୍ଧ ନ ଥିବା ହିଁ (ଅର୍ଥାତ୍ ଦ୍ୱୈତଭାବର ) ଅବତାରଣା ହିଁ ଅବତରିବା । ସୁତରାଂ ଏହି ରାଧାହରି ଶବ୍ଦରେ ରାଧାରୂପିଣୀ ଯେଉଁ ଆହ୍ଲାଦିନୀ ଶକ୍ତି ସେ ସ୍ଫୁରଣ ରୂପ ହରିଙ୍କଠାରୁ ଅଭିନ୍ନ ଥିବାରୁ ତାହା ଅଦ୍ୱୈତାବସ୍ଥା । ଏହି ଅଦ୍ୱୈତ ବା ଅବ୍ୟକ୍ତାବସ୍ଥାକୁ ଦ୍ୱୈତଭାବ ଧାରଣ କରି ବ୍ୟକ୍ତ ଲୀଳା ପ୍ରକଟ କର, ଏହା ହିଁ ତାତ୍ପର୍ଯ୍ୟ । ଏଥିରେ ବିଗ୍ରହ ବାକ୍ୟ ଏହା ହିଁ କରାଯାଇ ପାରେ ଯେ—ରାଧାଂ ହରତି—ଆତ୍ମସାତ୍ କରୋତି, ଇତି ରାଧାହରି । ନିଜ ଶକ୍ତିକୁ ନିଜ ଆତ୍ମାରେ ବିଲୀନ କରିଦେବା । ସେତେବେଳେ "ଏକୋଽହଂ ବହୁସ୍ୟାଂ ପ୍ରଜାୟେୟ" ଏହି ପାରମେଶ୍ୱରୀ ଇଚ୍ଛା ଜାତହୁଏ । ସେହି ଇଚ୍ଛା ଜନ୍ମ ହିଁ ଶକ୍ତିର ପ୍ରେରଣା ବା ବିକାଶ ବୋଲି ବୁଝିବାକୁ ହେବ । ସେ ଇଚ୍ଛା ହିଁ ଦ୍ୱୈତ ଭାବର ବିକାଶ । ତାହା ହିଁ ଅବତରିବା । ସୃଷ୍ଟି ପ୍ରକ୍ରିୟାରେ ମନୁ କହିଅଛନ୍ତି—

"ଦ୍ୱିଧା କୃତ୍ୱାତ୍ମନୋଦେହମର୍ଦ୍ଧେନ ପୁରୁଷୋଽଭବତ୍
ଅର୍ଦ୍ଧେନ ନାରୀ, ତସ୍ୟାଂଶଃ ବିରାଜମସୃଜତ୍ ପ୍ରଭୁଃ"

ପୁନଶ୍ଚ— "ଅବ୍ୟକ୍ତ ଲୀଳା"ର ଅର୍ଥଟି ସରଳ ଭାବରେ ପରିସ୍ଫୁଟ କରାଯାଇପାରେ ।

ଯେଉଁ ଲୀଳା ଅବ୍ୟକ୍ତ, ବ୍ୟକ୍ତ ହୋଇ ନ ପାରେ, ତାକୁ "ବ୍ୟକ୍ତ କର" ବୋଲି କବି ସମ୍ବୋଧନ କରୁଅଛନ୍ତି । ଯେ ବ୍ୟକ୍ତ ହୋଇ ନ ପାରେ, ସେ ବ୍ୟକ୍ତ ହେବା କଦାପି ସମ୍ଭବପର ନୁହେଁ । ସୁତରାଂ ଅବତରି ପଦ ପ୍ରଯୁକ୍ତ ହୋଇଥିବାର ପ୍ରତୀୟମାନ ହୁଏ । ଅର୍ଥାତ୍ ରାଧାହରି ରୂପ ଧାରଣ କରି ଭଗବାନ୍ ରାଧା ଆଉ ହରି ଦୁଇମୂର୍ତ୍ତି ଧାରଣପୂର୍ବକ ଅବତୀର୍ଣ୍ଣ ହୋଇ ଏକବ୍ୟକ୍ତିକ ଅବସ୍ଥାରେ ଯେଉଁ ଲୀଳା ବ୍ୟକ୍ତ ହୋଇ ନ ଥିଲା ସେହି ଅବ୍ୟକ୍ତ ଲୀଳାକୁ ବ୍ୟକ୍ତ କରିବାକୁ କବି ପ୍ରାର୍ଥନା କରୁଅଛନ୍ତି । ଏହା ଦ୍ୱୈତରେ ସମ୍ଭବପର ହେବ ।

ରାଧାହରି — ଏ ସ୍ଥଳରେ ଅନେକେ ସ୍ଥୂଳଭାବରେ କବି କାହିଁକି ରାଧାମାଧବ, ରାଧାକୃଷ୍ଣ, ରାଧାଗୋବିନ୍ଦ ପ୍ରଭୃତି ପ୍ରଚଳିତ ପଦ ନ ଦେଖାଇ ରାଧାହରିକୁ ତାଙ୍କ କବିତାରେ ସ୍ଥାନ ଦେଲେ, ତାହା ହିଁ ବିଚାର୍ଯ୍ୟ ବିଷୟ ବୋଲି ପ୍ରଶ୍ନ ଉଠାଇଥାନ୍ତି । ସେମାନଙ୍କ ମତରେ ଆଲୋଚ୍ୟ କବିଙ୍କ ପୂର୍ବରୁ ଜୟଦେବ 'ରାଧାମାଧବ' ବୋଲି ବର୍ଣ୍ଣନା କରିଅଛନ୍ତି, ଆଉ କେହି 'ରାଧାଗୋବିନ୍ଦ' ବୋଲି କହିଅଛନ୍ତି । ବିଦଗ୍ଧ କବି ଅଭିମନ୍ୟୁ ବୋଧହୁଏ ମାଧ୍ୱଙ୍କ-ଦ୍ୱାରା ବ୍ୟବହୃତ "ହରି" ପଦ ଦ୍ୱାରା ବିଶେଷଭାବରେ ପ୍ରଭାବିତ ହୋଇଥିଲେ ଏବଂ ଦ୍ୱିତୀୟ ପାଦର ଶେଷରେ 'ଅବତରି' ପଦ ଲାଗିବ ଏଥିପ୍ରତି ସାବଧାନ ହୋଇ କବି

ଉପଧା ମିଳନରେ ସାମ୍ୟ ରଖିବାକୁ ଦ୍ୱେବରୁ ହ୍ରଶପଦକୁ କାଣି ଶୁଣି ପ୍ରୟୋଗ କରଅଛନ୍ତ ।

ଏହ୍ପର ଯେଉଁ ହ୍ରଶ ସେ କପର ?
ଦ୍ୱିତୀୟ ପାଦରେ କବ ଲେଖିଲେ—
"ଆଦ ଅନାଦ କାରଣ ନର୍ଗୁଣ ସଗୁଣ
ଆତ୍ମାରାମ ସନାତନ ବ୍ରହ୍ମ ନରୂପଣ ।"

ହେ ହର, ତୁମ୍ଭେ ଜଗତର ଆଦ; ମାତ୍ର ସ୍ୱୟଂ ଅନାଦ । ଅର୍ଥାତ୍ ତୁମ୍ଭର ଆଦ କେହ ନାହିଁ । ତୁମ୍ଭର ଉତ୍ପାଦକ କେହ ନାହିଁ । କାରଣ ତୁମ୍ଭେ ଜଗତର ନମିତ୍ତ କାରଣ ଅଥବା ତୁମ୍ଭେ ଆଦ । ଜଗତ ସୃଷ୍ଟି ପୂର୍ବରୁ ଅଛ ଅଥବା ତୁମ୍ଭେ ଜଗତ୍ ସୃଷ୍ଟିର ପୂର୍ବବର୍ତ୍ତୀ । ତେଣୁ ଜଗତର ତୁମ୍ଭେ ଆଦକାରଣ ଓ ଅପ୍ରାକୃତ ରୂପ । ସୃଷ୍ଟି ଇଚ୍ଛା ପୂର୍ବେ ତୁମ୍ଭେ ଆଦ ବା ଅପ୍ରାକୃତ । ସୃଷ୍ଟି ଇଚ୍ଛାପରେ ତୁମ୍ଭେ ପ୍ରାକୃତ ପ୍ରକୃତତ୍ତ୍ୱ ରୂପେ ପ୍ରତୀତ ହୋଇଅଛ । ଏଣୁ ତୁମେ ଆଦ ହେଲେ ସୁଦ୍ଧା ତୁମର ଅନାଦ ବା ନର୍ଗୁଣ ବୋଲାଇବା ବିଷୟରେ କୌଣସି ବରୋଧ ନାହିଁ ବା ନ ଥିଲା । ଅତଏବ, ତୁମ୍ଭେ ଯେପର ଅନାଦ ସେହପର ନର୍ଗୁଣ ମଧ୍ୟ ଅଟ । ମାତ୍ର ତୁମ୍ଭେ ଯେତେ-ବେଳେ ସୃଷ୍ଟି ବିଷୟରେ ଉନ୍ମୁଖ ହୁଅ, ସେତେବେଳେ କାମ ସୃଷ୍ଟି ଆରମ୍ଭକ ଇଚ୍ଛା ପ୍ରଭୃତ କେତେ ଗୁଣମାନଙ୍କରେ ଯୁକ୍ତ ହେବାରୁ ସଗୁଣ ବି ଅଟ, ଅଥବା—ତୁମ୍ଭେ ସଗୁଣ ଭାବେ ଜଗତର ଉପାଦାନ କାରଣ ।

ଆତ୍ମାରାମ—ଆତ୍ମା = ପରମାତ୍ମା, ନଜ ସ୍ୱରୂପରେ ନଜେ ରତ । ୧ । ଆତ୍ମା = ଜୀବାତ୍ମା ୨ । କୂଟସ୍ଥ ( ସାକ୍ଷୀ ଚୈତନ୍ୟ ) ଏହ ଉଭୟବିଧ ଆତ୍ମା ସଚରାଚରରେ ବ୍ୟାପି ରହିଅଛନ୍ତ । ୩ । ପରମାତ୍ମା, କୂଟସ୍ଥ ଜୀବାତ୍ମା ଓ ଜ୍ଞାନାତ୍ମା ପ୍ରଭୃତ ଚତୁର୍ବିଧ ଆତ୍ମା ମଧ୍ୟରେ ତୁମେ ନରନ୍ତର କ୍ରୀଡ଼ା କର । ତେଣୁ ତୁମ୍ଭ ନାମ ଆତ୍ମାରାମ । ଅଥବା ଦୃଶ୍ୟମାନ ଶ୍ରୂୟମାନ ନଖିଳ ଚରାଚର ବସ୍ତୁ ମଧ୍ୟରେ ଅନ୍ତର୍ଯ୍ୟାମୀରୂପେ ନରନ୍ତର କ୍ରୀଡ଼ାକାରୀ ।

ପୁନଶ୍ଚ ତୁମ୍ଭେ ସନାତନ—ଚରନ୍ତନ—ପ୍ରାଚୀନ; ଅର୍ଥାତ୍ ବେଦ ଓ ପୁରାଣ-ପ୍ରସିଦ୍ଧ ଅଟ । ତୁମ୍ଭେ ବ୍ରହ୍ମନରୂପଣ । ଦଶରଥପୁତ୍ର, ବସୁଦେବପୁତ୍ର, ନନ୍ଦନନ୍ଦନ ଇତ୍ୟାଦ ତୁମ୍ଭର ଅନେକ ନାମ ଥିଲେ ସୁଦ୍ଧା ତୁମ୍ଭଙ୍କୁ ବ୍ରହ୍ମରୂପରେ ସିଦ୍ଧାନ୍ତ କରାଯାଇଅଛ । ତେଣୁ ତୁମ୍ଭେ ବ୍ରହ୍ମନରୂପଣ ବୋଲି ଲୋକରେ ଖ୍ୟାତ । ତୃତୀୟ ପଦରେ—

ଈଶ୍ୱର ସ୍ୱତନ୍ତ୍ର ସ୍ୱୟଂ ଭଗବାନ ରୁଦ୍ର,
ଇଚ୍ଛାମୟ୍ଯ ସର୍ବଶକ୍ତିବନ୍ତ ତତ୍ତ୍ୱ ବନ୍ଧ ଯେ ।

ଈଶ୍ୱର ଅଷ୍ଟୈଶ୍ୱର୍ଯ୍ୟର ଆଧାର । "ଅଣିମା ଲଘିମାପ୍ରାପ୍ତିଃ ପ୍ରାକାମ୍ୟଂ ମହିମା ତଥା, ଈଶିତ୍ୱଞ୍ଚ ବଶିତ୍ୱଞ୍ଚ ତଥା କାମ ବସାୟିତା"—ଏହା ହିଁ ଅଷ୍ଟୈଶ୍ୱର୍ଯ୍ୟ। ଏହି ଅଷ୍ଟୈଶ୍ୱର୍ଯ୍ୟର ଅଧୀଶ୍ୱର ରୂପେ ଭଗବାନ ବିଦିତ । ଇଚ୍ଛାମାତ୍ରେ ସେ ପରମାଣୁ ପରିମାଣ ଧାରଣ କରିପାରନ୍ତି, ପୁଣି ତୁଳା ଅପେକ୍ଷା ଲଘୁତର ରୂପ ଧାରଣ କରିପାରନ୍ତି ଓ ଯେକୌଣସି ସ୍ଥାନରେ ଉପଗତ ହୋଇପାରନ୍ତି । ସେ ଏକଦା ବିଶ୍ୱରୂପ ହୋଇ-ପାରନ୍ତି, ସେ ସକଳ ବିଶ୍ୱରୁ ମଧ୍ୟ ମହତ୍ତ୍ୱ ରୂପ ହୋଇପାରନ୍ତି, ସ୍ୱର୍ଗମର୍ତ୍ତ୍ୟବ୍ୟାପୀ ଶରୀର ଧାରଣ କରିବା ଯାହାଙ୍କ ପକ୍ଷରେ ସମ୍ଭବ, ଜଗନ୍ନିୟନ୍ତା ବ୍ରହ୍ମା, ବିଷ୍ଣୁ, ଶିବ ଯାହାଙ୍କ ଅଧୀନସ୍ଥ, ସେ ଇଚ୍ଛେନ୍ଦ୍ରିୟ-ଉପସ୍ଥିତ ବସ୍ତୁ ଯେକୌଣସି ସ୍ଥାନରେ ଯେ କୌଣସି କାଳରେ ସେ ଉପଲବ୍ଧି କରିପାରନ୍ତି, ଏ ସକଳ ଈଶ୍ୱରଙ୍କ ଐଶ୍ୱର୍ଯ୍ୟ ନାମରେ କଥିତ । ଏହା ଈଶ୍ୱର ଭିନ୍ନ ଅନ୍ୟ କାହାଠାରେ ନାହିଁ । ଅଥବା ସ୍ୱତନ୍ତ୍ର ଈଶ୍ୱର କହିଲେ—ଯେ କି ବ୍ରହ୍ମାଦି ତୁଲ୍ୟ ପରାଧୀନ ନୁହନ୍ତି—ଯେ ଦେବାଧୀନ ବା ନିୟତ ବଶବର୍ତ୍ତୀ ନୁହନ୍ତି, ତାଙ୍କୁ ହିଁ ବୁଝିବାକୁ ହେବ । ସେହି ହିଁ ଏକମାତ୍ର ଭଗବାନ । ସେ ଐଶ୍ୱର୍ଯ୍ୟଶାଳୀ—ସେ ମାଧୁର୍ଯ୍ୟଶାଳୀ—"କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍" ଏହାର ଯାହା ସ୍ୱତଃ ପ୍ରମାଣ । ଏହାଙ୍କର ଭଗବତ୍ତ୍ୱ ଆଜାନୁସିଦ୍ଧ ବା ନୈସର୍ଗିକ । ଏତାଦୃଶ ଅର୍ଥବୋଧ-କତା ନେଇ ସ୍ୱୟଂ ପଦର ସାର୍ଥକତା ପ୍ରତିପାଦିତ ହୁଏ ।

ସେ ଇଚ୍ଛାମୟ—ଜଗତରେ ଯେ ସମସ୍ତ କାର୍ଯ୍ୟ ଦୃଷ୍ଟ ହୁଏ, ସେଥିର ମୂଳକାରଣ ଭଗବଦିଚ୍ଛା ମାତ୍ର । ଅତଏବ ଭଗବାନ ଇଚ୍ଛାମୟ ନାମରେ ନାମିତ । ଜଗତରେ କାହାରି ଇଚ୍ଛା କେବଳ କାର୍ଯ୍ୟକାରୀ ହୋଇ ନ ପାରେ । ଇଚ୍ଛା ଜାତ ହେବା ପରେ ଉପାଦାନ ଓ ନିମିତ୍ତାଦି କାରଣ କୁଟି ଆଇ କାର୍ଯ୍ୟ ସମ୍ପାଦିତ ହୋଇଥାଏ । କିନ୍ତୁ ଈଶ୍ୱରେଚ୍ଛା କାରଣ ବା କାର୍ଯ୍ୟ-ନିରପେକ୍ଷରେ ସମସ୍ତ ସୃଷ୍ଟି କରିଥାଏ । ଇଚ୍ଛାଶକ୍ତି ଅନ୍ୟ କୌଣସି କାରଣକୁ ଅପେକ୍ଷା ନ କରି ନିଜେ ନିଜେ ସମ୍ପାଦିତ ହୁଅନ୍ତି ଅଥବା ସେ ସର୍ବଶକ୍ତିମୟ, ଇଚ୍ଛାମୟ । ଯାହାଙ୍କ ଇଚ୍ଛା ସର୍ବଶକ୍ତିଶାଳିନୀ ବା ତତ୍ତ୍ୱସମୂହର ରଚନାକାରିଣୀ ଅଟେ । ୪ର୍ଥ ପଦ:—

"ଈଶ ଶେଷାଦି ସେବକ ସେବ୍ୟ ଏକା ରୁଦ୍ର ।
ଇଷ୍ଟ ଅଭୀଷ୍ଟଦ ଦୟ୍ଯାନିଧି ସ୍ତବଗ୍ରାହ୍ୟ ଯେ" ।୪।

ହେ ଈଶ - ହେ ପରମେଶ୍ୱର, ତୁମ୍ଭେ ଶେଷାଦି ଅନନ୍ତ ପ୍ରମୁଖ ଦେବଙ୍କର ସେବ୍ୟ—ଅଥବା ତୁମ୍ଭେ ଏକମାତ୍ର ସେବ୍ୟ, ଈଶ ଶେଷାଦି—ଶିବ, ଅନନ୍ତାଦି ପ୍ରଭୃତି ତୁମ୍ଭର ସେବକ ।

ଇଷ୍ଟ—ଭକ୍ତର ଅଭୀଷ୍ଟଦାତା—ଅଥବା -ହେ ଇଷ୍ଟ, ହେ ଉପସିତତମ ! ତୁମ୍ଭେ ଅଭୀଷ୍ଟଦାତା ବା ସକଳ କାମର ପୂରକ ଅଟ । ତୁମ୍ଭେ ଦୟାନିଧି—ଦୟାର ଆଧାର, ଭାବଗ୍ରାହୀ ( ସମସ୍ତ ଭାବ ଗ୍ରହଣ କରିପାର ), ସେ ଯେତେ ଅନ୍ତର ( ଗୋପନ ହୋଇଥାଉ ବରଂ ) ଅନ୍ତର୍ଯ୍ୟାମୀ ଜୀବ ମାତ୍ରର ଅନ୍ତରର ଭାବ ଗ୍ରହଣ କରିପାର । ୫ମରେ—

ଉତ୍ପତ୍ତି ପାଳନାନ୍ତ ତୋ ଭ୍ରୂଭଙ୍ଗୀ ବିକାରେ
ଉତପ୍ଲୁତ ତନ୍ତୁବାୟ ସୂତ୍ର ପରକାରେ ଯେ । ୫ ।
ଊର୍ଣ୍ଣନାଭି ବତ ଖେଳୁ ଇଚ୍ଛା ଶକ୍ତିବଳେ
ଉଦ୍‌ଭବ ହୋଇ ତୁ ଧର୍ମ ସ୍ଥାପୁ କାଳେ କାଳେ ।୬।

ଭ୍ରୂଭଙ୍ଗୀ ବିକାରେ– ଆଖିପଲକ ପଡ଼ିବା ସମୟ ମଧ୍ୟରେ ତୁମ୍ଭେ ଜଗତର ସୃଷ୍ଟି, ପାଳନ ଓ ସଂହାର କାର୍ଯ୍ୟ କରିପାର । ପୁଣି ତନ୍ତୁବାୟ=ବସ୍ତ୍ରନିର୍ମାତା—ତନ୍ତୀର ପଟ ଓ ତାର ସୂତ୍ର ପରିସ୍ୱେ ତୁମ୍ଭଠାରେ ଜଗତ୍‌ଗୁଡ଼ିକ ସୁଦ୍ଧା ପରସ୍ପର ପରସ୍ପର ସହିତ ଧରାଧରି ହୋଇରହିଅଛି । ବୁଢ଼ିଆଣି ପୋକ ( ଊର୍ଣ୍ଣନାଭି ) ନିଜ ଶରୀରରୁ ସୂତା ଜାତ କରି ତାହାଦ୍ୱାରା ଗୋଟିଏ ଜାଲ ନିର୍ମାଣ କରି ତନ୍ମଧ୍ୟରେ ଯେପରି କ୍ରୀଡ଼ାକରେ ଏବଂ କ୍ରୀଡ଼ାଶେଷରେ ଯେପରି ସେସବୁ ସଂହାର କରେ, ହେ ପ୍ରଭୋ, ତୁମ୍ଭେ ସେହିପରି ନିଜର ଇଚ୍ଛା-ଶକ୍ତିବଳରେ ଜଗତ୍ ସୃଷ୍ଟି କରି ବିବିଧ କ୍ରୀଡ଼ା ଭୋଗପରେ ସେସବୁକୁ ନିଜେ ସଂହାର କର । ଜଗତରେ ଧର୍ମର ଗ୍ଲାନି ହେଲେ ତୁମ୍ଭେ ଅବତାର ଗ୍ରହଣ କରି ସେ ଗ୍ଲାନି ଦୂରକରି ଧର୍ମ ସଂସ୍ଥାପନ କର । ୭ମ ପଦରେ—

ଋକ ଯଜୁ ସାମ ବନ୍ଧୁ ଶ୍ରୁତି ଶାସ୍ତ୍ରଭେଦେ
ରୂପ ଗୁଣ ଯଶ ଅଛୁ ଅଶେଷ ସମ୍ବାଦେ ହେ । ୭ ।

ବେଦ ଓ ପୁରାଣାଦି ଶାସ୍ତ୍ରମାନଙ୍କରେ ଭଗବାନଙ୍କର ଅଶେଷ ରୂପ ଅଶେଷ ଗୁଣ ଓ ଅଶେଷ ଯଶ ବର୍ଣ୍ଣନା ପ୍ରସଙ୍ଗ ପରିଦୃଷ୍ଟ ହୁଏ । ପୁନଶ୍ଚ—

ତୁମର ଚରଣ ନଖରୁଚିର ମହିମା
ଋଷ ସଂଖ୍ୟାକଳେହେଁ କଳ୍ପି ନ ପାଇଲେ ସୀମା ହେ । ୮ ।

ପ୍ରଭୋ, ତୁମର ମନୋହର ପାଦର ଶୋଭା ଓ ତାର ମହିମା ବର୍ଣ୍ଣନା ନିତାନ୍ତ ଅସମ୍ଭବ । କାରଣ ନଖଶୋଭାର ମହିମା ବର୍ଣ୍ଣନା କରିବାକୁ ଚେଷ୍ଟାକରି ଅସଂଖ୍ୟ କଳ୍ପଗଣ ( ଅନନ୍ତ ସମସ୍ତ ବା ତଦ୍‌ଗତ ବ୍ରହ୍ମାଦି ସ୍ତମ୍ଭ ପର୍ଯ୍ୟନ୍ତ ଜୀବଗଣି ) କଳ୍ପି— ବିବିଧ କଳ୍ପନା ଜଳ୍ପନା କରି ସୁଦ୍ଧା ତାର ସୀମା ପାଇପାରିଲେ ନାହିଁ ।

"ଲୁବ୍ଧକତାରକ ବ୍ରହ୍ମହରଗର୍ବହର ।
ଲୁଟାଇ ପାର କୃପାରେ ମୁକତିଭଣ୍ଡାର" । ୯ ।

ଅର୍ଥ । ନକ୍ଷତ୍ରମଣ୍ଡଳ ମଧ୍ୟରେ ଲୁବ୍ଧକ ନାମକ ନକ୍ଷତ୍ରମଣ୍ଡଳ ଅଛୁ । ସେହ ନକ୍ଷତ୍ରମଣ୍ଡଳକୁ "ଲୁବ୍ଧକତାରକ" କହନ୍ତ । ସେହ ଲୁବ୍ଧକତାରକ ପୂର୍ବେ ଗୋଟିଏ ଲୁବଧ ଶବର ରୂପେ ଅରଣ୍ୟରେ ମୃଗୟା କରୁଥିବା ବେଳେ ଭଗବାନଙ୍କ ପାଦପଦ୍ମରେ ମୃଗକର୍ଣ୍ଣଭ୍ରମ ଜନ୍ମିବାରୁ ଶରବିଦ୍ଧ କର ଭଗବାନଙ୍କର ଅପରାଧୀ ହୋଇ-ଥିବା କଥା ପୁରାଣରେ ଦ୍ରଷ୍ଟବ୍ୟ । ବ୍ରହ୍ମାଙ୍କ ଗର୍ବକୁ ବତ୍ସାହରଣ ଦ୍ୱାରା ଓ ଶିବଙ୍କ ଗର୍ବକୁ ମୋହିନୀ ରୂପ ଧାରଣ ଦ୍ୱାରା ଭଗବାନ୍ ହରଣ (ଖର୍ବ) କରଥିବା କଥା ପୁରାଣରେ ସୁସ୍ପଷ୍ଟ । ମୁକତିଭଣ୍ଡାର—କୃପାବଳରେ ନୀଳାଚଳାଦ ଧାମମାନଙ୍କରେ ଲୁଟାଇ ଅଛନ୍ତ । କେବଳ ଭବକୈବଲ୍ୟମୁକ୍ତିରସଦାତା—ଏହ କୈବଲ୍ୟ ଅନନ୍ତ ବ୍ରହ୍ମ ବ୍ୟତରେକେ ଆଉ କଛି ନୁହେଁ । ଅନୁକ୍ରମଣୀରେ କବ ଭକ୍ତ ଓ ପଣ୍ଡିତମାନେ କପର ଏ କାବ୍ୟ କୁପୁରୁଷ ସେ ବିଷୟରେ ସ୍ୱମତ ପ୍ରଦାନ ପୂର୍ବକ କହୁଛନ୍ତ ଯେ ।

ଘୃଣାରେ ଘୋଷିଲେ ନରେ ପାଇବେ ନର୍ବାଣ ।
ଘୃତବତ ରସିଦ ହୃଦକୁ ରବ ଜାଣହେ ।

ଏ ପଦର ଅର୍ଥ କରବାକୁ ଯାଇ କେହ କେହ ଘୃଣା ଅର୍ଥ ଅନାଦାର ବୋଲ କହିଛନ୍ତ । କନ୍ତୁ ଏ ଅର୍ଥ ଏଠାରେ ସମୀଚୀନ ନୁହେଁ । ମନରେ ଘୃଣା ଆସିଲେ କାବ୍ୟରସ ଗ୍ରହଣରେ ବାଧା ଆସିବ । ମନରେ ଶ୍ରଦ୍ଧା ନ ଆସିଲେ କଦାପି ବିଷୟ ବୋଧ ହେବ ନାହିଁ । ତେଣୁ ଏଠାରେ ଘୃଣା ଅର୍ଥ ଅନୁକମ୍ପା ବା ଦୟା—ସଂସ୍କୃତ ରାମାୟଣରେ ଏହ ଘୃଣା ଶବ୍ଦଟି ଦୟା ଅର୍ଥରେ ହିଁ ପ୍ରଯୁକ୍ତ ହୋଇଅଛି ।

ଉଦ୍ୟଚ୍ଛେନ ଭଜଯଷ୍ଟିଂ ଯାସ୍ତୁତିଂ
ଶ୍ରୋଣୀ ଲମ୍ବି ପୁରୁଷାନୁ ମେଖଳାଂ
ତାନ୍ଦ୍ରଲେକ୍ୟ ବନତାବଧେ ଘୃଣାଂ
ପର୍ତ୍ରିଣା ସହ ମୁ ମୋଚରାଢ଼ାବଃ

ଅଥବା ଅନ୍ୟତ୍ର —

ହା ତ ତ ମାମ୍ ପରତ୍ୟଜ୍ୟ କ୍ୱଗତସି ଘୃଣାକର—ଏହ ଉଭୟ ଶୋକ୍ଳାଂଶରେ ଘୃଣା ଶବ୍ଦଟି ଦୟା ବା ଅନୁକମ୍ପା ଅର୍ଥରେ ହିଁ ବ୍ୟବହୃତ ହୋଇଅଛି ।

ଏକାଦଶ ପାଦରେ ମଧ୍ୟ ଅଭିମନ୍ୟୁ ସ୍ୱୀୟ ଭଗବଦ୍ଭକ୍ତି ପୁନରାୟ ବର୍ଣ୍ଣାଇ ହରଙ୍କୁ - "ଅନନ୍ତକୋଟିବ୍ରହ୍ମାଣ୍ଡଈଶ୍ୱରଈଶ୍ୱର" ବୋଲ ସମ୍ବୋଧନ କରଅଛନ୍ତ ।

ଏହିଠାରେ ମଧ୍ୟ ସେହି ଅର୍ଦ୍ଧନାରୀଶ୍ୱରର କଳ୍ପନା କରାଯାଇଅଛି । 'ଈଶ୍ୱରୀ'ପଦ କେବଳ ସ୍ତ୍ରୀବୋଧକ ଆଉ ଈଶ୍ୱର ପଦ କେବଳ ପୁରୁଷ ବୋଧକ; ଅର୍ଥାତ୍ ଭଗବାନ କେବଳ ସ୍ତ୍ରୀ ବା ପୁରୁଷ ନୁହନ୍ତି । ତାଙ୍କଠାରେ ସାଂସାରିକ ଗୁଣର ଅଭାବ ପରିଦୃଷ୍ଟ । ତେଣୁ ସେ ଏକ ଅଙ୍ଗରେ ସ୍ତ୍ରୀ ଏବଂ ଅପର ଅଙ୍ଗରେ ପୁରୁଷ, ଏହିପରି ଅର୍ଦ୍ଧନାରୀଶ୍ୱର ବା ଆଶ୍ଚର୍ଯ୍ୟ ସ୍ୱରୂପ ଅଟନ୍ତି । ଆବଶ୍ୟକ ବେଳେ ଅର୍ଦ୍ଧ ପଶୁ ଏବଂ ଅର୍ଦ୍ଧ ମନୁଷ୍ୟ ରୂପେ ନରସିଂହ ଅବତାର ଏହାର ଜ୍ୱଳନ୍ତ ନିଦର୍ଶନ । ଏତଦ୍‌ବ୍ୟତୀତ ଉକ୍ତ ଛାନ୍ଦରେ କାବ୍ୟର ଲକ୍ଷଣ କ୍ରମରେ କବିଙ୍କର ଦୁଇଟି ମାତ୍ର ପଦ ଉଦ୍ଧାର କଲେ ତାଙ୍କର ବହୁ-ଶାସ୍ତ୍ରଦର୍ଶିତା ଓ ପାଣ୍ଡିତ୍ୟର ପରିଚୟ ମିଳିବ ।

କେଉଁ ପ୍ରମାଣ ବଳରେ ଆଲୋଚ୍ୟ କାବ୍ୟର ଅର୍ଥଜ୍ଞାନ ସୁସ୍ପଷ୍ଟ ହେବ, ସେ ସମ୍ବନ୍ଧରେ କବି କହୁଛନ୍ତି—

"ଧ୍ରୁବ ଶବ୍ଦ ସାକ୍ଷାତ୍ ଉପମା ଅନୁମାନ
ଧରି ବିଗ୍ରହିଲେ ହେବ ଏଥି ଅର୍ଥଜ୍ଞାନ ହେ ।"

କାବ୍ୟର ମର୍ମ ବା ନିର୍ଯ୍ୟାସ ଉପଲବ୍‌ଧି କରିବାକୁ ଗଲେ ପାଠକକୁ ସାଧାରଣତଃ ଶବ୍ଦ, ପ୍ରତ୍ୟକ୍ଷ, ଉପମାନ ଓ ଅନୁମାନ ଏହି ଚାରୋଟି ପ୍ରଧାନ ପ୍ରମାଣକୁ ଧରିବାକୁ ପଡ଼ିବ । ଏହା ଧ୍ରୁବ, ଅର୍ଥାତ୍ ଯଥାର୍ଥ । ଅନୁଧ୍ୟାନ କଲେ ଜଣାଯାଏ ଯେ, କବି ଏଠାରେ ନ୍ୟାୟ-ଦର୍ଶନର ପ୍ରମାଣ-ଚତୁଷ୍ଟୟକୁ ଗ୍ରହଣ କରିଅଛନ୍ତି । ଜ୍ଞାନାର୍ଜନର ଉପାୟ ସ୍ୱରୂପ ବିଭିନ୍ନ ଦର୍ଶନ, ବିଭିନ୍ନ ପ୍ରମାଣର ଆବଶ୍ୟକତା ଉପଲବ୍‌ଧି କରିଅଛନ୍ତି ଯାହା ସାହାଯ୍ୟରେ ଆମେ କୌଣସି ବସ୍ତୁର ଯଥାର୍ଥ ଜ୍ଞାନ ଅର୍ଜନକରୁ ତାହାକୁ ହିଁ ସେହି ବସ୍ତୁ ସମ୍ପର୍କରେ ପ୍ରମାଣ ବୋଲି କୁହାଯାଇଥାଏ ।

ପ୍ରତ୍ୟକ୍ଷ ମନ ଏବଂ ଚକ୍ଷୁ କର୍ଣ୍ଣ ନାସିକା ଜିହ୍ୱା ତ୍ୱକ୍—ଏହି ପଞ୍ଚେନ୍ଦ୍ରିୟଠାରୁ ଯେଉଁ ଜ୍ଞାନ ଜନ୍ମେ ତାହାକୁ ପ୍ରତ୍ୟକ୍ଷ କୁହାଯାଏ । ମାତ୍ର ପ୍ରତ୍ୟକ୍ଷ ପ୍ରମାଣ ସମ୍ପୂର୍ଣ୍ଣ ରୂପେ ନିର୍ଭରଶୀଳ ନୁହେଁ । କାମଳ ରୋଗାକ୍ରାନ୍ତ ବ୍ୟକ୍ତି ଦୁଗ୍‌ଧ ଦଧି ଭଳି ପଦାର୍ଥକୁ ହରିଦ୍ରାବର୍ଣ୍ଣ ଭଳି ଦେଖେ । ରୋଗୀର ଏହି ପ୍ରତ୍ୟକ୍ଷ-ଜ୍ଞାନ ଭ୍ରାନ୍ତିପୂର୍ଣ୍ଣ ଅଟେ ।

ଅନୁମାନ—ବ୍ୟାପ୍ୟ ପଦାର୍ଥ ଦେଖି ବ୍ୟାପକର ଯେଉଁ ଜ୍ଞାନ ତାହାକୁ ଅନୁମାନ କୁହାଯାଏ । ପର୍ବତରେ ଧୂମ ଦେଖିଲେ ଅଗ୍ନିର ଅସ୍ତିତ୍ୱ ସମ୍ପର୍କରେ ଜ୍ଞାନ ଆସେ ।

କିନ୍ତୁ ଏ ପ୍ରମାଣ ମଧ୍ୟ ସେହିପରି ନିର୍ଭରଯୋଗ୍ୟ ନୁହେଁ । ଜଳଦ୍ୱାରା ଅଗ୍ନିକୁ ନିର୍ବାପିତ କଲେ ସୁଦ୍ଧା ସେଥିରୁ ଧୂମ ନିର୍ଗତ ହୁଏ । କିନ୍ତୁ ସେତେବେଳେ ହୁଏତ ଅଗ୍ନି ନ ଥାଏ ।

ଆର୍ଷ ପ୍ରମାଣ:—ଋଷି ମୁନି ତ୍ରିକାଳ ଦର୍ଶୀ ବ୍ୟକ୍ତିମାନଙ୍କର ବାକ୍ୟକୁ ଆର୍ଷ ପ୍ରମାଣ ବୋଲି କୁହାଯାଏ ।

ଉପମାନ:—କୌଣସି ଅତିପ୍ରସିଦ୍ଧ ସାଧାରଣରେ ଗୃହୀତ ବସ୍ତୁ ସହିତ ସାଦୃଶ୍ୟ-ଅନ୍ୟବସ୍ତୁ ସମ୍ବନ୍ଧରେ ଯେଉଁ ଜ୍ଞାନ ଜନ୍ମେ—ତାହାକୁ କୁହାଯାଏ ଉପମାନ। ଯେପରି ଗୋରୁ—ପଶୁ ଆମର ଅତି ପରିଚିତ। ମାତ୍ର ଆଉ ଏକପ୍ରକାର ଜନ୍ତୁ ଅଛି, ଯାହାର ନାମ ଗବୟ—ଗୋରୁ ସଙ୍ଗରେ ଗବୟର କୌଣସି ବିଷୟରେ ସାଦୃଶ୍ୟ ରହିଛି। ଯେ ଗବୟ ଦେଖି ନାହିଁ ତାକୁ ଏହା କପରି କହିବାକୁ ଯାଇ ଆମେ ଗୋରୁପରି ଏ ଜନ୍ତୁ—ଏହା କହି ବାହାର ଗୋରୁ ସମ୍ବନ୍ଧରେ ଯେଉଁ ଜ୍ଞାନ ଜନ୍ମିଲା ତାହା ଉପମାନଜାତ ଜ୍ଞାନ।

ଶବ୍ଦ ଅପୌରୁଷେୟ ଶାସ୍ତ୍ରବାକ୍ୟ। ଏହା ବ୍ୟକ୍ତି ବିଶେଷର ନ ହୋଇ ଭଗବତ୍‌କର୍ତ୍ତୃକ ପ୍ରକଟିତ—ଏଣୁ ଏହାକୁ କୁହାଯାଏ ଅପୌରୁଷେୟ ଶାସ୍ତ୍ର। ବେଦବାକ୍ୟ—ବୁଦ୍ଧଦେବଙ୍କ ବାଣୀ ଇତ୍ୟାଦି—ଏହା ଶବ୍ଦ ପ୍ରମାଣ। ଚାର୍ବାକମାନେ ପ୍ରତ୍ୟକ୍ଷବାଦୀ। ସେମାନେ କେବଳ ପ୍ରତ୍ୟକ୍ଷ ବୋଲି ଗୋଟିଏ ପ୍ରମାଣ ସ୍ୱୀକାର କରନ୍ତି।

ବୈଶେଷିକ—୨ଟି ପ୍ରମାଣ ସ୍ୱୀକାର କରନ୍ତି—ପ୍ରତ୍ୟକ୍ଷ ଓ ଅନୁମାନ।

ସାଂଖ୍ୟ—୩ଟି ପ୍ରମାଣ ସ୍ୱୀକାର କରନ୍ତି—ପ୍ରତ୍ୟକ୍ଷ, ଅନୁମାନ ଓ ଶାବ୍ଦ।

ନ୍ୟାୟ—୪ଟି ପ୍ରମାଣ ସ୍ୱୀକାର କରନ୍ତି—ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଓ ଶାବ୍ଦ।

ଭଟ୍ଟ ମୀମାଂସକ—୫ଟି ପ୍ରମାଣ ସ୍ୱୀକାର କରନ୍ତି—ପ୍ରତ୍ୟକ୍ଷ, ଅନୁମାନ, ଉପମାନ ଶାବ୍ଦ ଓ ଅର୍ଥାପତ୍ତି।

ବେଦାନ୍ତ ଓ ପ୍ରଭାକର ମୀମାଂସକ—୬ଟି ସ୍ୱୀକାର କରନ୍ତି—ପ୍ରତ୍ୟକ୍ଷ, ଅନୁମାନ ଉପମାନ, ଶବ୍ଦ, ଅର୍ଥାପତ୍ତି ଓ ଅନୁପଲବ୍ଧି।

ପୌରାଣିକମାନେ—୧୦ଟି ଏପରିକି ୧୨ଟି ପ୍ରମାଣ ସ୍ୱୀକାର କରନ୍ତି।

ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଧାନ ପୃଷ୍ଠପୋଷକ ଶ୍ରୀମତ୍ ଜୀବଗୋସ୍ୱାମୀ—ପ୍ରତ୍ୟକ୍ଷ, ଅନୁମାନ, ଉପମାନ, ଶାବ୍ଦ, ଅର୍ଥାପତ୍ତି, ଅନୁପଲବ୍ଧି, ଐତିହ୍ୟ, ସମ୍ଭବ, ପୁରାଣ ପ୍ରଭୃତି ପ୍ରମାଣଗୁଡ଼ିକୁ ସ୍ୱୀକାର କଲେ ହେଁ ସେଗୁଡ଼ିକ କେବଳ ତିନୋଟି ମାତ୍ର ପ୍ରମାଣରେ ପର୍ଯ୍ୟବସିତ—ଏହି ମତ ପୋଷଣ କରିଅଛନ୍ତି। ତାଙ୍କ ମତରେ ଶାବ୍ଦ, ପ୍ରତ୍ୟକ୍ଷ ଅନୁମାନ ଏହା ହିଁ ସାର ପ୍ରମାଣ। ତାଙ୍କ ରଚିତ "ତତ୍ତ୍ୱ ସନ୍ଦର୍ଭ" ଭିତରେ ସେ 'ଶବ୍ଦ'ର ଅର୍ଥ ବ୍ୟକ୍ତ କରିବାକୁ ଯାଇ କହିଛନ୍ତି ଯେ, ଶବ୍ଦ କହିଲେ କେବଳ ଭଗବତକୁ ହିଁ ବୁଝିବାକୁ ହେବ। ଆଉ କେହି ଆପ୍ତ ବାକ୍ୟ ବୋଲି କହୁଥାନ୍ତି, ପୁଣି ଆଉ ବା କେହି ଶବ୍ଦ କହିଲେ ବେଦକୁ ଓ ଅନ୍ୟାନ୍ୟ ଶାସ୍ତ୍ରକୁ ମଧ୍ୟ ବୁଝିଥାନ୍ତି।

ବଳଦେବ ବିଦ୍ୟାଭୂଷଣଙ୍କ "ପ୍ରମେୟ ରତ୍ନାବଳୀ"ରେ ଏସବୁର ଅବତାରଣା କରାଯାଇଅଛି । ପ୍ରମା ଅର୍ଥ ଯଥାର୍ଥ ଜ୍ଞାନ । ଏହି ପ୍ରମାର କାରଣ ହେଲେ ତାକୁ ପ୍ରମାଣ କୁହାଯାଏ । ( ପ୍ରମାର କାରଣ ପ୍ରମାଣ । )

ପୁନଶ୍ଚ କବି ଏହି କାବ୍ୟ ଆଲୋଚକମାନଙ୍କୁ ନିର୍ଦ୍ଦେଶ କରି କହୁଅଛନ୍ତି—

'ନ୍ୟାୟାଦି ଶାସ୍ତ୍ର ପୁରାଣ ବେଦାଗମ କାବ୍ୟ
ନ୍ୟାସ କଲି ଲୋକର ଏ ହୋଇବଟି ଭବ୍ୟ'

ଏହି ପଦର ସତ୍ୟତା ଉପଲବ୍ଧି କରିବାକୁ ଗଲେ ସମଗ୍ର କାବ୍ୟକୁ ଅନୁଶୀଳନ କରିବାକୁ ପଡ଼ିବ । ବାସ୍ତବିକ ଉକ୍ତ କାବ୍ୟରେ ନ୍ୟାୟାଦି ଦର୍ଶନ, ପୁରାଣ ବେଦାଗମ ଓ କାବ୍ୟର ସଂକ୍ଷିପ୍ତ ପରିଚୟ ମିଳେ । ଉଦ୍ଧୃତାଂଶରେ ଥିବା ନ୍ୟାସ ଶବ୍ଦଟି ବେଶ ତାତ୍ପର୍ଯ୍ୟପୂର୍ଣ୍ଣ । ଟୀକାକାରମାନେ ଏ ଶବ୍ଦର ଅର୍ଥ ବୁଝି ନ ପାରି ଭ୍ରମରେ ପଡ଼ିଛନ୍ତି । ନ୍ୟାସ ଅର୍ଥ ନଷ୍ଟ ବା ହୃଦୟରେ ଲଭିକଲି ପରି ଭାବ ଏଠାରେ ଆସୁ ନାହିଁ । ବହୁଶାସ୍ତ୍ର ଅଧ୍ୟୟନ କଲେ ଲୋକ ଜ୍ଞାନୀ ହୁଏ; ବହୁ ଜ୍ଞାନ ଅର୍ଜନ କରେ ଏବଂ ସେ ଜ୍ଞାନୀ ତାର ଅହମିକା ଅଙ୍କୁରିତ ହୋଇପାରେ । ତେଣୁ ପରବର୍ତ୍ତୀ ପଦରେ କହିଲେ—ଟାଣ ଚଣା ଚର୍ବଣ ଲାଗିଦି କଳାପରି, ଟେକି ଓଜ ହଜିବ ଅବଶ୍ୟ ଶ୍ରମକରି । କାହାର ଟେକ ଓଜ ଭାଜିବ ? ଯେଉଁମାନେ ଜ୍ଞାନ ମାର୍ଗରେ ନିଜକୁ ପରିଚାଳିତ କରିବେ । ଜ୍ଞାନମାର୍ଗ ନ୍ୟାସ ବା ତ୍ୟାଗ କଲେ ଯାଇ ପ୍ରକୃତ ଭକ୍ତି ମାର୍ଗରେ ଅଭି-ନିବେଶ ପୂର୍ବକ କାବ୍ୟର ତତ୍ତ୍ୱ ତଥା ମର୍ମ ଜାଣିପାରିବେ । ତେଣୁ ନ୍ୟାସ ଅର୍ଥ ନଷ୍ଟ ନୁହେଁ ।

କାମ୍ୟାଣାମ୍ କର୍ମଣାମ୍ ନ୍ୟାସଂ
ସନ୍ନ୍ୟାସଂ କବୟୋ ବିଦୁ ।

ଏଠାରେ ନ୍ୟାସ ତ୍ୟାଗ । ଜ୍ଞାନ ମାର୍ଗ ଛାଡ଼ି ଭକ୍ତି ମାର୍ଗରେ ଗଲେ ଯାଇ ଏ ଗ୍ରନ୍ଥର ତତ୍ତ୍ୱ ବୁଝିପାରିବ । ତେଣୁ—

ଠିକ ନୁହେ ଗୁରୁକୃଷ୍ଣ ବଇଷ୍ଣବ ଦେହ,
ଠିକ ଏଥି ମର୍ମ ଜାଣିପାରିବେନି ସେହ ।

ପୂର୍ବରୁ କୁହାଯାଇଅଛି ଯେ, କବି ଯଦିଓ ଜଣେ ଗୌଡ଼ୀୟ ବୈଷ୍ଣବ ଧର୍ମାବଲମ୍ବୀ ତଥାପି ସେ ନ୍ୟାୟ ଦର୍ଶନର ପ୍ରମାଣକୁ ଗ୍ରହଣ କରିଅଛନ୍ତି । ଏଠାରେ ନ୍ୟାୟ ଦର୍ଶନର ପ୍ରଭାବ ତାଙ୍କ କାବ୍ୟରେ ପଡ଼ିଅଛି ବୋଲି କୁହାଯାଇପାରେ । ବୈଷ୍ଣବଜଗତରେ ତିନୋଟି ମାତ୍ର ପ୍ରମାଣ ସ୍ୱୀକୃତ ହେଲେ ହେଁ କବି ତାହା ଗ୍ରହଣ ନ କରି ଅନ୍ୟ ମତକୁ ଗ୍ରହଣ କଲେ । ଅନ୍ୟାନ୍ୟ ଦର୍ଶନ ପାଠ କରି ସେଥିରୁ ସାରାଂଶ ଗ୍ରହଣ କରି କବି କୌଶଳସହକାରେ କୌଣସି କୌଣସି ସ୍ଥଳରେ ତାହା ସନ୍ନିବେଶିତ କରିଅଛନ୍ତି । ସଖୀର ଭେଦ ଦେଖାଇବାକୁ ଯାଇ କବି ତାପିନୀଗ୍ରନ୍ଥର ଉଲ୍ଲେଖ କରିଅଛନ୍ତି । ଏହି

ତାପିଙ୍ଗୁଡ଼ିକ ଉପନିଷଦ ନୁହେଁ । ଏଗୁଡ଼ିକରେ କେବଳ ଯେ ସଖୀ ଭାବ ଅଛି ତା ନୁହେଁ, ପରନ୍ତୁ ବୈଷ୍ଣବ ଧର୍ମର ସାରତତ୍ତ୍ୱ ଏଥିରେ ନିବଦ୍ଧ ହୋଇଅଛି । ରାଧା, କୃଷ୍ଣ, ନନ୍ଦ ଯଶୋଦା ପ୍ରଭୃତିଙ୍କର ପ୍ରକୃତ ସ୍ୱରୂପ ଓ ମୂଳାର୍ଥ ସେଥିରେ ନିବଦ୍ଧ ହୋଇଅଛି । ଜ୍ଞାନ ଓ ଭକ୍ତିର ତାରତମ୍ୟ ଏବଂ ଭକ୍ତିର ଶ୍ରେଷ୍ଠତ୍ୱ ଦର୍ଶାଇ କବି ଖୁବ୍ ଚତୁରତାର ସହିତ ପ୍ରଚ୍ଛନ୍ନ ଭାବରେ ଭକ୍ତି ହିଁ କୃଷ୍ଣପ୍ରାପ୍ତିର ଏକମାତ୍ର ସୋପାନ ଓ ସହାୟକ, ଏହା ପ୍ରତିପାଦନ କରିବାକୁ ଚେଷ୍ଟା କରିଅଛନ୍ତି ।

ବିଂଶ ଛାନ୍ଦରେ କବି ସନ୍ଧ୍ୟା ବର୍ଣ୍ଣନା କରିବାକୁ ଯାଇ ଉଦୀୟମାନ ଚନ୍ଦ୍ର ଓ ଅସ୍ତଗାମୀ ସୂର୍ଯ୍ୟଙ୍କୁ ତୁଳାଦଣ୍ଡରେ ତୁଳନା କରୁଅଛନ୍ତି । ବିଷୁବରେଖା ତୁଳାଦଣ୍ଡ ଓ ସେ ଦଣ୍ଡର ଦୁଇ ପାର୍ଶ୍ୱରେ ସୂର୍ଯ୍ୟ ଚନ୍ଦ୍ରଙ୍କୁ ରଖି ସତେ କି ବ୍ରହ୍ମା ତଉଲୁଅଛନ୍ତି । ଏଠାରେ ଚନ୍ଦ୍ରଙ୍କୁ ସୁଧା ଓ ସୂର୍ଯ୍ୟଙ୍କୁ ଅନୁରାଗ ରୂପେ କଳ୍ପନା କରାଯାଇଅଛି । ସୂର୍ଯ୍ୟ ଅସ୍ତ ହେବାରୁ ତୁଳାଦଣ୍ଡର ଏକଭାଗ ତଳକୁ ଗଲା ଏବଂ ଚନ୍ଦ୍ର ଉଦୟ ହେବାରୁ ଅପର ଏକଭାଗ ଉପରକୁ ଉଠିଲା । ତୁଳାଦଣ୍ଡର ବିଧି ଅନୁଯାୟୀ ଯେଉଁ ଭାଗ ତଳକୁ ଯାଏ ସେ ଭାରି ବା ଗରୁଆ ଏବଂ ଯେଉଁ ଭାଗ ଉପରକୁ ଉଠେ ସେ ଭାଗ ହାଲୁକା ବୋଲି ଧରିନିଆଯାଏ । ଏ ସ୍ଥଳରେ ଅନୁରାଗସୂର୍ଯ୍ୟ ତଳକୁ ଗଲାରୁ ଶ୍ରେଷ୍ଠ ବୋଲି ପ୍ରମାଣିତ ହେଲେ, ମାତ୍ର ସୁଧା-ଚନ୍ଦ୍ର ଉପରକୁ ଗଲାରୁ ତା ଅପେକ୍ଷା ନ୍ୟୂନ ବୋଲି ସ୍ୱୀକୃତ ହେଲେ । ଏହି ପ୍ରସଙ୍ଗକୁ ଆହୁରି ସ୍ପଷ୍ଟ କରିବା ପାଇଁ କବି – 'ଉଚ୍ଚ ନୀଚ ନୀଚ ଉଚ୍ଚ କଲା ବିଧିରେ,' ଏହା ଲିପିବଦ୍ଧ କରିଅଛନ୍ତି । ଯିଏ ଉଚ୍ଚ ଥିଲା, ସେ ନୀଚ ହେଲା ଏବଂ ଯେ ନୀଚ ଥିଲା, ସେ ଉଚ୍ଚ ହେଲା ।

ଅଭିନିବେଶ ସହକାରେ ଅନୁଧ୍ୟାନ କଲେ, ଏ ସ୍ଥଳରେ ଦର୍ଶନତତ୍ତ୍ୱର ଏକ ଇତିହାସ ସତେ କି କବି ଦେବାକୁ ପ୍ରୟାସୀ ହୋଇଛନ୍ତି ବୋଲି ଜଣାପଡ଼େ । ଧର୍ମଜଗତରେ ଦିନେ ଜ୍ଞାନ ହିଁ ଚରମ ଶ୍ରେଷ୍ଠ ବୋଲି ପ୍ରସିଦ୍ଧି ଲାଭ କରିଥିଲା । ଧର୍ମର ସ୍ୱରୂପ ଥିଲା ଜ୍ଞାନପ୍ରଧାନ । ସେହି ଜ୍ଞାନ ଆଜି ବୈଷ୍ଣବଜଗତରେ ନିକୃଷ୍ଟ ବୋଲି ପ୍ରମାଣିତ ହେଲା । ପୁଣି ଯେଉଁ ଭକ୍ତି ସେ ଯୁଗରେ ନିକୃଷ୍ଟ ବୋଲି ଅବହେଳିତ ବା ପରିଗଣିତ ହେଉଥିଲା, ସେହି ଭକ୍ତି ବୈଷ୍ଣବଧର୍ମଜଗତରେ ପୁଣି ସର୍ବାପେକ୍ଷା ଉତ୍କୃଷ୍ଟ ବୋଲି ସ୍ୱୀକୃତ ହୋଇଅଛି । ଏଠାରେ ସୁଧା ଅର୍ଥ—ଅମୃତ—ଅମୃତ ହିଁ ଜ୍ଞାନ । ଅନୁରାଗ – ସ୍ନେହ—ଭକ୍ତି—ଏଠାରେ ରାଗାନୁଗା ଭକ୍ତିକୁ ବୁଝିବାକୁ ହେବ । କବି ବଡ଼ କୌଶଳୀ । ଚମତ୍କାର ଭାବରେ ଏଠାରେ ଭକ୍ତିର ଶ୍ରେଷ୍ଠତ୍ୱ ପ୍ରମାଣ କରିଅଛନ୍ତି । ଏହି ଅନୁରାଗର ତୁଳନା ନୈଷଧ କାବ୍ୟରେ ଅନୁସନ୍ଧେୟ । ସେଠାରେ ନୈଷଧକାର ଦମୟନ୍ତୀ ଏବଂ ନଳଙ୍କର ଅନୁରାଗକୁ ତୁଳନା କରୁଅଛନ୍ତି । କନ୍ଦର୍ପର ବଶରେ ସେ ଦୁହିଁଙ୍କର ଅନୁରାଗ ତୁଳିତ

ହୋଇଅଛି । ଏଠାରେ କନ୍ଦର୍ପ ତୁଳନାକାରୀ; ମାତ୍ର ଅଭିମନ୍ୟୁ ବ୍ରହ୍ମାଙ୍କୁ ତୁଳନା-କାରୀରୂପେ ଠିଆ କରାଇଅଛନ୍ତି । ନୈଷଧ କାବ୍ୟର ପ୍ରଭାବ ଏଠାରେ ସୁସ୍ପଷ୍ଟ । ନୈଷଧରେ କନ୍ଦର୍ପ ନାୟକ ନାୟିକାର ଅନୁରାଗକୁ ତୂଳନା ପାଇଁ ଚନ୍ଦ୍ରମଣ୍ଡଳକୁ ରୌପ୍ୟପାତ୍ର କରି ତାର କିରଣକୁ ରଜ୍ଜୁ ଏବଂ ନିଜର ଶରକୁ ତୁଳନଦଣ୍ଡ କରିଛି । ବିଦଗ୍ଧ କବି ତୁଳନଦଣ୍ଡରେ ଯୋଡ଼ିଏ ପାତ୍ର ରଖି ଦୁଇଟି ପଦାର୍ଥ ସେଥିରେ ରଖିଅଛନ୍ତି ।

"ବଂଶୀକୃତାସୀତ୍ ଖଳୁ ମଣ୍ଡଳୀନ୍ଦୋଃ
ସଯୁକ୍ତରଶ୍ମି ପ୍ରକରୈଃ ସ୍ମରେଣ ।
ତୁଳା ଚ ନାରାଚ ଲତା ନିଜୈବ
ମିଥୋଽନୁରାଗସ୍ୟ ସମୀକୃତୌବାମ୍ ।" (ନୈଷଧ)

ଅନ୍ୟାନ୍ୟ ଛାନ୍ଦରେ ଉମାଶୀର୍ଥରେ ବିଷ୍ଣୁଙ୍କୁ ବଂଶୀ ପ୍ରାର୍ଥନା, ଅହଲ୍ୟା ଉଦ୍ଧାର ଓ ରାଧା ଜନ୍ମାଦି ପ୍ରସଙ୍ଗ ପୁରାଣରୁ ଗୃହୀତ । ମାୟା ଯୋଗ-ମାୟାର ସମାବେଶ ମଧ୍ୟ ପୁରାଣରୁ ସଂଗୃହୀତ । ରାଧାକୃଷ୍ଣଙ୍କ ସମ୍ବନ୍ଧ ବର୍ଣ୍ଣନାରେ କବି "ତତ୍ତ୍ୱମସି"ର ଅବତାରଣା କରିଅଛନ୍ତି । ଏହି ତତ୍ତ୍ୱମସି ବେଦର ମହାବାକ୍ୟ । ଜୀବପରମର ସମ୍ବନ୍ଧ ପ୍ରୀତିର ସମ୍ବନ୍ଧ । ଆଲୋଚ୍ୟ କାବ୍ୟର ୯୧ ଛାନ୍ଦର ପଦଗୁଡ଼ିକ ବୈଷ୍ଣବ ଦର୍ଶନତତ୍ତ୍ୱରେ ପରିପୂର୍ଣ୍ଣ । ଜୀବ ପରମ ନେଇ ଏହାର ଅଧିକାଂଶ ପଦ ରଚିତ । ପୁନଶ୍ଚ କବି ୪ର୍ଥ ଓ ୩୬ଶ ଛାନ୍ଦରେ ରସବୀଜ, ଅଗ୍ନିବୀଜ, ଓଁକାର, କାମବୀଜ, କାମଗାୟତ୍ରୀର ଉଲ୍ଲେଖ କରିବା ଦ୍ୱାରା ଆଗମଶାସ୍ତ୍ର ଜ୍ଞାନର ପରିଚୟ ଦେଇଅଛନ୍ତି । ଏତଦ୍‌ବ୍ୟତୀତ ବହୁ କାବ୍ୟ ଓ ପୁରାଣର ଛାୟା ଏ କାବ୍ୟରେ ପ୍ରତିଫଳିତ ହୋଇଅଛି । ବିଶେଷତଃ ଭାଗବତ, କୃଷ୍ଣ-କର୍ଣ୍ଣାମୃତ, ଲଳିତ ମାଧବ, ବିଦଗ୍ଧ ମାଧବ, ଉଜ୍ଜ୍ୱଳ ନୀଳମଣି, ଷଟ୍‌ସନ୍ଦର୍ଭ ଓ ଉପନିଷଦ୍ ପ୍ରଭୃତି ଗ୍ରନ୍ଥର ବହୁ ବିଷୟ ଗ୍ରହଣ କରି କାବ୍ୟର ମହତ୍ତ୍ୱ ଓ ଉପାଦେୟତା ବୃଦ୍ଧି କରିଅଛନ୍ତି । ଭାଗବତର ନବ ମହାମୁନି ଓ ଯଦୁ ଅବଧୂତ ସମ୍ବାଦ, ଦଶମସ୍କନ୍ଧର ଗୋପଲୀଳା, ଦ୍ୱାରକାଲୀଳାର ବ୍ରହ୍ମସ୍ତୁତି—ଏସବୁର ଛାୟା ଏ ଗ୍ରନ୍ଥରେ ପ୍ରତିଫଳିତ । ପ୍ରୋକ୍ତ ମଙ୍ଗଳାଚରଣ ଛାନ୍ଦର ଶେଷରେ କବି ତାଙ୍କ ଧର୍ମମତକୁ ଆହୁରି ପରିଷ୍କାର କରିବାକୁ ଯାଇ ଗୌଡ଼ୀୟ ବୈଷ୍ଣବମାନଙ୍କ ଦ୍ୱାରା ସମର୍ଥିତ ମହାମନ୍ତ୍ରର ଉଲ୍ଲେଖ କରିଅଛନ୍ତି । ସେ ଲେଖିଲେ—

"ହରେ କୃଷ୍ଣ ରାମ ନାମ ଯହିଁ ସେହି ତତ୍ତ୍ୱ
ହରପ୍ରେ ରସ ଏ ଯେନି ସାଧବ ଏ ଗୀତ ହେ" ।

ଗୌଡ଼ୀୟମାନେ "ହରେ କୃଷ୍ଣ ରାମ,' ଏହି ମହାମନ୍ତ୍ର ସ୍ୱୀକାର କରନ୍ତି । କିନ୍ତୁ "ହରେ ରାମ କୃଷ୍ଣ" ମନ୍ତ୍ର ଉତ୍କଳୀୟ ବୈଷ୍ଣବ ଓ ଅନ୍ୟାନ୍ୟ ବୈଷ୍ଣବମାନଙ୍କ

ଦ୍ୱାରା ଗୃହୀତ ହୋଇଅଛି । ଏହା ଶାସ୍ତ୍ରସିଦ୍ଧ । "କଳିସନ୍ତରଣ" ଉପନିଷଦ୍‌ରେ "ହରେ ରାମ କୃଷ୍ଣ" ମନ୍ତ୍ରର ଉଲ୍ଲେଖ ଅଛି । ଏହା ମଧ୍ୟ "ଓଡ଼ିଶାର ପଞ୍ଚସଖାମାନଙ୍କର" ଅନୁସୃତ ମନ୍ତ୍ର । ଏମାନ—

ହ୍ଲୀଂ, ଶ୍ଳୀଂ, କ୍ଲୀଂ – ସମଗ୍ରର ଉପାସକ । ଏହା ହିଁ ଗୁରୁ, ଶିଷ୍ୟ, ଭଗବାନ । କିନ୍ତୁ ଗୌଡ଼ୀୟମାନେ ହ୍ଲୀଂ, କ୍ଲୀଂ, ଶ୍ଳୀଂ,— ଗୁରୁ,ଭଗବାନ, ଶିଷ୍ୟ—ଇତ୍ୟାଦି ମନ୍ତ୍ରର ଉପାସକ ।

ହ୍ଲୀଂ, ଶ୍ଳୀଂ, କ୍ଲୀଂ ଜ୍ଞାନମିଶ୍ରା ଭକ୍ତର ଉପାସକଙ୍କ ମତରେ—

ହରେ—ହ୍ଲୀଂ—(୧) ଶିଷ୍ୟ, (୨) ବଳରାମ, (୩) ଶିବ, (୪) ପରା, (୫) ଭକ୍ତ ।

ରାମ—ଶ୍ଳୀଂ—(୧) ଗୁରୁ, (୨) ସୁଭଦ୍ରା, (୩) ବ୍ରହ୍ମା, (୪) ରାମ (୫) ରାଧାଭାବ ।

କୃଷ୍ଣ– କ୍ଲୀଂ –(୧)ଭଗବାନ, (୨) ଜଗନ୍ନାଥ, (୩) ବିଷ୍ଣୁ (୪) କାମ, (୫) କୃଷ୍ଣ ।

ଶୁଦ୍ଧା ଭକ୍ତର ଉପାସକ କହନ୍ତି—
ହରେ-ହ୍ଲୀଂ କ୍ଲୀଂ ଶ୍ଳୀ
କୃଷ୍ଣ ଶିଷ୍ୟ, ଭଗବାନ, ଗୁରୁ ।
ରାମ-ଶିଷ୍ୟ ଭଗବାନଙ୍କ ନିକଟକୁ ଆସିବା ପାଇଁ ଗୁରୁ କାରଣ ।

ଈଶ୍ୱର ତତ୍ତ୍ୱ ସମ୍ବନ୍ଧରେ ତାଙ୍କ ଦର୍ଶନ କେବଳ ଯେ ତାଙ୍କ ପ୍ରଥମ ଗ୍ରନ୍ଥରେ ଫୁଟି ଉଠିଛି, ତାହା ନୁହେଁ । ପରନ୍ତୁ ଅନ୍ୟାନ୍ୟ ଗ୍ରନ୍ଥରେ ମଧ୍ୟ ଏହା ଅତି ଉତ୍ତମରୂପେ ଫୁଟିଅଛି । ଈଶ୍ୱର ତତ୍ତ୍ୱ ଭଳି ପ୍ରେମତତ୍ତ୍ୱ ମଧ୍ୟ ଆଲୋଚ୍ୟ ବିଷୟ । କବିଙ୍କ ବର୍ଣ୍ଣିତ ପ୍ରେମତତ୍ତ୍ୱ ଅବିକଳ ମହାସିନ୍ଧୁ ପରି ଅତଳ ଓ ଅଗାଧ । ସେହି ତତ୍ତ୍ୱ ସଂକ୍ଷିପ୍ତ ଭାବରେ ଆଲୋଚନା କରି ଏ ପ୍ରବନ୍ଧର ପରିସମାପ୍ତି ଆଣିବାକୁ ପଡ଼ିବ ।

ଏହି ପ୍ରେମତତ୍ତ୍ୱ ବର୍ଣ୍ଣନରେ କବି ଯେଉଁ ସ୍ତରବିଶେଷ ଓ ସ୍ତରଭେଦ ଦେଖାଇଅଛନ୍ତି, ତାହା ଉଣା ଅଧିକେ ବୈଷ୍ଣବଗ୍ରନ୍ଥ ଓ ଅଳଙ୍କାର ସାହିତ୍ୟରେ ଦ୍ରଷ୍ଟବ୍ୟ । ମାତ୍ର ଯେପରି ପ୍ରାଞ୍ଜଳ ଓ ଅନନୁକରଣୀୟ ପ୍ରକାଶଭଙ୍ଗୀରେ କବି ପ୍ରେମର ତତ୍ତ୍ୱ ନିଦର୍ଶନ ଦେଇଯାଇଅଛନ୍ତି, ତାହା ଆଦର୍ଶ ହୋଇ ରହିଛି । ତାଙ୍କ ଗୁରୁ ସଦାନନ୍ଦ

କବିମ୍ନୂର୍ଯ୍ୟ ବ୍ରହ୍ମାଙ୍କ 'ପ୍ରେମତରଙ୍ଗିଣୀର' ପ୍ରୀତିବର୍ଣ୍ଣନା ପରିଦୃଷ୍ଟ । ମାତ୍ର ଅନ୍ୟାନ୍ୟ କବିଙ୍କ ପ୍ରୀତିବର୍ଣ୍ଣନା ଭଳି ଯେ ବର୍ଣ୍ଣନା ଗମ୍ଭୀର ଓ ମନସ୍ତାତ୍ତ୍ୱିକ ହୋଇ ନାହିଁ ବା ପ୍ରେମର ବର୍ଣ୍ଣନା ସେପରି ବ୍ୟାପକ ହୋଇ ନାହିଁ । କି ପ୍ରାଚୀନ କି ଆଧୁନିକ ଯୁଗର କୌଣସି କବି ଏପରି ମନୋହାରିଣୀ ଭାଷାରେ ଅଶରୀରିଣୀ ପ୍ରୀତିକୁ ରୂପ ଦାନ କରି ନାହାନ୍ତି । ଏହି ପ୍ରୀତି ବର୍ଣ୍ଣନା ହିଁ କବିଙ୍କୁ ଅକ୍ଷୟ କୀର୍ତ୍ତି ଦାନ କରିଅଛି । କବି ଅତି ଚତୁରତାର ସହିତ ତାଙ୍କ ଜୀବନର ସୁଦୀର୍ଘ ପରିପକ୍ୱ ଅଭିଜ୍ଞତା ସାହାଯ୍ୟରେ ଭକ୍ତିରସର ମଧୁର ଅବତାରଣା ମଧ୍ୟରେ ହିଁ ପ୍ରୀତିର ପରମ ତତ୍ତ୍ୱ ଫୁଟାଇ ଅଛନ୍ତି । ତାଙ୍କର ବିଶ୍ୱାସ ମାନବ ଇହଜଗତରେ ଶ୍ରଦ୍ଧା, ସ୍ନେହ, ପ୍ରେମ, ମମତା, ଭାବ, ଭକ୍ତି ପ୍ରଭୃତି ସ୍ୱର୍ଗୀୟ ଉପାଦାନ ବଳରେ ଅମରତ୍ୱ ଲାଭ କରିପାରିବ । କାରଣ ଭଗବାନ ସ୍ୱୟଂ ପ୍ରେମର ଆଧାର ଓ ଯେଉଁ ଶରୀରରେ ଏହି ପ୍ରେମର ବିମଳ ଓ ବିକଚ ଅଭିବ୍ୟକ୍ତି ପରିଦୃଷ୍ଟ, ସେହିଠାରେ ହିଁ ଭଗବାନଙ୍କର ଆବିର୍ଭାବ ଘଟେ । ତେଣୁ ତାଙ୍କ କାବ୍ୟରେ ଉପଜୀବ୍ୟ ବିଷୟ ହେଉଛି ଶାଶ୍ୱତ, ସନାତନ—ଶ୍ରୀକୃଷ୍ଣ ଓ ରାଧାଙ୍କ ଅପୂର୍ବ ପ୍ରେମ କାହାଣୀ । କବି ସ୍ୱୀୟ ଅନ୍ତରରେ ସେହିପରି ଅଖଣ୍ଡ, ଅସୀମ ଓ ଅନନ୍ତ ପ୍ରେମର ସନ୍ଧାନ ପାଇଥିବାରୁ ତାଙ୍କର ପ୍ରକାଶ ଏହିପରି ଜୀବନ୍ତ ଓ ମର୍ମସ୍ପର୍ଶୀ ହୋଇଅଛି । ପ୍ରେମାଚ୍ଛନ୍ନ ମାନବର ଅନ୍ତରର ଗମ୍ଭୀରତମ ପ୍ରଦେଶରେ କି ଭାବରାଜି କେଉଁ ଅବସ୍ଥାରେ କିପରି ଉଦ୍‌ଭୂତ ହୁଏ, ତାହାର ପୂର୍ଣ୍ଣାଙ୍ଗ ଚିତ୍ର ଦେଇ ସ୍ୱୀୟ ଅସାମାନ୍ୟ ମନସ୍ତାତ୍ତ୍ୱିକ ବିଶ୍ଳେଷଣୀ ଶକ୍ତିର ପରିଚୟ ସେ ଦେଇଯାଇଅଛନ୍ତି । ତାଙ୍କ ପ୍ରୀତି ସ୍ୱର୍ଗୀୟ ହେଲେ ହେଁ, କବି ସମସ୍ତ ସମୟରେ ସାଂସାରିକ ଭାବ ଆନୁକୂଲ୍ୟରେ ଉଦ୍‌ବ୍ୟଞ୍ଜିତ ଫୁଟାଇଅଛନ୍ତି ।

ତଥାପି ପ୍ରୀତିର ସ୍ୱର୍ଗୀୟ ଭାବର ନିଦର୍ଶନ ଦେବା ତାଙ୍କର ଉଦ୍ଦେଶ୍ୟ ସାଧନରେ ସେ ସଫଳକାମ ହୋଇଅଛନ୍ତି । ତାଙ୍କର ମୂଳ ଲକ୍ଷ୍ୟ ହେଉଛି ପ୍ରେମର ଅନନ୍ତତ୍ୱ, ଅସୀମତ୍ୱ, ମହତ୍ତ୍ୱ ତଥା ଉତ୍କର୍ଷର ପ୍ରତିପାଦନ କରିବା । ତେଣୁ ସେ ଅପ୍ରାକୃତ ପ୍ରେମର ଲୀଳା ବର୍ଣ୍ଣନାରେ ଲେଖନୀ ଚାଳନା କରିଅଛନ୍ତି । ପ୍ରେମ ହିଁ ଜଗତର ସାର ପଦାର୍ଥ । ଭଗବାନ୍ ପ୍ରେମିକର ଦାସ । ଉପନିଷଦ୍ କହେ—"ପ୍ରେମମୂଳା ମେଦିନୀ—ପ୍ରେମାଶ୍ରିତା ଜୀବନବୃତ୍ତି । ବିଶ୍ୱାସମୂଳଃ ଭଗବାନ୍ ଭୂତଭାବନ" ଇତ୍ୟାଦି ।

ଏହି ପ୍ରେମ ଜଗତରେ ସକଳ ମାନବର କାମ୍ୟ । ପ୍ରକୃତ ବସ୍ତୁ ବା ପ୍ରେମର ମହତ୍ତ୍ୱ ଉପଲବ୍ଧି କରିପାରିଲେ ଏ ଦେହରେ ମଧ୍ୟ ସ୍ୱର୍ଗୀୟ ପ୍ରେମର ସନ୍ଧାନ ମିଳିବ । ଏ ଦୃଷ୍ଟିଭଙ୍ଗୀ ଅଭିମନ୍ୟୁଙ୍କର ଥିଲା । ପ୍ରେମମୟୀ ପ୍ରକୃତି ରାଧା ଓ ପ୍ରେମରସିକ ପୂର୍ଣ୍ଣତମ ପୁରୁଷ ଶ୍ରୀକୃଷ୍ଣଙ୍କର ପ୍ରୀତିବର୍ଣ୍ଣନା ସହଜସାଧ୍ୟ ନୁହେଁ ଓ ସେହି ପ୍ରୀତି ଲୀଳା ହିଁ ଏଠାରେ ପ୍ରକାଶିତ । ସେ ଲୀଳା ପୁଣି ଅବ୍ୟକ୍ତ ଓ ନିତ୍ୟ ରାସସ୍ଥଳୀ ବୃନ୍ଦାବନରେ ପ୍ରକଟିତ ।

ଅଭିମନ୍ୟୁ ଏହିପରି ମାଳା ଓ ପ୍ରେମପରି ଏକ ରସାଳ ରସାନୁଭବାପନ୍ନ ବିଷୟକୁ ଚୟନ କରି ରସିକ, ଗ୍ରାହକ, ପାଠକ, ବିଦଗ୍ଧ, ତଥା କଳାକୁଶଳବ୍ୟକ୍ତିର ହୃଦୟ ହରଣ କରୁଅଛନ୍ତି । କବି କାମର ସଂଜ୍ଞା ନିରୂପଣ କରିବାକୁ ଯାଇ କହୁଛନ୍ତି, "ଅପ୍ରାକୃତ ପ୍ରେମର ନାମ କାମ ।" ଅପ୍ରାକୃତ ଅନୁଭୂତି ହିଁ କାମ । ଇନ୍ଦ୍ରିୟ ସେଠାରେ ପରାସ୍ତ । ସ୍ୱାର୍ଥ ସଙ୍କୁଚିତ । ପ୍ରାଣ ପ୍ରସାରିତ ହୁଏ । କାମ ଇନ୍ଦ୍ରିୟପରିତୃପ୍ତି ନୁହେ ଓ ସ୍ୱଧାତୁର ସୃଷ୍ଟି ମଧ୍ୟ ନୁହେ, ତାହା ଅକ୍ଷୟ, ଅଖଣ୍ଡ, ନିଷ୍କଳଙ୍କ. ତାହା ହିଁ ପ୍ରୀତି; ପ୍ରାକୃତ ଦେହରେ ଅନୁଭୂତ ହୁଏ ସାଂସାରିକ ପ୍ରେମ । ମାତ୍ର ଅପ୍ରାକୃତ ଶରୀରରେ ଏକମାତ୍ର ସ୍ୱର୍ଗୀୟ ପ୍ରେମର ପରାକାଷ୍ଠା ପରିଦୃଷ୍ଟ ହୁଏ । ତାହା ପୁଣି ସନ୍ଧିନୀ ଓ ଆହ୍ଲାଦିନୀ ଗୁଣ ନେଇ ସତ୍, ଚିତ୍ ଓ ଆନନ୍ଦର ମଧୁଚକ୍ର । ଆନନ୍ଦର ଅବାରିତ ପ୍ରସ୍ରବଣ । ତାହାର ଭାବ "ଅନୁଭବୀ ଜାନେ. କାହାଦ୍ୱାରା କହି ନୁହେ ବଚନେ ।" ଉପେନ୍ଦ୍ର ଭଞ୍ଜଙ୍କ ଉକ୍ତି ସହିତ ଏହାର ମେଳ ଅଛି । ଉପେନ୍ଦ୍ର ଭଞ୍ଜ ଲେଖିଲେ -

ରାଧାକୃଷ୍ଣ ନିପୁଣ ଏ ଭାବରେ<br>
ଜାଣେ ଅନୁଭବୀ ଏ ଭାବରେ ।

(ରସିକ ହାରାବଳୀ)

ସେହି ଅତି ପ୍ରିୟ ଅପ୍ରାକୃତ ରସସାର ଶୃଙ୍ଗାର ଭାବକୁ ମାଧୁର୍ଯ୍ୟ ରସସିକ୍ତ ଭାବ ଭାବନା ବୋଲାଯାଏ । ଏହାର ମାଦକତା କବିଙ୍କ ଭାଷାରେ "ଗ୍ରହିଲେ ନାହିଁ ଜୀବ ଥିବାଯାକ" । ବାଲ୍ୟକାଳରେ ମାନବର ହୃଦୟରେ କାମଦେବ ଏହାକୁ ପୋତିଥାଏ । ତାହା "ସ୍ମରସ" ବୃଷ୍ଟି ପାଇ ଅଙ୍କୁରିତ ହୋଇ ହାବ, ଭାବ, ପରିହାସ ରୂପକ ଡାଳମାନ ପ୍ରସାରିତ କରେ । ସେହି ଡାଳରୁ ନାନା ଭଙ୍ଗୀ ଚାତୁର୍ଯ୍ୟର ଯେ ରୂପକ କ୍ଷୁଦ୍ର ଡାଳ ଓ ପତ୍ର ଜାତ ହୁଏ, ତହିଁର ଫଳ ଅମୃତରସମୟ ଫଳ । ତାହାର ଅନ୍ୟ ନାମ ପ୍ରୀତି । ଏହି ପ୍ରୀତିରୁ ହିଁ ରତିର ଜନ୍ମ । ପ୍ରୀତି ନ ଥିଲେ ରତି ଶୋଭନୀୟ ହୁଏ ନାହିଁ । ଏହି ପ୍ରୀତିର ମାହାତ୍ମ୍ୟ ଅଗୋଚର । ରତି ଓ ପ୍ରୀତି ପରିପୂରକ ଅବସ୍ଥାରେ ଅବସ୍ଥିତ ହେଲେହେଁ, ପ୍ରୀତିର ଶ୍ରେଷ୍ଠତ୍ୱ ସ୍ୱୀକାର୍ଯ୍ୟ । ଉକ୍ତ ପ୍ରୀତି ଦ୍ୱିବିଧ—ସ୍ୱକୀୟ, ପରକୀୟ । ଏହା ମଧ୍ୟରେ ପରକୀୟ ପ୍ରଧାନ । ସ୍ୱକୀୟ ମଧୁର ହେଲେ ହେଁ ଗୁଣରେ ପ୍ରଥମଠାରୁ ନିକୃଷ୍ଟ । ପରକୀୟ ଦ୍ୱିବିଧ – ସମର୍ଥା ଓ ସାଧାରଣୀ । ପ୍ରୟୋଜନ ପାଇଁ ଯେଉଁ ରତି ତାହା ସାଧାରଣୀ ଏବଂ ଯେଉଁ ରତିରେ ପ୍ରିୟପାଇଁ ପ୍ରାଣ ମୂର୍ଚ୍ଛିବାକୁ ହୁଏ ଏବଂ ତ୍ୟାଗ ଭାବରେ ଯେ ଉଜ୍ଜ୍ୱଳ, ସେ ସମର୍ଥା ନାମରେ ଖ୍ୟାତ । ସମର୍ଥା ନିର୍ମଳ, ପବିତ୍ର, ପ୍ରଶାନ୍ତ, ଗଭୀର ଓ ପ୍ରଶସ୍ତ, ମାତ୍ର ସାଧାରଣୀ ସ୍ୱାର୍ଥଜଡ଼ିତ ଓ ଆବିଳତାପୂର୍ଣ୍ଣ । ସମର୍ଥା ପୁଣି ଦୁଇ ପ୍ରକାର – ସମ୍ବନ୍ଧାନୁଗା ଓ ରାଗାନୁଗା ।

ପ୍ରୀତି ପୁଣି ଅଧିକାଂଶ ସ୍ଥଳରେ ବିଭିନ୍ନ ରୂପେ ପ୍ରକଟିତ ହୁଏ । ଉତ୍ତମ ଲୋକର ପ୍ରୀତି ଅକୃତ୍ରିମ, ନିଷ୍କଳଙ୍କ ଓ ନିଷ୍କପଟ । କିନ୍ତୁ ମଧ୍ୟମ ଲୋକର ପ୍ରୀତି କିଛି ଭଳି ଅସ୍ପଷ୍ଟ, ମାତ୍ର ଅଧମ ବ୍ୟକ୍ତିର ପ୍ରେମ ଶୃଙ୍ଗାର ପ୍ରତିବିମ୍ବ ପରି ସାମାନ୍ୟ ସ୍ପଷ୍ଟ ଓ ଅଧିକ ଅସ୍ପଷ୍ଟ । ଉତ୍ତମ ପ୍ରୀତି ମର୍ତ୍ତ୍ୟସ୍ୱାଗତ ପରି ଚିରସ୍ଥାୟୀ ଓ ସୁନ୍ଦର । ଏହିପରି ପ୍ରୀତି ଉପଜାତ ହେବାପାଇଁ ଉପଯୁକ୍ତ ଆବେଷ୍ଟନୀର ପ୍ରୟୋଜନ । ସମାନ ବୟସ, ଶୋଭା, ଗୁଣ, ରସିକତାଦି ଥିଲେ ଯାଇଁ ପ୍ରକାଶକୁ ପ୍ରାଣ ଆକର୍ଷଣ କରେ । "ଗୁଣେବନ୍ତ ପ୍ରାଣେ ହୁଏ ବଶୀତି", ଏହାର ପ୍ରଭାବରେ ପ୍ରାଣେ-ପ୍ରାଣେ, ଦେହ-ଦେହ, ଏକ ହୋଇଯାଏ । "କି ଜୀବ ବ୍ରହ୍ମ କି ପରାଣେ-ମିଶେ ।" ମାତ୍ର କ୍ଷଣିକ ବିଚ୍ଛେଦ ଯୁଗଳ ଭଳି ଓ ଯୁଗଳ ମିଳନ କ୍ଷଣିକ ପରି ଲାଗେ ।

କବି ଅଭିଜ୍ଞତାର ସହିତ ଏହି ପ୍ରୀତିର ଅବଲମ୍ବନ ବିଭାବ ନରନାରୀ ଉଭୟଙ୍କୁ କରି ଅଛନ୍ତି । ଏହା ହିଁ ସାଂସାରିକ ନିୟମ । ଢୁକବେ କେବେ ନର ନର ବା ନାରୀରେ ଯେଉଁ ପ୍ରୀତି ଜନ୍ମଲଭ କରେ ସେ ପ୍ରୀତି ନୁହେ । ସେଠାରେ ରତି ନ ଥିବାରୁ ସେ ପ୍ରୀତି ସୁନ୍ଦର ନୁହେଁ । ସେଠାରେ ପ୍ରୀତିର ସ୍ୱାଦୁ ଅନୁଭୂତ ହୁଏ ନାହିଁ ଏହା ଯଥାର୍ଥ । ଜନୈକ ସଂସ୍କୃତ କବି ଏହା ହିଁ କହିଛନ୍ତି—

"ପୁଂସୋଃ କାମକଳାଚଳାକ୍ଷି ! ନକଳା ବର୍ତ୍ତ୍ୟାଶ୍ଚ ସମ୍ଭାବ୍ୟତେ ।
ଯୋଷିତ ପୁରୁଷୟୋରବନ୍ଧ ବିଧିନା ସମ୍ବନ୍ଧକୋଽୟଂ ବିଧିଃ ।"

ଏହିପରି ବିଧିକୃତ ପ୍ରୀତିର ନିଦର୍ଶନ କବି ଅଭିମନ୍ୟୁ କାବ୍ୟରେ ଦର୍ଶାଇ ଅଛନ୍ତି । କାରଣ ରସ ପ୍ରୀତିର ସ୍ୱରୂପ । ତାହା ଅକ୍ଷୟ । ପ୍ରାକ୍ତନ ବାସନା ନ ଥିଲେ ରସବୋଧ ହୁଏ ନାହିଁ । ତେଣୁ ପ୍ରୀତିବୋଧ ମଧ୍ୟ ହୁଏ ନାହିଁ । ଏହିପରି ପ୍ରୀତି ବର୍ଣ୍ଣନାରେ କବିଙ୍କ କାବ୍ୟଟି ସୁଲଳିତ ଓ ଉପାଦେୟ ହୋଇଅଛି । ବିଦଗ୍ଧ କବି ଅଭିମନ୍ୟୁ ବାସ୍ତବିକ ବିଦଗ୍ଧ, ପଣ୍ଡିତ ଓ ଭକ୍ତ । ଚିରକାଳ ଧରି ଓଡ଼ିଆ ପାଠକପାଠିକା ଉକ୍ତ କାବ୍ୟର ଉନ୍ନତ ଗ୍ରନ୍ଥଗୁଡ଼ିକ ପାଠକରି ହୃଦବ୍ୟାନଳ ଲଭିକରିବା ସଙ୍ଗେ ସଙ୍ଗେ ନିର୍ବାଣ ମୁକ୍ତିର ସଙ୍କେତ ପାଇବେ ।



# କବି ଭକ୍ତଚରଣ ଓ ମଥୁରାମଙ୍ଗଳ

କବି ଭକ୍ତଚରଣଙ୍କ ପ୍ରଣୀତ "ମଥୁରାମଙ୍ଗଳ" ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟରେ ଅନ୍ୟତମ ଉତ୍କୃଷ୍ଟ କାବ୍ୟ । ଭକ୍ତିଗ୍ରନ୍ଥ ହିସାବରେ ମଧ୍ୟ ଏହାର ସ୍ଥାନ ରହିଛି । କାବ୍ୟର ସର୍ବବିଧ ବୈଶିଷ୍ଟ୍ୟରେ ଏ କାବ୍ୟ ମହିମାନ୍ୱିତ । ବିଭିନ୍ନ ପ୍ରକାର ରସ ସମାବେଶରେ ଏହା ଉଦ୍ଦୀପ୍ତ ଓ ସୁଲଳିତ । ପ୍ରସିଦ୍ଧ ସମାଲୋଚକ ଆର୍ତ୍ତବଲ୍ଲଭ ମହାନ୍ତି ତାଙ୍କ ପ୍ରାଚୀ ସଂସ୍କରଣରେ ଉକ୍ତ କାବ୍ୟର ମୁଖବନ୍ଧରେ କବିଙ୍କ ସମୟ ନିରୂପଣଠାରୁ ଆରମ୍ଭ କରି କବିଙ୍କ ଭକ୍ତିମତ୍ତା, କବିତ୍ୱ, କାବ୍ୟବିଗ୍ରହରେ ଭାଷା, ଭାବ, ଅଳଙ୍କାର ଓ ରସାଦିର ପରିଚୟ, କାବ୍ୟର ପ୍ରତିପାଦ୍ୟ ବିଷୟ ପୂର୍ବବର୍ତ୍ତୀ କବିମାନଙ୍କର ପ୍ରଭାବାଦିପର୍ଯ୍ୟନ୍ତ ପ୍ରତ୍ୟେକ ବିଭାଗର ପୁଙ୍ଖାନୁପୁଙ୍ଖ ଆଲୋଚନା କରି ସ୍ୱୀୟ ଗଭୀର ପାଣ୍ଡିତ୍ୟର ପରିଚୟ ଦେଇଅଛନ୍ତି । ଅଧ୍ୟାପକ ଗୌରୀକୁମାର ବ୍ରହ୍ମା ମଧ୍ୟ ଉକ୍ତ କାବ୍ୟର ସମାଲୋଚନାରେ କବିଙ୍କ କାଳନିରୂପଣ ଓ କବିଙ୍କ ଭକ୍ତିବାଦର ନିଦର୍ଶନ ଦେଇ ଗବେଷଣାତ୍ମକ ବୁଦ୍ଧିର ପରିଚୟ ଦେଇଅଛନ୍ତି । ସୁସମାଲୋଚକ ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ମତରେ ଭକ୍ତଚରଣ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ମତାବଲମ୍ବୀ ଓ ଅତିବଡ଼ୀ ସମ୍ପ୍ରଦାୟର ଅନ୍ତର୍ଭୁକ୍ତ ଥିଲେ । ତେଣୁ ସେ ଉତ୍କଳୀୟ ବୈଷ୍ଣବ ଧର୍ମର ସମର୍ଥକ । ଅଧ୍ୟାପକ ବ୍ରହ୍ମା ସୁଯୁକ୍ତି ଦ୍ୱାରା କାବ୍ୟରୁ ନାନା ପ୍ରମାଣ ଉଦ୍ଧାର କରି କବିଙ୍କୁ ଗୌଡ଼ୀୟ ବୈଷ୍ଣବଧର୍ମାବଲମ୍ବୀ ବୋଲି ନାମିତ କରିବାକୁ ସଚେଷ୍ଟ । ଉଭୟବିଧ ମତର ଯୁକ୍ତିଯୁକ୍ତତା ଓ ଆଲୋଚ୍ୟ କାବ୍ୟର ମହତ୍ତ୍ୱ ପ୍ରତିପାଦନ ହିଁ ଏହି ପ୍ରବନ୍ଧର ଉଦ୍ଦେଶ୍ୟ । ଆର୍ତ୍ତବଲ୍ଲଭଙ୍କ ମତରେ ମଥୁରାମଙ୍ଗଳରେ ଭଗବାନ କୃଷ୍ଣଙ୍କର ମାଧୁର୍ଯ୍ୟାଶ୍ରିତ ଐଶ୍ୱର୍ଯ୍ୟ ଲୀଳା ପ୍ରକଟିତ । କବି ଅତିବଡ଼ୀ ଜଗନ୍ନାଥଙ୍କ ଭାଗବତର ବିଷୟବସ୍ତୁକୁ ଅନେକାଂଶରେ ଗ୍ରହଣ କରିଥିବାରୁ ତାଙ୍କ ଦ୍ୱାରା ବିଶେଷ ଭାବରେ ପ୍ରଭାବିତ । ପୁଣି ରାଧା ଓ ବୃନ୍ଦାବତୀଙ୍କର ପ୍ରାଧାନ୍ୟ ଏ କାବ୍ୟରେ ପ୍ରକାଶିତ । ଉପରୋକ୍ତ କାରଣରୁ ସମାଲୋଚକ କବିଙ୍କୁ ଅତିବଡ଼ୀ ସମ୍ପ୍ରଦାୟଭୁକ୍ତ ବୋଲି ସିଦ୍ଧାନ୍ତ କରିଅଛନ୍ତି । ଗୌଡ଼ୀୟ ବୈଷ୍ଣବମାନେ ଗୋପୀଙ୍କୁ ରାଧା ରୂପରେ କଳ୍ପନା କରନ୍ତି । ସେଠାରେ ବୃନ୍ଦାବତୀଙ୍କ ସ୍ଥାନ ନାହିଁ । ଗୌଡ଼ୀୟମାନେ ଶୁଦ୍ଧା ଭକ୍ତି ଓ ମଧୁର ଭାବର ସମର୍ଥକ; ମାତ୍ର ଉତ୍କଳୀୟମାନେ ଜ୍ଞାନମିଶ୍ରା ଭକ୍ତିର ପରିପୋଷକ । ଆଲୋଚ୍ୟ କାବ୍ୟରେ ସ୍ଥଳବିଶେଷରେ ଜ୍ଞାନମାର୍ଗ ଓ ଷଡ଼ଚକ୍ରର ଅବତାରଣା ଦର୍ଶନ କରି ସମାଲୋଚକ କବିଙ୍କୁ ଜ୍ଞାନମିଶ୍ରା ଭକ୍ତିର ଉପାସକ ବୋଲି ସ୍ଥିର

କରିବାକୁ ଆଗ୍ରହ ପ୍ରକାଶ କରିଅଛନ୍ତି । ଅବଶ୍ୟ ଉଦ୍ଧବ ଓ ଯଶୋଦା ଏବଂ ଅନ୍ୟାନ୍ୟ ଗୋପୀମାନଙ୍କର ଉକ୍ତି ପ୍ରତ୍ୟୁକ୍ତିରେ ଜ୍ଞାନମାର୍ଗ ଓ ଭକ୍ତିମାର୍ଗର ତାରତମ୍ୟ ପରିଦର୍ଶିତ ହୋଇ ଶେଷରେ ଭକ୍ତିର ଶ୍ରେଷ୍ଠତ୍ୱ ସାବ୍ୟସ୍ତ ହୋଇଅଛି ।

ଗୌଡ଼ୀୟମାନେ ଜ୍ଞାନବାଦୀ ନୁହନ୍ତି । ସେମାନେ କେବଳ ମଧୁର ବା ପ୍ରେମଭକ୍ତିର ଅନୁଧାବକ । ଏହା ମଧ୍ୟ ସମାଲୋଚକ ସ୍ୱୀକାର କରିଅଛନ୍ତି । ତାଙ୍କ ମୁଖବନ୍ଧରେ ନିମ୍ନୋକ୍ତ ବକ୍ତବ୍ୟ ବିଚାର କଲେ ତାଙ୍କ ଯୁକ୍ତିର ସାରବତ୍ତା ପ୍ରମାଣିତ ହେବ ।

"କବି ଭକ୍ତଚରଣ ଜ୍ଞାନ ଓ ଭକ୍ତିର ତାରତମ୍ୟ ଦର୍ଶାଇବା ସ୍ଥଳରେ ଯଶୋଦା ଓ ଗୋପୀଙ୍କ ସହ ଉଦ୍ଧବଙ୍କ କଥୋପକଥନ କରାଇଅଛନ୍ତି । ସେ ଉଦ୍ଧବଙ୍କୁ ଶାନ୍ତ ତଥା ଦାସ୍ୟ ଭକ୍ତିର ସାଧକ ରୂପେ ଉପସ୍ଥାପିତ କରି ସଖ୍ୟ, ବାତ୍ସଲ୍ୟ ଓ ମଧୁର ଭକ୍ତିର ଉତ୍କର୍ଷ ଦର୍ଶାଇ ଅଛନ୍ତି ।" ଏହି ମଧୁର ଭକ୍ତିର ଉତ୍କର୍ଷ ପ୍ରତିପାଦନ ହିଁ ଗୌଡ଼ୀୟ ବୈଷ୍ଣବ ଧର୍ମମତର ଏକ ବିଶିଷ୍ଟ ଅଙ୍ଗ । ଏହିଠାରେ ଗୋପରମଣୀଙ୍କ ତଥାପି ମଧୁର ରସେ, ଜ୍ଞାନ ଯେବେ ଅଳପ ମିଶେ, ତାକୁ ସେ କରଇ ବେଗେ ନାଶ" ଉକ୍ତିଟି ପ୍ରଣିଧାନଯୋଗ୍ୟ । ଅବଶ୍ୟ ଆର୍ତ୍ତବଲ୍ଲଭ ବାବୁ ନିଜର ପାଣ୍ଡିତ୍ୟ ବଳରେ ଜ୍ଞାନ ଭକ୍ତିର ଉତ୍କର୍ଷ ଓ ଅପକର୍ଷ ଏବଂ ଭକ୍ତିରେ କପରି ଜ୍ଞାନର ସନ୍ଧାନ ମିଳେ, ଏ ବିଷୟରେ ଦୃଢ଼ ଓ ବଳିଷ୍ଠ ଯୁକ୍ତି ବାଢ଼ି-ଅଛନ୍ତି । ତାଙ୍କ ମତରେ ଜ୍ଞାନର ସାର ହିଁ ଭକ୍ତି । ଭକ୍ତି ଜ୍ଞାନମୟୀ । କିନ୍ତୁ ଗୌଡ଼ୀୟ-ମାନଙ୍କ ମତରେ ଶୁଦ୍ଧାଭକ୍ତି ଜ୍ଞାନର ଅପେକ୍ଷା ରଖେ ନାହିଁ । ଜ୍ଞାନର ପ୍ରାଧାନ୍ୟ ସେଠାରେ ନାହିଁ । ଅବଶ୍ୟ ଜ୍ଞାନ ମୋକ୍ଷଲାଭର ସହାୟକ । ମାତ୍ର ବିଶୁଦ୍ଧ ଭକ୍ତିର ମୋକ୍ଷହେତୁତ୍ୱ ଏମାନେ ସ୍ୱୀକାର କରନ୍ତି । ସେମାନେ ଜ୍ଞାନବିଶେଷ ରୂପ ଭକ୍ତିର ପ୍ରାଧାନ୍ୟ ଅସ୍ୱୀକାରପୂର୍ବକ ଜ୍ଞାନ ସାମାନ୍ୟର ପ୍ରାଧାନ୍ୟ ପ୍ରେମରୂପ ପରମ ପୁରୁଷାର୍ଥର ଉଲ୍ଲେଖ ନ କରି ମୋକ୍ଷରୂପ ପୁରୁଷାର୍ଥର ସ୍ୱୀକାର କରନ୍ତି । ସୁତରାଂ ଗୋପାଙ୍ଗନାମାନଙ୍କର ଉକ୍ତି ଭକ୍ତିସହ ଗୌଡ଼ୀୟ ବୈଷ୍ଣବ ଦର୍ଶନର ସାମ୍ୟ ବିବେଚ୍ୟ ।

ଏତଦ୍ ବ୍ୟତୀତ ଉତ୍କଳୀୟ ବୈଷ୍ଣବ ବା ଅତିବଡ଼ୀ ସମ୍ପ୍ରଦାୟଭୁକ୍ତ ସାଧକମାନେ ସ୍ୱୀୟ ଗ୍ରନ୍ଥାରମ୍ଭରେ ଜଗନ୍ନାଥଙ୍କ ବନ୍ଦନା କରି ପୁରୀର ମହତ୍ତା ସ୍ୱୀକାର କରିଅଛନ୍ତି । ବଳରାମ ଦାସଙ୍କଠାରୁ ଆରମ୍ଭ କରି ଦୀନକୃଷ୍ଣଙ୍କ ପର୍ଯ୍ୟନ୍ତ ସମସ୍ତ ଉପାସକମାନେ ଉକ୍ତ ଭାବର ନିଦର୍ଶନ ଦେଇଯାଇଅଛନ୍ତି । ଅଥଚ ଭକ୍ତଚରଣ ତାଙ୍କ ଗ୍ରନ୍ଥର ମଙ୍ଗଳାଚରଣ ଛାନ୍ଦରେ ଗୋକୁଳସୁନ୍ଦର ଗୋବିନ୍ଦଙ୍କର ଜୟଗାନ କରିବାକୁ ଶ୍ରେୟଃ ମନେ କଲେ । ବିଦଗ୍ଧ କବି ଅଭିମନ୍ୟୁ ଓ ଗୋପାଳକୃଷ୍ଣାଦି ବୈଷ୍ଣବ କବିମାନେ ଗ୍ରନ୍ଥର ଆଦ୍ୟରେ ଗୋକୁଳଚନ୍ଦ୍ର କୃଷ୍ଣଙ୍କର ବନ୍ଦନା କରିଯାଇଅଛନ୍ତି । ମଥୁରାମଙ୍ଗଳ କାବ୍ୟରେ ପୁରୀଧାମର ବର୍ଣ୍ଣନା କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ, ଏପରିକି ଏ ନାମୋଲ୍ଲେଖ ପର୍ଯ୍ୟନ୍ତ ନାହିଁ କି ଜଗନ୍ନାଥଙ୍କର ଉଲ୍ଲେଖ କେଉଁଠାରେ ଦେଖାଯାଏ ନାହିଁ ।

ଉପରୋକ୍ତ ପ୍ରମାଣବଳରୁ ଅନୁମିତ ହୁଏ, କବି ଗୌଡ଼ୀୟ ବୈଷ୍ଣବ ଧର୍ମର ସମର୍ଥକ ଅଟନ୍ତି । ତାଙ୍କ ଜୀବନୀ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, କବି ନିତ୍ୟବିହାରୀ ବୃନ୍ଦାବନଚନ୍ଦ୍ରଙ୍କର ଉପାସନା କରୁଥିଲେ । ପୁନଶ୍ଚ କବିଙ୍କ ସମୟରେ ଉତ୍କଳରେ ଗୌଡ଼ୀୟ ବୈଷ୍ଣବ ଧର୍ମ ଚତୁର୍ଦ୍ଦିଗରେ ପ୍ରଚ୍ଚାରିତ ହୋଇସାରିଥିଲା । ତାଙ୍କ ସମସାମୟିକ କବି ସଦାନନ୍ଦ କବିସୂର୍ଯ୍ୟ ବ୍ରହ୍ମା ଓ ଅଭିମନ୍ୟୁ ଏମାନେ ସମସ୍ତେ ଗୌଡ଼ୀୟ ବୈଷ୍ଣବ ମତର ଉପାସକ । ଆହୁରି ମଧ୍ୟ ସେତେବେଳେ ଏ ଧର୍ମ ବ୍ରାହ୍ମଣେତର ଜାତିଙ୍କୁ ବିଶେଷ ପରିମାଣରେ ପ୍ରଭାବିତ ଓ ଅନୁପ୍ରାଣିତ କରିଥିଲା । କବି ବୈରାଗୀଚରଣ କରଣବଂଶଜ ଥିବାରୁ ଓ ସେ ସମୟରେ ବହୁ ସମ୍ଭ୍ରାନ୍ତ ବଂଶୀୟ କରଣ ଚୈତନ୍ୟଙ୍କ ପ୍ରଚ୍ଚାରିତ ଧର୍ମରେ ଦୀକ୍ଷିତ ହୋଇଥିବାରୁ ଦୃଢ଼ ବିଶ୍ୱାସ ହୁଏ, କବି ଗୌଡ଼ୀୟ ଧର୍ମାବଲମ୍ବୀ ଥିଲେ । କେବଳ ରାଧା ଓ ବୃନ୍ଦାବତୀଙ୍କ ସ୍ୱାତନ୍ତ୍ର୍ୟ ରକ୍ଷା କରିଥିବାରୁ ଏକମାତ୍ର ପ୍ରମାଣବଳରେ କବିଙ୍କୁ ଉତ୍କଳୀୟ ବୈଷ୍ଣବ ଓ ଅତିବଡ଼ୀ ଜଗନ୍ନାଥ ଦାସଙ୍କ ମତାବଲମ୍ବୀ କହିବା କେତେଦୂର ଯୁକ୍ତିଯୁକ୍ତ, ବୁଦ୍ଧିମାନ ବିବେଚକ ଅନୁମାନ କରିପାରିବେ । ଉଦ୍ଧବ ଗୋପାଙ୍ଗନାମାନଙ୍କଠାରୁ ଜ୍ଞାନଶୂନ୍ୟ ମଧୁର ରସର ମହତ୍ତ୍ୱ ଶ୍ରବଣ କରି ଆଉ ଯୁକ୍ତି କରି ନାହାନ୍ତି । ପ୍ରକାରାନ୍ତରେ ତାକୁ ଗ୍ରହଣ କରି ନେଇଅଛନ୍ତି । କବି ଲେଖିଲେ—

"ଏମନ୍ତ ଶୁଣିଲେ ଯହୁଁ ଉଦ୍ଧବ ନିର୍ବେଦ ତହୁଁ
ମନ ମଧ୍ୟେ କରନ୍ତି ବିଚାର,
ଏଡ଼େ କଥାମାନ କି କେ ଜାଣିଲେ କହିଲେ ଠିକେ
ନିଶ୍ଚେ ଏହୁ ଗୋବିନ୍ଦ ଶରୀର
ହେ ଗୋପୀମାନେ
ୟାଙ୍କ ପରେ ନାହାନ୍ତି ସଂସାରେ
ବ୍ରହ୍ମା ଶେଷ ଶଙ୍କର ଅମରେ ହେ ।"

ଉପରୋକ୍ତ କାରଣଗୁଡ଼ିକୁ ଅନୁଧ୍ୟାନ କଲେ କବିଙ୍କ ଧର୍ମମତ ଓ ଦର୍ଶନ ସମ୍ବନ୍ଧରେ ଗୋଟାଏ ସୁସ୍ପଷ୍ଟ ଧାରଣା ନିଶ୍ଚୟ ପାଠକ ମନୋରାଜ୍ୟରେ ଜାତ ହେବ । ବର୍ତ୍ତମାନ କବିଙ୍କ କବିତ୍ୱ ଓ ଅଳଙ୍କାର ଧ୍ୱନିବତ୍ତା ଏବଂ ତାଙ୍କ ପ୍ରକାଶଭଙ୍ଗୀର ବିଶେଷତ୍ୱ ସମ୍ବନ୍ଧେ ବିଚାର କରିଯାଉ । ଏହା ସର୍ବବାଦୀ ଯେ ଭକ୍ତଚରଣଙ୍କ ମଥୁରାମଙ୍ଗଳ ଦୀନକୃଷ୍ଣଙ୍କ ରସକଲ୍ଲୋଳର ଅନୁସରଣରେ ଲିଖିତ ହେଲେ ହେଁ ଭକ୍ତଚରଣଙ୍କ ମୌଳିକତା ସୁରକ୍ଷିତ ହୋଇଛି । ଉଭୟ କାବ୍ୟ ସଙ୍ଗୀତାତ୍ମକ । ନାନାବିଧ ରାଗରାଗିଣୀରେ ଦୁଇଟି କାବ୍ୟ ମନୋରମ ଓ ସୁଗେୟ ହୋଇଛି । ମାତ୍ର ରସକଲ୍ଲୋଳର ପଦଲାଳିତ୍ୟ ମଥୁରାମଙ୍ଗଳରେ ଦୁର୍ଲ୍ଲଭ । ଉଭୟ କବି ନାୟକ-ନାୟିକାର କଟୂକ୍ତି ବା ଖେଦୋକ୍ତି ବର୍ଣ୍ଣନାରେ ସିଦ୍ଧହସ୍ତତା ଅର୍ଜନ କରିଅଛନ୍ତି । ମାତ୍ର ରସକଲ୍ଲୋଳରେ କବି ମର୍ମସ୍ପର୍ଶୀ ଭାଷାରେ

ଗୋପାଙ୍ଗନାମାନଙ୍କର ବିରହୋକ୍ତି ଏପରି ଭାବରେ ଉଦ୍ଧବ ମୁଖରେ ପ୍ରକାଶ କରିଅଛନ୍ତି, ଯାହା ଫଳରେ ବ୍ରଜରାଜ ଶ୍ରୀକୃଷ୍ଣଙ୍କ କମଳନୟନରୁ ବାରି ନିର୍ଗତ ହୋଇଛି । କିନ୍ତୁ ମଥୁରାମଙ୍ଗଳରେ ଅନୁରୂପ ବିରହ ଭାବ କମନୀୟ ଭାଷାରେ ମର୍ମକୁ ମଥିତ କଲାଭଳି ପ୍ରକାଶ କରିଥିଲେ ମଧ୍ୟ ସେହି କଞ୍ଜନୟନର ଅଶ୍ରୁ ନିର୍ଗତ ହୋଇ ନାହିଁ । ଏଠାରେ ରସକଲ୍ଲୋଳକାର ଅତି ବଡ଼ କୌଶଳୀ କବି ବୋଲି ଅନୁମିତ । ଉଦ୍ଧବ କହୁଛନ୍ତି—

"କହିଛନ୍ତି କୋଟି ଦଣ୍ଡ ପ୍ରଣାମ
କରି ତୁମ୍ଭ ଆଜ୍ଞା ଆଶା ବିଶ୍ରାମ
କେଉଁ ଭାଗ୍ୟରୁ ରହିଅଛି ପ୍ରାଣ
କରୁଣାସିନ୍ଧୁ ତୁମ୍ଭେ ତାହା ଜାଣ
କର୍ଣ୍ଣେ ଶୁଣି ହରି; କମଳନେତ୍ରୁଁ ପକାଇଲେ ବାରି ।"

ପୁନଶ୍ଚ କହିଲେ—

"ଶ୍ୱାସ ପକାଇ ମାଧବ
କହିଲେ ଯେଉଁ କଥା ହେ ଉଦ୍ଧବ
କିଞ୍ଚିତ ବିଚ୍ଛେଦ ଯୁକ୍ତ ଯାହାଙ୍କୁ
କାଳେ ହେଲି ଭେଟ ନାହିଁ ତାହାଙ୍କୁ
କଷ୍ଟ ଅବା କେତେ, କରିଥି ହେଲେ ମୋ ଆଶା କରନ୍ତେ ।

ଏ ଚିତ୍ର ବାସ୍ତବ ଓ ମର୍ମବିଦାରକ, ପାଠକର ହୃଦୟରେ ଶୋକଲହରୀ ଜାତ କରାଏ । ମଥୁରାମଙ୍ଗଳରେ—

"ଏ ବାଣୀ ଶୁଣି ଗୋବିନ୍ଦ ବୁଜି ନେତ୍ର ଅରବିନ୍ଦ
ହୃଦରେ ସୁମରି ଗୋପୀଭାବ
ଟିକିକ ଅନ୍ତରେ ଭାଷି ଧନ୍ୟ ସେ ଗୋପନିବାସୀ
ମୋହଠାରେ ଏଡ଼େ ଭାବ ସେ ଗୋପୀମାନେ
ମୋତେ କି କରିବେ ପୁରି ଜ୍ୟେଷ୍ଠ
ସେମାନଙ୍କ ସଙ୍ଗେ ହେବ ଭେଟ ହେ ।"

ଏଠାରେ ରସକଲ୍ଲୋଳୋଚିତ ପ୍ରାଣକୁ ସ୍ପର୍ଶ କଲାଭଳି ଭାବର ଆବେଗ ନାହିଁ ।

ରସକଲ୍ଲୋଳ କବିଙ୍କ ଜଗନ୍ନାଥୈକପ୍ରାଣତା ସବିଶେଷ ତାଙ୍କ କାବ୍ୟରେ ପରିଲକ୍ଷିତ ହୁଏ । ଭକ୍ତଚରଣଙ୍କ କୃଷ୍ଣୈକପ୍ରାଣତା ସବିଶେଷ ପରିଦୃଷ୍ଟ । ରସକଲ୍ଲୋଳର କବି ରସିକ ।

ତାଙ୍କ ରସିକତା ଓ ଯୁକ୍ତିଯୁକ୍ତ ଉକ୍ତିଚୟ ଭକ୍ତଚରଣଙ୍କ ମଥୁରାମଙ୍ଗଳରେ ଦୁର୍ଲଭ । ବିଶେଷତଃ କବି ଯେଉଁ କାନ୍ତକୋମଳ ପଦାବଳୀ ସାହାଯ୍ୟରେ କବି ଓ କବିତ୍ୱର ସମ୍ବନ୍ଧ ଦର୍ଶାଇ ସ୍ୱମତ ପ୍ରକାଶ କରିଅଛନ୍ତି, ତାହା ସମଗ୍ର ଉତ୍କଳ କାବ୍ୟସାହିତ୍ୟରେ ଅଭିନବତ୍ୱ ବଜାୟ ରଖିଛି । ମାତ୍ର ଉଭୟ କବିଙ୍କର ସାଂସ୍କୃତିକ ଅଭିଜ୍ଞତା ପ୍ରଚୁର ପରିମାଣରେ ଥିଲା ଏବଂ ଉଭୟେ ଉପଦେଷ୍ଟା ଆସନରେ ଆସୀନ । ଉଭୟେ ପରମଭକ୍ତ ଓ ପରମ ବୈଷ୍ଣବ । ମାତ୍ର ଦୀନକୃଷ୍ଣଙ୍କର ଅକୁତୋଭୟତା, ଆତ୍ମବଳ ଓ ଆତ୍ମଗ୍ଲାନି ଯେପରି ଭାବରେ ରସକଲ୍ଲୋଳରେ ପ୍ରଦର୍ଶିତ ହୋଇଅଛି, ସେପରି ଭାବ ମଥୁରାମଙ୍ଗଳରେ ପରିଲକ୍ଷିତ ହୁଏ ନାହିଁ । ଅବଶ୍ୟ ଦୀନକୃଷ୍ଣ ଜୀବନରେ ବହୁବାର ଅତ୍ୟାଚରିତ ହୋଇଥିଲେ । ତେଣୁ ତାଙ୍କ କାବ୍ୟ ଏକ ବିକ୍ଷୋଭପୂର୍ଣ୍ଣ ହୃଦୟର କରୁଣ ଅଭିବ୍ୟକ୍ତିରୂପେ ଦଣ୍ଡାୟମାନ । ଦୀନକୃଷ୍ଣଙ୍କ ରସକଲ୍ଲୋଳରେ ପ୍ରକୃତିର କେତେକ ଚିତ୍ର ସନ୍ନିବେଶିତ । ମାତ୍ର ମଥୁରାମଙ୍ଗଳରେ ପ୍ରାକୃତିକ ଚିତ୍ରର ଅଭାବ । ଦୀନକୃଷ୍ଣଙ୍କ ରସକଲ୍ଲୋଳରେ ସାମାଜିକ ଚିତ୍ର ବିଶେଷ ଭାବରେ ସ୍ଥାନ ପାଇଛି; ମାତ୍ର ମଥୁରାମଙ୍ଗଳରେ ସେପରି ଚିତ୍ରର ଅଭାବ । କେବଳ ମଲ୍ଲଯୁଦ୍ଧର ବର୍ଣ୍ଣନା ଦେଖିଲେ ତତ୍କାଳୀନ ଉତ୍କଳରେ ମଲ୍ଲଯୁଦ୍ଧର ଯେ ପ୍ରଚଳନ ଥିଲା, ତାର ଗୋଟିଏ କ୍ଷୀଣ ଆଭାସ ମିଳେ । ଭକ୍ତଚରଣ କେତେଗୁଡ଼ିଏ ପ୍ରାଚୀନ ଖାଣ୍ଟିଘିଅ ଓଡ଼ିଆ ଶବ୍ଦ କ୍ରିୟାବିଶେଷଣ ପଦର ପ୍ରୟୋଗ କରିବାଦ୍ୱାରା ପଦର ଚମତ୍କାରିତା ବୃଦ୍ଧିପ୍ରାପ୍ତ ହୋଇଛି । ଯଥା, ଶୋଇ, ସଫୋଡ଼େ, ବାଗେ, ମଟଙ୍କ, ଛଟକେ, ନଳଆଇ, କଳଆଇ, ନଉଡ଼େ, କଟକାଇ ଓ ଠଣା, ଲୁନ୍ଦର ପ୍ରଭୃତି ଅନୁସନ୍ଧେୟ ।

ଦୀନକୃଷ୍ଣଙ୍କ ରସକଲ୍ଲୋଳରେ ନାନା ଋତୁର ବର୍ଣ୍ଣନା ଅତୀବ ଚମତ୍କାର ଓ ବାସ୍ତବ ହୋଇଛି । ପ୍ରଭାତ ବର୍ଣ୍ଣନା ମଧ୍ୟ ସେହିପରି କମନୀୟ ହୋଇଅଛି । ମଥୁରାମଙ୍ଗଳରେ ଏପରି ପ୍ରଭାତ ବର୍ଣ୍ଣନା ଥିଲେ ମଧ୍ୟ ଋତୁବର୍ଣ୍ଣନାର ଅଭାବ ପାଠକର ଦୃଷ୍ଟିରେ ପଡ଼ିଥାଏ । ନାନା ଭାବର ପ୍ରକାଶ ପାଇଁ ଉଭୟେ ନାନାବିଧ ରାଗିଣୀ ସନ୍ନିବେଶିତ କରି ନିଜ ନିଜର ସାଙ୍ଗୀତିକତାର ସେ ପରିଚୟ ଦେଇଅଛନ୍ତି । ସାବଧାନରେ ପାଠ କଲେ ମନେହୁଏ, ରସକଲ୍ଲୋଳକାର ତାଙ୍କ କାବ୍ୟରେ ମଥୁରାମଙ୍ଗଳଠାରୁ ଅଧିକ ବେଶୀ ରାଗର ସୂଚନା ଦେଇଅଛନ୍ତି ଏବଂ ରସର ପରିଚୟ ଦେବାକୁ ହେଲେ ପ୍ରକୃତ କେଉଁ ରାଗରେ ତାହା ପରିସ୍ଫୁଟ ହେବ, ସେ ବିଷୟରେ କବିଙ୍କ ଅଭିଜ୍ଞତା ବିଶେଷ ପରିମାଣରେ ପରିଲକ୍ଷିତ । ଉଦାହରଣ ସ୍ୱରୂପ ଖେଦୋକ୍ତି ବା କରୁଣୋକ୍ତି ବର୍ଣ୍ଣନାରେ ରସକଲ୍ଲୋଳକାର ଦେଶାକ୍ଷ ରାଗର ବ୍ୟବହାର ଦେଖାଇଥିବାବେଳେ ମଥୁରାମଙ୍ଗଳକାର ସେଠାରେ କଲ୍ୟାଣ ଆହାରୀ ରାଗର ଆବଶ୍ୟକତା ଉପଲବ୍ଧି କରିଅଛନ୍ତି । କଲ୍ୟାଣ ଆହାରୀ ଯେକୌଣସି ବର୍ଣ୍ଣନାରେ ବ୍ୟବହୃତ ହୁଏ । ମାତ୍ର କରୁଣରସ ପ୍ରକାଶରେ କେବଳ ଦେଶାକ୍ଷ ବା ଚିନ୍ତା ଦେଶାକ୍ଷ ରାଗ ଅଧିକ ଉପଯୋଗୀ । ଉଭୟଙ୍କ କରୁଣରସ ଶୃଙ୍ଗାରାଶ୍ରିତ । ମାତ୍ର ରସକଲ୍ଲୋଳ ଶୃଙ୍ଗାର-ପ୍ରଧାନ କାବ୍ୟ । ମଥୁରାମଙ୍ଗଳରେ ଗୋପୀମାନଙ୍କର ଶୃଙ୍ଗାରାଶ୍ରିତ କରୁଣଭାବ ଓ

ଯଶୋଦାଙ୍କର ବାତ୍ସଲ୍ୟାଶ୍ରିତ କରୁଣଭାବ ପ୍ରକାଶିତ ହୋଇଅଛି । ମଥୁରାମଙ୍ଗଳରେ ଶାନ୍ତ, ଦାସ୍ୟ, ସଖ୍ୟ,ବାତ୍ସଲ୍ୟ, କରୁଣ, ବୀର ଓ ଶୃଙ୍ଗାର ରସର ପରିଚୟ ମିଳୁଥିଲେ ହେଁ ବାତ୍ସଲ୍ୟ ବୀର ଓ ଶୃଙ୍ଗାରାଶ୍ରିତ କରୁଣ ହିଁ ପ୍ରାଧାନ୍ୟ ଲାଭ କରିଛି । ରସକଲ୍ଲୋଳରେ ବୀର ରସର ଇଙ୍ଗିତ ମାତ୍ର ଅଛି । ମାତ୍ର ଉକ୍ତ ରସ ମଥୁରାମଙ୍ଗଳରେ କଂସର ଚଟାଣ, ମଧୁବନ-ଲୁଣ୍ଠନ, କୃଷ୍ଣବଳଙ୍କର ଯୁଦ୍ଧାଦି ବର୍ଣ୍ଣନାରେ ପ୍ରକଟିତ ହୋଇଅଛି । ଉଭୟ କବି ଗ୍ରନ୍ଥର ଶେଷରେ ଭଣିତା କଲାବେଳେ ସ୍ୱୀୟ ଭକ୍ତପ୍ରାଣତା ଓ ଭକ୍ତିନିଷ୍ଠତାର ନିଦର୍ଶନ ଦେଇଅଛନ୍ତି ଭକ୍ତଚରଣ କେତେବେଳେ ଅକ୍ରୂର ସଙ୍ଗରେ ରଥ ସାଜି କୃଷ୍ଣ ଦର୍ଶନ ଆଶାରେ ଉଦ୍‌ବିଗ୍ନ କେତେବେଳେ ସେ ନନ୍ଦରାଣୀଙ୍କ ସହ କ୍ରନ୍ଦନ କରି କୃଷ୍ଣଙ୍କୁ କରମ୍ବିତ କରୁଅଛନ୍ତି, ଆଉ କେତେବେଳେ କୃଷ୍ଣଙ୍କ ମଥୁରା ବିଜୟରେ ଗୋପୀମାନଙ୍କ ସହିତ ସମଭାବାପନ୍ନ ହୋଇ ନିଜର ଦୈନ୍ୟ ପ୍ରକାଶ କରୁଅଛନ୍ତି । ସେ ନିଜକୁ ଅନାଥ ବୋଲି ମନେକରି ତାଙ୍କ ଦେହରେ ଗୁରୁତାପର ସଂଗ୍ରହ ହେଲାଣି ବୋଲି କହୁଛନ୍ତି । ଭଗବାନ କୃଷ୍ଣଙ୍କ ନିଦ୍ରିତ ଅବସ୍ଥାରେ କବି ଚରଣ ମର୍ଦ୍ଦନ କରୁଅଛନ୍ତି । ଏହିପରି ନାନା ଭାବ କବିଙ୍କ ହୃଦୟରେ ଉପଜାତ ହେଉଅଛି । କବିଙ୍କ ଗୋପୀଭାବ ଏଠାରେ ସୁସ୍ପଷ୍ଟ । ସେ ଗୋପୀଭାବରେ କୃଷ୍ଣଙ୍କୁ ଧ୍ୟାନ କରୁଥିବାର ଏ ଏକ ପ୍ରକୃଷ୍ଟ ପ୍ରମାଣ ।

ମଥୁରାମଙ୍ଗଳ କାବ୍ୟରେ କବିଙ୍କ କାବ୍ୟିକ ପ୍ରକାଶଭଙ୍ଗୀ ନାନାଦି ଅଳଙ୍କାର ସହ ୫ମ, ୭ମ, ୯ମ, ୧୨ଶ ଓ ୧୯ଶ ଛାନ୍ଦମାନଙ୍କରେ ଅତି ସୁସ୍ପଷ୍ଟ ହୋଇଅଛି । ଉଚ୍ଚକୋଟୀର କବିତ୍ୱ ସହ ଅଳଙ୍କାରର ସୁସମାବେଶ ଉକ୍ତ ଛାନ୍ଦଗୁଡ଼ିକୁ ଅତି ଉପାଦେୟ ଓ ହୃଦୟତୃପ୍ତି-କାରକ କରିଅଛି । କାରଣ ରସପ୍ରଧାନ କାବ୍ୟ ମଥୁରାମଙ୍ଗଳ ପାଠକର ହୃଦୟରେ ବାସ୍ତବିକ କରୁଣୋଚ୍ଛ୍ୱାସ ସୃଷ୍ଟି କରେ । କବିଙ୍କ ଆତ୍ମନିବେଦନ ଉଦ୍‌ବେଳିତ ପ୍ରାଣରେ ଗମ୍ଭୀରତମ ପ୍ରଦେଶରୁ ସତେ କି ଝରିଆସିଛି ।

କୃଷ୍ଣଙ୍କର ଶୋଭା ବର୍ଣ୍ଣନାରେ କବି ପଟୁତା ଅର୍ଜନ କରିଥିବାର ପ୍ରମାଣ ମିଳେ । କୃତକୃତ୍ୟପୂର୍ଣ୍ଣ ବର୍ଣ୍ଣନାଶକ୍ତିରେ ତାଙ୍କ କବିତାବଳୀ ଉଜ୍ଜ୍ୱଳ ହୋଇଉଠିଛି । ୨ୟ ଛାନ୍ଦରେ କବି ଲେଖିଲେ—

ଶିରେ ଶିଖିମୁଣ୍ଡିକ ଅବା ମଣ୍ଡି ଥୋଇଛି ଇନ୍ଦ୍ରଧନୁ
ଭ୍ରମରଶ୍ରେଣୀ ଚୁମ୍ବନ୍ତି ଜାଣି ସୁଗନ୍ଧ ଗନ୍ଧ ଯେଣୁ ।
ଅଳକାପନ୍ତି ଝଳି ଦିଶନ୍ତି ଭ୍ରୂଲତା ପୁଷ୍ପଚାପ
ନୟନବାଣ ଅଞ୍ଜନଗୁଣ କର୍ଣ୍ଣ ପର୍ଯ୍ୟନ୍ତ ଧାପ ।
ତିଳକୁସୁମ ନାସା ସୁସମ ଅଧର ପାରିଜାତ
କର୍ଣ୍ଣକୁଣ୍ଡଳ ରବିମଣ୍ଡଳ ନିନ୍ଦଇ ଶତପତ୍ର ।

ଏପରି ବର୍ଣ୍ଣନା ଭଞ୍ଜ ଓ ଧୀନକୃଷ୍ଣଙ୍କ କାବ୍ୟରେ ମଧ୍ୟ ପୂରି ରହିଛି । ଅନ୍ୟାନ୍ୟ କବିମାନଙ୍କ ଭଳି ଭକ୍ତଚରଣ ବର୍ଣ୍ଣନା ପ୍ରସଙ୍ଗରେ ପୁନରାବୃତ୍ତି ଦୋଷ ଜାଣିଶୁଣି ଭର୍ତ୍ତି କରିଅଛନ୍ତି । ଉଦାହରଣ ସ୍ୱରୂପ ୧୯ଶ ଛାନ୍ଦରେ—

"ଶିରେ ଶିଖି ଚନ୍ଦ୍ରିକା ଏ ଶୋଭାବନ
ଛନ୍ଦେ ସହସ୍ରାକ୍ଷ ଧନୁ,
ଭୃଙ୍ଗପୁଞ୍ଜ ଦାମ ବେଢ଼ି ରହିଅଛୁ
ଦେଖି ଡରିଲେ ଅତନୁ ।
ଅଳକାପନ୍ତି ବାଳ ଅଳି ପରାୟେ
ଭ୍ରୂଲତା ମାରକାର୍ମୁକ
ନୟନକାଣ୍ଡ ଅଞ୍ଜନଗୁଣ, ତିଳ
ଫୁଲଠାଁରୁ ନାସା ଠିକ ।"

ସରଳ ଭାଷାରେ କମନୀୟ ବର୍ଣ୍ଣନା ହେଲେ ମଧ୍ୟ ଏପରି ବର୍ଣ୍ଣନା ବହୁବାର କାବ୍ୟରେ ସନ୍ନିବେଶିତ ହୋଇଥିବାରୁ ପାଠକର ଧୈର୍ଯ୍ୟଚ୍ୟୁତ ଘଟାଏ । ପୁନଶ୍ଚ ତ୍ରୟୋଦଶ ଛାନ୍ଦରେ ସେହି ଏକ ପ୍ରକାର ବର୍ଣ୍ଣନା ଦେଖାଯାଏ । ଏ ବର୍ଣ୍ଣନାରେ କେବଳ ଗତାନୁଗତିକତା ରକ୍ଷିତ ହୋଇଛି ।

"ଶିରେ ଭୁଜଙ୍ଗଭୁକ-ପୁଚ୍ଛ ଶୋହିଛି, କିଦରି ଇନ୍ଦ୍ର ଶରାସନ
ଅଳକାପନ୍ତି ବାଳଅଳି ଗଞ୍ଜିଇ ଦେଖି କେ ନୋହିବ ଉଛନ୍ନ
ଭ୍ରୂଲତା, କି ଅବା ମଦନକୋଦଣ୍ଡ
ଅଞ୍ଜନଲତାକୁ ଗୁଣ କରିଅଛି କଞ୍ଜନୟନ ପଞ୍ଚକାଣ୍ଡ ।
ତିଳଫୁଲ ନାସା ଦକ୍ଷିଣ ପୁଡ଼ାରେ ଶୋହୁଛି ବର୍ତ୍ତୁଳ ମୁକୁତା
କଳାକାର କୋଳେ କି ଅବା ନିଷ୍ଟଳେ ଉଦେ ହୋଇଅଛି ସବିତା
କର୍ଣ୍ଣରେ, କୁଣ୍ଡଳ କି ଏ ମାରତଣ୍ଡ
ମନସିଜକର ଆଦରଶ ପ୍ରାୟେ ଶୋଭା ପାଉଛି ବେନି ଗଣ୍ଡ ।"

ଉନ୍ନତ କବିତ୍ୱ ଏଠାରେ ବିଳସିତ । କବି ଜଣେ ଉପଦେଷ୍ଟା ଥିଲେ । ଜାତିକୁ ପ୍ରକୃତ ପଥରେ ଚାଲିବାକୁ ସାବଧାନ ବାଣୀ ସେ ଶୁଣାଇଅଛନ୍ତି—

"ଧନ ଜୀବନ ଥିର ନୁହେଁ ପାପ ଅନଳ ପିଣ୍ଡ କାଷ୍ଠ ଦହେ
ଲୋଭ ସକଳ ଦ୍ରବ୍ୟେ ପ୍ରବର୍ତ୍ତାଇ କାମ କାମିନୀ ମଦରେ ମତାଇ
କୃଷ୍ଣଚରିତ ଅମୃତବାରିଧି କଳି ମନୁଷ ରୋଗକୁ ଔଷଧି
ବ୍ୟାଧି ଅଳପ ହୋଇ ସଞ୍ଚଇ ହେଲା ମାତ୍ରକେ ପରାଣେ ମାରଇ

ଶୂନ୍ୟ ମଣ୍ଡଳେ ମେଘ ପ୍ରକାଶଇ ଛିଦ୍ର ହୋଇ ବହୁତ ବରଷଇ
ଉପୁକୁଚରେ ଆଗି କଣା ଥାଇ ମନ୍ଦପବନେ ବଳିଷ୍ଠ ହୁଅଇ ।"

କାବ୍ୟସମାପ୍ତିରେ କବି ଦୀନକୃଷ୍ଣ ଯେପରି ସାଧୁସଙ୍ଗ ଲାଭ କରି ସଦା କୃଷ୍ଣଙ୍କୁ ଧ୍ୟାନ କରିବାକୁ ଉପଦେଶ ଦେଇଯାଇଅଛନ୍ତି, ଭକ୍ତଚରଣ ମଧ୍ୟ ସେହିପରି ତାଙ୍କ କାବ୍ୟ ସମାପ୍ତିରେ ସେହି ରାଧାକୃଷ୍ଣଙ୍କୁ ଭଜିବା ସକାଶେ ମାନବ ସମାଜକୁ ନିର୍ଦ୍ଦେଶ ଦେଇ ଯାଇଅଛନ୍ତି ।

"ନିର୍ଦ୍ଦୟ ଜନ୍ତୁଙ୍କ ରାଜା କରଇ ଯେତେ ତରଜା
ତିଳେହେଁ ଓପ୍ରଧ ନ କରଇ
ଶୁଣ ତ ଅଛ ପୁରାଣେ କୃଷ୍ଣ ନ ଭଜିଲାମାନେ
ନରକରେ ତାହାଙ୍କୁ ବୁଡ଼ାଇ, ହେ ନରମାନେ
ସ୍ନେହା ଛାଡ଼ି ଗର୍ବମାନ
କରି ରାଧାଗୋବିନ୍ଦଙ୍କୁ ଧ୍ୟାନ ।"

ଗୋପାଳକୃଷ୍ଣ ସେହି ରାଧାଗୋବିନ୍ଦଙ୍କ ଭଜନ କରୁଥିଲେ । କବି ତାଙ୍କ ଜୀବନ ଗଲାବେଳେ କହିଥିଲେ—

"ଜୀବ ଯିବାକୁ ସଜ
ରାଧାଗୋବିନ୍ଦ ଭଜ ।"

ଭକ୍ତଚରଣ ସେହି ରାଧାଗୋବିନ୍ଦଙ୍କ ଉପାସକ । ଶେଷରେ କବି ଜୀବନରେ ସାଧୁସଙ୍ଗ ଲାଭ କରି ନ ପାରି କିପରି ବିଚଳିତ ଓ ତାଙ୍କ ଅନ୍ତର କିଭଳି ବିକ୍ଷୋଭିତ ହୋଇଥିଲା, ତାହା ସେ ନିମ୍ନୋକ୍ତ ଛନ୍ଦରେ ପ୍ରକାଶ କରି କାବ୍ୟର ପରିସମାପ୍ତି ଆଣିଅଛନ୍ତି ।

"ଭଗତ ଚରଣ ଦାସ ହୋଇଲା ବଡ଼ ନିରାଶ
ଯେଣୁ ନ ପାଇଲା ସାଧୁସଙ୍ଗ
ସଂସାରସାଗରେ ପଡ଼ି ଜରତେ ରହିଲା ବୁଡ଼ି
ମଳ ବାଜି ବଳସ୍ତ ତରଙ୍ଗ ହେ, ସାଧୁଜନେ
ଅଧମକୁ ଦେଖି ଦୟାକରି, ତୁମ୍ଭ ପାଦ ଦିଅ ମୋର ଶିର ହେ—

କି କରୁଣ ଆତ୍ମନିବେଦନ ! କବି ଭକ୍ତଚରଣ ଧର୍ମପ୍ରାଣ, ପରମଭକ୍ତ ଓ ଉଦେଷ୍ଟା ହିସାବରେ ଉତ୍କଳରେ ଚିରକାଳ ପୂଜା ପାଇବେ । ବିନସ୍ରୀ କବିଙ୍କର ହୃଦୟ ନୈବେଦ୍ୟ ଭାବଗ୍ରାହୀ କୃଷ୍ଣଙ୍କ ପାଦପଦ୍ମରେ ଅର୍ପିତ ହୋଇଛି ।

●

# କବି ଗୋପାଳକୃଷ୍ଣ

ଚୈତନ୍ୟଙ୍କଦ୍ୱାରା ପ୍ରବର୍ତ୍ତିତ ଓ ପ୍ରଚାରିତ ଶୁଦ୍ଧାଭକ୍ତିର ଅନ୍ୟତମ ପଞ୍ଚପୁରୋଧା କବିକଳହଂସ ଗୋପାଳକୃଷ୍ଣ ସ୍ୱୀୟ କବିତାବଳୀଦ୍ୱାରା ଓଡ଼ିଆ ବୈଷ୍ଣବ ସାହିତ୍ୟକୁ ସମୃଦ୍ଧ ଓ ପରିପୁଷ୍ଟ କରିଯାଇଅଛନ୍ତି । ତାଙ୍କ ପୂର୍ବରୁ ଅଭିମନ୍ୟୁ, ଭକ୍ତଚରଣ ଓ କବିସୂର୍ଯ୍ୟ ପ୍ରମୁଖ ବୈଷ୍ଣବ କବି ଉକ୍ତ ଭକ୍ତିରସର ନିଦର୍ଶନ ନିଜ ନିଜ କାବ୍ୟାବଳୀରେ ଦେଇ ଯାଇଅଛନ୍ତି ସନ୍ଦେହ ନାହିଁ; ମାତ୍ର ଭାବ ଓ ଭାଷାର କ୍ଲିଷ୍ଟତା ଯୋଗୁଁ ପାଠକ ପକ୍ଷରେ ଉକ୍ତରସ ଆସ୍ୱାଦନ ଯେପରି କଷ୍ଟକର ହୋଇପଡ଼ିଥିଲା । ଯେତେବେଳେ ସାଧାରଣ ପାଠକ କାବ୍ୟରସ ଉପଭୋଗ କରିବାକୁ ଯାଇ କବିଙ୍କ ଶବ୍ଦାଡ଼ମ୍ବର ନାଗପାଶରେ ନିଜକୁ ନିବଦ୍ଧ କରି କ୍ରମେ କ୍ରମେ ଅନାଗ୍ରହୀ ହୋଇପଡ଼ିଲେ, ଠିକ୍ ସେତିକିବେଳେ କବି ଗୋପାଳକୃଷ୍ଣ ପାରଳାଖେମୁଣ୍ଡିରେ ଆବିର୍ଭୂତ ହୋଇ ସରଳ, ତରଳ, ଲଳିତ, କୋମଳ ଓ ଲୋକପ୍ରଚଳିତ ଭାଷାରେ ସ୍ୱୀୟ କବିତାବଳୀ ରଚନା କରି ସର୍ବଶ୍ରେଣୀର ପାଠକଗୋଷ୍ଠୀଙ୍କୁ ବ୍ରଜରସ ଆସ୍ୱାଦନ କରାଇବାରେ ସମର୍ଥ ହୋଇଥିଲେ । ପାରଳାଖେମୁଣ୍ଡି ବହୁ ଦିନରୁ ବୈଷ୍ଣବ କବିମାନଙ୍କର ଲୀଳାଭୂମିରୂପେ ପ୍ରସିଦ୍ଧି ଲାଭ କରି ଆସିଥିଲା । ଉପଯୁକ୍ତ ପରିବେଶ ପାଇ ଗୋପାଳକୃଷ୍ଣ ବ୍ରଜରସର ମାଧୁର୍ଯ୍ୟ ପ୍ରକାଶରେ ମନ ବଳାଇଲେ । ତାଙ୍କର ସମସ୍ତ ପଦ୍ୟାବଳୀ ପାଠ କଲେ ରାଧାଗତପ୍ରାଣ ଗୋପାଳକୃଷ୍ଣଙ୍କ ସୌଷ୍ଠବ, ପ୍ରକାଶଭଙ୍ଗୀ, ସୁଗଭୀର ଓ ବ୍ୟାପକ ଅନୁଭୂତିର ସ୍ୱଚ୍ଛ ଅଭିବ୍ୟକ୍ତି, ସୂକ୍ଷ୍ମଦୃଷ୍ଟି, ମନସ୍ତାତ୍ତ୍ୱିକ ବିଶ୍ଳେଷଣ, କମନୀୟଭାବର ସୁମୋହନ ପ୍ରକାଶ, ଭକ୍ତିପ୍ରାଣତା ଓ ମୌଳିକତା ଉପରେ ସର୍ବାଗ୍ରେ ପାଠକର ଦୃଷ୍ଟି ପଡ଼ିଥାଏ । ରାଧାକୃଷ୍ଣ ପ୍ରେମ ସେ ହୃଦୟରେ ନିବିଡ଼ ଭାବରେ ଉପଲବ୍ଧି କରିଥିଲେ ବୋଲି ତାହାର ପ୍ରକାଶ ଏପରି ପ୍ରାଞ୍ଜଳ, ମନୋଜ୍ଞ ଓ ରସାଳ ହୋଇଉଠିଛି । ତେଣୁ ତାଙ୍କ ପଦ୍ୟାବଳୀ ଆଜି ସର୍ବଶ୍ରେଣୀର ନରନାରୀମାନଙ୍କର କୋଠଧନ । କବିତାମାନ ରଚନା କରିବା ପୂର୍ବରୁ ସେ ଗୋସ୍ୱାମୀ ଗ୍ରନ୍ଥ ଅତି ଉତ୍ତମରୂପେ ଅଧ୍ୟୟନ କରିଥିଲେ । ପରଂବ୍ରହ୍ମ ଶ୍ରୀକୃଷ୍ଣ ଓ ମହାଭାବରୂପିଣୀ ରାଧାଙ୍କର ରସମୟ ଲୀଳାକୁ ରୂପାୟିତ କରି ଅତି ଉଚ୍ଚକୋଟୀର ବୈଷ୍ଣବରୂପେ ନିଜକୁ ପ୍ରତିପନ୍ନ କରିଅଛନ୍ତି । ରାଗାନୁଗା ଓ ପ୍ରେମଭକ୍ତିର ସାଧକ କବି ଗୋପାଳକୃଷ୍ଣ ନିତ୍ୟ ରାଧାକୃଷ୍ଣ ଲୀଳା ତାଙ୍କର

ମାନସଚକ୍ଷୁରେ ଦର୍ଶନ କରୁଥିଲେ । ତେଣୁ ସେ ଲୀଳାର ପ୍ରକାଶ ଓ ବିକାଶ ତାଙ୍କର ରଚନାରେ ଜୀବନ୍ୟାସ ପାଇଛୁ ।

ତାଙ୍କର କବିତାଗୁଡ଼ିକ ସଙ୍ଗୀତମୟୀ । ସଙ୍ଗୀତର ରାଗ, ତାଳ, ଲୟର ବିଚିତ୍ର ବିକାଶ ତାଙ୍କର କବିତାବଳୀକୁ ସମ୍ପୂର୍ଣ୍ଣରୂପେ ଉପଭୋଗ୍ୟ କରିଅଛୁ । ରସିକ ଓ ଭାବୁକ କବି ତାଙ୍କର ସଙ୍ଗୀତାତ୍ମକ କବିତା ମଧ୍ୟ ଦେଇ ଚତୁର୍ବିଧ ନାୟକ ଓ ଅଷ୍ଟନାୟିକାର ଭାବ, ଦୂତଦୂତୀର କର୍ତ୍ତବ୍ୟ, ହାବ, ଭାବ, ଲକ୍ଷଣ, ରସ, କାମର ଦଶଦଶା, ଅଷ୍ଟ ସାତ୍ତ୍ୱିକ ବିକାର, କିଲକିଞ୍ଚିତ ଓ ମୋଟ୍ଟାୟିତ ଭାବର ବିକାଶ ଓ କୌଶଳପୂର୍ଣ୍ଣ ପ୍ରକାଶ, ନୀଳୀ, କୁସୁମ୍ଭ ଓ ମଞ୍ଜିଷ୍ଠା ରାଗର ପରିଚୟ ଦେବାକୁ ଚେଷ୍ଟା କରିଅଛନ୍ତି । ଚତୁର, ରସିକ ଓ ଗୁଣୀ ପାଠକମାନେ ହିଁ ଏ ସବୁର ନିବିଡ଼ତମ ପରିଚୟ ଲାଭ କରିବେ । କୃଷ୍ଣ ଓ ରାଧାଙ୍କୁ ସେ ନାନାପ୍ରକାର ନାୟକ ନାୟିକା ଲକ୍ଷଣରେ ଭୂଷିତ କରି ସେମାନଙ୍କର ମିଳନ ହାବ ଭାବ, ହୃଦୟର ଆବେଗ, ଉତ୍କଣ୍ଠା, ଅଭିମାନାଦି ଲଳିତ ଓ ଚିତ୍ତଦ୍ରବକାରିଣୀ ଭାଷାରେ ପ୍ରକାଶ କରି ନିଜର ଅଲଙ୍କାର ଓ ରସଶାସ୍ତ୍ରଜ୍ଞାନର ପରିଚୟ ଦେଇଅଛନ୍ତି । ଅନ୍ୟାନ୍ୟ ଶ୍ରେଷ୍ଠ କବିମାନଙ୍କ ସଦୃଶ ସେ ନାରୀମୁଖୀ ପ୍ରତିଭା ନେଇ ଜନ୍ମଗ୍ରହଣ କରି-ଥିବାରୁ ନାରୀର ମନସ୍ତତ୍ତ୍ୱ ଆଦି ଉତ୍ତମରୂପେ ଉପଲବ୍ଧି କରିପାରିଥିଲେ । ବିଶେଷତଃ ନାରୀ ହୃଦୟର ଗୋପନବ୍ୟଥା ଓ ଭାବ କେଉଁ ପରିବେଶରେ କପରି ଭାବରେ ଅଭିବ୍ୟକ୍ତ କରେ ତାହା ସେ ଅନୁଭବ କରିଥିଲେ ।

ବ୍ରଜରସ ଆସ୍ୱାଦନ କରିବାକୁ ଗଲେ ଗୋପୀଭାବାପନ୍ନ ହେବାକୁ ପଡ଼ିବ । ଏହା ଗୌଡ଼ୀୟ ବୈଷ୍ଣବ ଧର୍ମଶାସ୍ତ୍ରରେ ଅଭିଧେୟ, ତେଣୁ ଅଧିକାଂଶ କବି ରାଧାଙ୍କର ସେବିକା-ରୂପରେ ନିଜକୁ ପ୍ରତିପନ୍ନ କରି ରାଧା ଓ କୃଷ୍ଣଙ୍କର ମିଳନଚିତ୍ର ଦର୍ଶାଇଅଛନ୍ତି । ଦେବ ଦେବୀଙ୍କର ମିଳନ ଘଟାଇବାକୁ ଇଚ୍ଛା କଲେ ସେବିକାର ରୂପ ଧାରଣ କରିବାକୁ ପଡ଼ିବ । ବିଶେଷତଃ ନାୟିକାର ମନୋଭାବ ଓ ଅନ୍ତର୍ବେଦନା ଜାଣିବାକୁ ହେଲେ ନାୟିକାର ଦାସୀ ବା ସେବିକା ହେବା ବାଞ୍ଛନୀୟ । ତେଣୁ ବିଦଗ୍ଧ କବି ଅଭିମନ୍ୟୁ ତାଙ୍କ "ବିଦଗ୍ଧ-ଚିନ୍ତାମଣି"ରେ କହିଲେ "ଓ କରିବି ଆଳେ ଦାସି ଡାକିବେ କିଶୋରୀ" । ସ୍ୱାମୀ ବା ସ୍ୱାମିନୀ ଏକମାତ୍ର ସେବିକା ନିକଟରେ ହୃଦୟ ଉନ୍ମୁକ୍ତ କରେ । ସେବିକା ନିଃସଙ୍କୋଚରେ ସେମାନଙ୍କର ଭାବ ପ୍ରକାଶ କରିପାରେ । ତେଣୁ ଗୋପାଳକୃଷ୍ଣ ତାଙ୍କ ଶ୍ରୀଗୁରୁଦେବଙ୍କଠାରୁ ସିଦ୍ଧିମନ୍ତ୍ର ଗ୍ରହଣ କରି ଗୋପୀଭାବାପନ୍ନ ହୋଇ ରାଧାଙ୍କର ସେବିକାରୂପରେ ନିଜକୁ ପରିଗଣିତ କରିଥିଲେ ଓ ସର୍ବପ୍ରଥମ ରାଧାନକ୍ଷତ୍ରମାଳା ରଚନା କରି ଗୁରୁଙ୍କୁ ଉପହାର ଦେଇଥିଲେ । କବି ଗାଇଲେ—

ଜୟତି ଜୟତି ରାଧା ଶ୍ରୀ ବ୍ରଜାରଣ୍ୟ ରାଜ୍ଞୀ
ଜୟତି ଜୟତି ରାଧା କୃଷ୍ଣ ବକ୍ଷୋଜ ଭୃଙ୍ଗୀ

ଜୟତୁ ଜୟତୁ ରାଧା ଗୋପିକାମୌଳିମାଳା
ଜୟତୁ ଜୟତୁ ରାଧା ସ୍ୱାମିନୀ ଯା ମଦୀୟା

× × ×

ରାଧାକୃଷ୍ଣ ମିଳନ ପୂର୍ବରୁ ସେ ପୂର୍ବରାଗର ସଙ୍କେତ ଦେଇଯାଇଅଛନ୍ତି । ତାଙ୍କର ପଦ୍ୟାବଳୀରେ କ୍ରମାନ୍ୱୟେ ରାଧା କୃଷ୍ଣଙ୍କ ନବାନୁରାଗ, ରାଧାଙ୍କ କଳକଣ୍ଠିତ ଭାବ, କବିଙ୍କର ବିଳାପ, ସ୍ୱାନୁଭୂତ, ରାଧାଗୋବିନ୍ଦ କୀର୍ତ୍ତନ, କବିଙ୍କ ପ୍ରାର୍ଥନା, ସ୍ୱାଭୀଷ୍ଟ ଲାଳସା, ଦୈନ୍ୟ ବୋଧିକା, ବିଜ୍ଞପ୍ତି, ମନଃଶିକ୍ଷା, ବାତ୍ସଲ୍ୟ ଭାବର ପ୍ରକାଶ, ରାଧା ଉକ୍ତି ଓ ସଖୀ ଉକ୍ତ୍ୟାଦିରେ ସ୍ୱୀୟ ଭକ୍ତ ଭାବ ଓ ନାୟକ ନାୟିକାର ପ୍ରେମଭାବ ଦର୍ଶାଇ ଅଛନ୍ତି । ବୃନ୍ଦାବନେଶ୍ୱରୀଙ୍କର ସେବିକା ହେବାପାଇଁ କବି କିପରି କାତରୋକ୍ତି କରିଅଛନ୍ତି, ତାହା ଉଦ୍ଧୃତ ପଦ୍ୟାଂଶରୁ ପ୍ରତୀୟମାନ ହେବ ।

"ଏଡ଼େ ଭାଗ୍ୟ ମୋର ହେବ କି ?
ହେବି ବୃନ୍ଦାବନେଶ୍ୱରୀ ସେବିକା
ଶ୍ରୀଗୁରୁଙ୍କର ବୀଜମନ୍ତ୍ର କଳପବଲ୍ଲୀରେ
ପ୍ରେମଫଳ ଫଳିବ କି ରେ ।"

ରାଧାଙ୍କୁ ମହାଭାବରୂପରେ ବର୍ଣ୍ଣନା କରିବା ସମସ୍ତ ଗୌଡ଼ୀୟ ବୈଷ୍ଣବ କବିଙ୍କର ଲକ୍ଷ୍ୟ । ଆଲୋଚ୍ୟ କବି ଗୋପାଳକୃଷ୍ଣ ମଧ୍ୟ ରାଧାଙ୍କୁ ମହାଭାବରୂପେ କଳ୍ପନା କରିଅଛନ୍ତି ।

କବି ରଚନ୍ତି—

"ମହାଭାବ ରୂପ ଭାବରେ ମାନସ ।
ଯାହା ସଙ୍ଗେ ଶୃଙ୍ଗାରସ ରହିଅଛି ସଦା ବହି ଅବୟବ ରେ ।
ସନକ ସନନ୍ଦନ ସନାତନ ସନତ୍କୁମାରମାନେ ବସି ରହସ୍ୟରେ
ବ୍ରହ୍ମାନନ୍ଦ ସୁଖ ବିରକ୍ତ ମଜ୍ଜିଲେ ଯା ଲୀଳାରସ କଥାରେ"
ଇତ୍ୟାଦି—

କୃଷ୍ଣଙ୍କ ହ୍ଲାଦିନୀ ଶକ୍ତିରୁ ଉତ୍ପନ୍ନ ଆନନ୍ଦ, ଆନନ୍ଦରୁ ଭାବ, ଭାବରୁ ମହାଭାବ—ରାଧା, ଏହି ରାଧା ହିଁ ମହାଭାବମୟୀ । ରୂପ ଗୋସ୍ୱାମୀ ସ୍ୱୀୟ ପ୍ରସିଦ୍ଧ ଗ୍ରନ୍ଥ "ଉଜ୍ଜ୍ୱଳ ନୀଳମଣି" ରେ ଭାବ ଓ ମହାଭାବର ନିମ୍ନୋକ୍ତ ଲକ୍ଷଣ ଦର୍ଶାଇ ଅଛନ୍ତି ।
ତାଙ୍କ ମତରେ ଭାବ ହେଉଛି—

"ଅନୁରାଗଃ ସ୍ୱ ସମ୍ବେଦ୍ୟଦଶାଂ ପ୍ରାପ୍ୟ ପ୍ରକାଶିତ ।"

ଯେକୌଣସି ପଦାର୍ଥକୁ ଅବଲମ୍ବନ କରି ଅନୁରାଗ ଯଦି ଜ୍ଞାତବ୍ୟ ସ୍ତରକୁ ପ୍ରାପ୍ତ ହୁଏ, ତାକୁ ଭାବ କହନ୍ତି ।

ମହାଭାବ ମୁକୁନ୍ଦ ମହିଷୀବୃନ୍ଦୈରପ୍ୟସାବତିଦୁର୍ଲଭଃ
ବ୍ରଜଦେବ୍ୟେକସଂବେଦ୍ୟୋ ମହାଭାବାଖ୍ୟୟୋଚ୍ୟତେ”

ବ୍ରଜ ଦେବୀ ଅର୍ଥାତ୍ ରାଧାଙ୍କଦ୍ୱାରା ଏକମାତ୍ର ଜ୍ଞାତବ୍ୟ ଅଟେ ଯେଉଁ ମହାଭାବ, ତାହା ମୁକୁନ୍ଦଙ୍କର ଅନ୍ୟାନ୍ୟ ମହିଷୀମାନଙ୍କର ଦୁର୍ଲଭ, ଯେହେତୁ ମୁକୁନ୍ଦମହିଷୀ ରୁକ୍ମିଣୀ, ସତ୍ୟଭାମା ପ୍ରଭୃତି ନାରୀମାନଙ୍କର କୃଷ୍ଣଙ୍କ ପ୍ରତି ପ୍ରେମ ଥିଲେ ମଧ୍ୟ ସେ ପ୍ରେମ ସମ୍ଭୋଗ ଆଶାରେ ପର୍ଯ୍ୟବସିତ ହୋଇଥିଲା । ମାତ୍ର ମହାଭାବମୟୀ ରାଧାଙ୍କର ପ୍ରେମ କେବଳ କୃଷ୍ଣଙ୍କ ଉଦ୍ଦେଶ୍ୟରେ ପର୍ଯ୍ୟବସିତ ହୋଇଥିଲା । ମହିଷୀମାନେ ସମ୍ଭୋଗଦ୍ୱାରା ଆନନ୍ଦ ପାଇବାକୁ ମନ ବଳାଇଥିଲେ । ମାତ୍ର ରାଧା ଏକମାତ୍ର କୃଷ୍ଣଙ୍କର ଆନନ୍ଦ ବର୍ଦ୍ଧନର ମୂଳକାରଣ । ମହିଷୀମାନଙ୍କର ପ୍ରେମରେ ପ୍ରୟୋଜନମୂଳକ ସଙ୍କେତ ମିଳେ । ମାତ୍ର ରାଧାଙ୍କ ପ୍ରେମ ପ୍ରୟୋଜନମୂଳକ ନୁହେଁ । କେବଳ କୃଷ୍ଣଙ୍କର ଆନନ୍ଦ ଓ ପ୍ରେମର ବିକାଶ କଲେହେଁ ତାହାର ଜନ୍ମ । ବାସ୍ତବିକ ଶ୍ରୀକୃଷ୍ଣ ସ୍ୱୀୟ ହ୍ଲାଦିନୀ ଶକ୍ତିଦ୍ୱାରା ହିଁ ସୁଖ ଆସ୍ୱାଦନ କରନ୍ତି । ସେ ସ୍ୱୟଂ ଆନନ୍ଦସ୍ୱରୂପ ହୋଇ ମଧ୍ୟ ନିଜାନନ୍ଦାଧିଷ୍ଠାତ୍ରୀହ୍ଲାଦିନୀ ଶକ୍ତିର ଦ୍ୱାରା ନିଜାନନ୍ଦ ଅନୁଭବ କରନ୍ତି । ଏହି ହ୍ଲାଦିନୀ ଶ୍ରୀକୃଷ୍ଣ ଭକ୍ତଗଣଙ୍କୁ ମଧ୍ୟ ଆନନ୍ଦ ପ୍ରଦାନ କରେ । ହ୍ଲାଦିନୀର ସାରାଂଶ ହିଁ ପ୍ରେମ । ସାରାଂଶ ଶବ୍ଦର ଅର୍ଥ ଆନୁକୂଲ୍ୟାଭିଳାଷ । ଏହି ଆନୁକୂଲ୍ୟାଭିଳାଷାତ୍ମକ ପ୍ରେମକୁ ଆନନ୍ଦ ଚିନ୍ମୟରସ ମଧ୍ୟ କୁହାଯାଏ । ଏହି ରସାତ୍ମକ ପ୍ରେମ ପରମସାର ମହାଭାବ । ଶ୍ରୀରାଧା ହିଁ ମହାଭାବସ୍ୱରୂପିଣୀ । ସେ କାନ୍ତାବର୍ଗଙ୍କ ଅଂଶିନୀ । ଅତଏବ ଶ୍ରେଷ୍ଠା ବୋଲି ବିଦିତା । ସେ ଚିନ୍ତାମଣିସାରସଦୃଶୀ । ଶ୍ରୀକୃଷ୍ଣଙ୍କ ବାଞ୍ଛା ପୂରଣ ହିଁ ତାଙ୍କର କାମ୍ୟ । ଲକ୍ଷ୍ମୀଗଣ ତାଙ୍କର ବିଳାସମୂର୍ତ୍ତି, ମହିଷୀଗଣ ତାଙ୍କର ପ୍ରତିବିମ୍ବ । ଲଳିତାଦି ଗୋପୀଗଣ ତାଙ୍କର କାୟବ୍ୟୂହ । ବହୁ କାନ୍ତା ବିନା ରସର ଉଲ୍ଲାସ ହୁଏ ନାହିଁ ବୋଲି ସେ ସ୍ୱୟଂ ସକଳ କାନ୍ତାଙ୍କ ଆକାରରେ ବିରାଜମାନ କରନ୍ତି । ତନ୍ମଧ୍ୟରେ ବ୍ରଜରେ ସ୍ୱପକ୍ଷ ବିପକ୍ଷାଦି ନାନା ଭାବ ଭେଦରେ ଓ ରସ ଭେଦରେ ନାନା ମୂର୍ତ୍ତି ଧାରଣ ପୂର୍ବକ ଶ୍ରୀକୃଷ୍ଣଙ୍କୁ ଲୀଳା ରସର ଆସ୍ୱାଦନ କରାଇଥାନ୍ତି । ସେ ଗୋବିନ୍ଦାନନ୍ଦିନୀ—ଗୋବିନ୍ଦ ମୋହିନୀ-ଗୋବିନ୍ଦ-ସର୍ବସ୍ୱ ଓ ସର୍ବକାନ୍ତାଙ୍କ ଶିରୋମଣି—ସେ ଦେବୀ, ଅର୍ଥାତ୍ ଦୀପ୍ତିମତୀ—ଅତଏବ ପରମା ସୁନ୍ଦରୀ । ସେ କୃଷ୍ଣମୟୀ । କୃଷ୍ଣଙ୍କର ଅନ୍ତର ଓ ବାହାରେ ସେ ବିରାଜମାନା । ଯେଉଁଠାରେ ତାହାଙ୍କ ନେତ୍ର ପଡ଼େ, ସେଠାରେ କୃଷ୍ଣମୂର୍ତ୍ତି ସ୍ଫୁରିତ ହୁଏ । ଅଥବା କୃଷ୍ଣ ପ୍ରେମରସମୟ—ରାଧା ପ୍ରେମରସମୟୀ କୃଷ୍ଣଶକ୍ତି । ଅତଏବ ସେ କୃଷ୍ଣାଭିନ୍ନା । ଏହି ସକାଶେ ତାଙ୍କୁ କୃଷ୍ଣମୟୀ ବୋଲାଯାଏ । ଶ୍ରୀକୃଷ୍ଣଙ୍କର ବାଞ୍ଛା ପୂରଣ ହିଁ ତାଙ୍କର ଆରାଧନା ବୋଲି ତାଙ୍କର ନାମ ରାଧିକା —ସେ ପରମଦେବୀ— ସେ ଲକ୍ଷ୍ମୀବର୍ଗଙ୍କର ଅଧିଷ୍ଠାନ--ସର୍ବୈଶ୍ୱର୍ଯ୍ୟର ଅଧିଷ୍ଠାତ୍ରୀ, ସର୍ବସୌନ୍ଦର୍ଯ୍ୟର ମୂଳାଶ୍ରୟ କୃଷ୍ଣଙ୍କ ସର୍ବବାଞ୍ଛାର

ଅଶ୍ରୟ ଅତଏବ ସର୍ବବାଞ୍ଛାପୂରଣସମର୍ଥା – ଜଗନ୍ମୋହନ ଶ୍ରୀକୃଷ୍ଣଙ୍କର ମୋହନୀ । ଅତଏବ ରାଧିକା ହିଁ ପରା ଠାକୁରାଣୀ । ରାଧା ପୂର୍ଣ୍ଣ ଶକ୍ତିମାନ । ଅଗ୍ନି ଓ ଅଗ୍ନିଶିଖାର ଯେପରି ଭେଦ ନାହିଁ, ସେହିପରି ରାଧାକୃଷ୍ଣଙ୍କର ଭେଦ ନାହିଁ । ରାଧା ଶ୍ରୀକୃଷ୍ଣ ଏକାତ୍ମା । ଲୀଳାରସ ଆସ୍ୱାଦନ ସକାଶେ ରୂପଭେଦ ମାତ୍ର । ଶ୍ରୀକୃଷ୍ଣ ଶ୍ରୀବିଗ୍ରହ ସଚ୍ଚିଦାନନ୍ଦଘନ, ଆନନ୍ଦାଧିଷ୍ଠାତ୍ରୀ ମହାଭାବସ୍ୱରୂପିଣୀ ଶ୍ରୀରାଧାଙ୍କ ଦେହ । ଶ୍ରୀକୃଷ୍ଣ ପ୍ରେମମୟ ଓ ତାଦୃଶ ପ୍ରେମଦ୍ୱାରା ବିଭାବିତ ଶ୍ରୀକୃଷ୍ଣଙ୍କ ସ୍ନେହ ହିଁ ରାଧାଙ୍କର ସୁଗନ୍ଧି ଉଦ୍‌ବର୍ତ୍ତନ । ଉକ୍ତ ଉଦ୍‌ବର୍ତ୍ତନଦ୍ୱାରା ତାହାଙ୍କର ଦେହ ସୁଗନ୍ଧ ଓ ଉଜ୍ଜ୍ୱଳ ହୁଏ । ତାହାଙ୍କର କାରୁଣ୍ୟାମୃତଦ୍ୱାରା ମଧ୍ୟାହ୍ନ ସ୍ନାନ ଏବଂ ଲାବଣ୍ୟାମୃତଦ୍ୱାରା ସାୟାହ୍ନ ସ୍ନାନ ବିହିତ ହୁଏ; ଅର୍ଥାତ୍ ତାହାଙ୍କର ଦେହ କରୁଣ, ଯୌବନ ଓ ସୌନ୍ଦର୍ଯ୍ୟର ମୂଳାଶ୍ରୟ । ଲଜ୍ଜା ତାଙ୍କର ଶ୍ୟାମ ବସନ । କୃଷ୍ଣାନୁରାଗ ତାଙ୍କର ରକ୍ତବର୍ଣ୍ଣ ଉତ୍ତରୀୟ । ପ୍ରଣୟମାନ ତାଙ୍କର କଞ୍ଚୁଳିକା । ସୌନ୍ଦର୍ଯ୍ୟ ରୂପ କୁଙ୍କୁମ ସଖୀ ପ୍ରଣୟ ରୂପ ଚନ୍ଦନ ଓ ସ୍ମିତକାନ୍ତିରୂପ କର୍ପୂର ତାଙ୍କ ଅଙ୍ଗର ବିଲେପନ । ଶ୍ରୀକୃଷ୍ଣଙ୍କ ଉଜ୍ଜ୍ୱଳରସ ମୃଗମଦ ପ୍ରଚ୍ଛନ୍ନ ମାନରୂପ । ବାମ୍ୟ କେଶବିନ୍ୟାସ । ଧୀରାଧୀରାତ୍ୱରୂପ ଗୁଣ ଅଙ୍ଗର ପଟ୍ଟବାସ—ଅର୍ଥାତ୍ ସୁଗନ୍ଧପୂର୍ଣ୍ଣ । ରାଗ ତାମ୍ବୁଳ—ରାଗ, ପ୍ରେମ କୌଟିଲ୍ୟ ନୟନ ଯୁଗଳର କଜ୍ଜ୍ୱଳ । ସୁଦୀପ୍ତ ଅଷ୍ଟସାତ୍ତ୍ୱିକଭାବ, ହର୍ଷାଦିତ୍ରୟସ୍ତ୍ରିଂଶତ୍ ସଂଚାରୀ ବା ବ୍ୟଭିଚାରୀ-ଭାବ ଓ କିଲକିଞ୍ଚିତାଦି ବିଂଶତି ଅଳଙ୍କାର—ତାଙ୍କ ଅଙ୍ଗର ଅଳଙ୍କାର । ସେ ସର୍ବଦା ମଧୁରରସ ରୂପ ମଧୁପାନ କରାଇ କୃଷ୍ଣଙ୍କୁ ଆପ୍ୟାୟିତ କରନ୍ତି । ଶ୍ରୀକୃଷ୍ଣଙ୍କ ନାମଗୁଣଯଶ ତାଙ୍କର କର୍ଣ୍ଣଭୂଷଣ । ସେ ମୁଗ୍ଧା, ସେ ବିଦଗ୍ଧା ନାୟିକା – ଶାସ୍ତ୍ରୋକ୍ତ ଏବଂବିଧ ମହାଭାବ ରୂପିଣୀ ରାଧାଙ୍କର ଚିତ୍ର ଗୋପାଳକୃଷ୍ଣ ତାଙ୍କ କବିତାରେ ଦେବାକୁ ପ୍ରୟାସୀ ହୋଇଅଛନ୍ତି । ରାଧାକୃଷ୍ଣଙ୍କ ଆଧ୍ୟାତ୍ମିକ ପ୍ରେମ ପରିସ୍ଫୁଟ କରାଇ ସେ ପ୍ରାଚୀ ଆଧ୍ୟାତ୍ମିକ ପରମ୍ପରାର ଜଣେ ଶ୍ରେଷ୍ଠ ପ୍ରତୀକ ବୋଲି ବିବେଚିତ । ନାୟକ ନାୟିକାର ମିଳନ ଚିତ୍ର ଦେବାକୁ ଯାଇ କବି କେଉଁଠାରେ ବି ଅଶ୍ଳୀଳତାର ଆଶ୍ରୟ ନେଇ ନାହାନ୍ତି । ଉଦାହରଣ ସ୍ୱରୂପ ତାଙ୍କ ରଚିତ "ମୁହିଁମୁହିଁ କିଶୋର" ଶୀର୍ଷକ କବିତାଟି ବିଚାର କରାଯାଉ । ରାଧା କହୁଛନ୍ତି—

ମୁହିଁମୁହିଁ କିଶୋର ଚନ୍ଦ୍ରମାଙ୍କର ମୋର
ଆଜ ଯମୁନା ତୀରେ ହୋଇଗଲା ମା—
ବେଳା ଶିଳାରେ ବସି ହେଲାରେ ତନୁ ଘସି
ହେଉଥିଲି ବୟସୀ ଠାରିଦେଲେ ମା—
ଉଠି ମୁଁ ଝଟ କରି ଅଳୀ ଆକଟ କରି
ପ୍ରତି ପ୍ରତୀକ ଯାକ ଥରିଗଲା ମା—
ଫିଟି ଚରମେ କେଶ ଲୋଟୁଥିଲା ଗୋ ବାସ
ଥିବାଠାରେ ଯତନରେ ନଥିଲା ମା—

ବାସ ଏଣ୍ଡକ—ପାଠକେ—ଅନୁମାନ କରନ୍ତୁ । କେତେ ସାବଧାନରେ କବି ରଚନା କରିଛନ୍ତି –"ଥିବାଠାରେ ଯତନରେ ନ ଥିଲି ମା" ଇଚ୍ଛା କରିଥିଲେ କବି ନଗ୍ନ ଯୌବନ ବର୍ଣ୍ଣନା କରିପାରିଥାନ୍ତେ—ମାତ୍ର ତାଙ୍କର ଉଦ୍ଦେଶ୍ୟ ସେପରି ନୁହେଁ—ସାମାନ୍ୟ ଇଙ୍ଗିତ ଦେଇ କବି ପାଠକ ଗୋଷ୍ଠୀକୁ ରସ ଆହରଣ କରିବାକୁ ଛାଡ଼ିଦେଲେ । କବିତା ସୂଚେଇ ଦିଏ, ଇଙ୍ଗିତ ଦିଏ—ସେଇଥିରୁ ହିଁ ବୁଦ୍ଧିମାନ ପାଠକ ତାର ମର୍ମାନୁଭବ ପଥରେ ଅଗ୍ରସର ହେବ । ଏହା ହିଁ ଶ୍ରେଷ୍ଠ କବିତାର ଉତ୍କୃଷ୍ଟ ଲକ୍ଷଣ । ଗୋପାଳକୃଷ୍ଣ ଏହିପରି କବିତା ଲେଖିଯାଇଅଛନ୍ତି । ତାଙ୍କର ନାୟକ ମଧ୍ୟ ଶ୍ଳୀଳତାକୁ ପରିହାର କରି ନାହାନ୍ତି । ସେ ନାୟକ ଉପେନ୍ଦ୍ରଭଞ୍ଜଙ୍କ ନାୟକ ଭଳି ବିପରୀତ ରତି ଶେଷରେ ଚୁମ୍ବନ ମାଗି ନାହିଁ । ଅଭିମନ୍ୟୁଙ୍କ ନାୟକ ଭଳି ନାୟିକାଙ୍କୁ ରତିଦାନ ଦେବାକୁ ପ୍ରାର୍ଥନା କରିନାହିଁ । ବନମାଳିଦାସଙ୍କ ନାୟକଭଳି ଅବିରତ ରତିକ୍ରୀଡ଼ାରେ ବିଭୋର ହୋଇ ନାହିଁ । ଦୁର୍ବାର ସମ୍ଭୋଗ ବାସନାରେ ସେ ଉଦ୍ଭ୍ରାନ୍ତ ହୋଇ ନାହିଁ । ସେ କେବଳ ଅଙ୍ଗଭଙ୍ଗୀରେ ତାର ବାସନା ଜଣାଉଛି ମାତ୍ର । ସରଳ, ସାବଲୀଳ, ସର୍ବଜନବୋଧ୍ୟ ଓ ଶ୍ରୁତିସିଦ୍ଧ ଭାଷାରେ ସେ ପ୍ରେମଭକ୍ତିର ପ୍ରଚାର କରିଥିଲେ । ସେ ଜଣେ ଶ୍ରେଷ୍ଠ ପ୍ରଚାରକ, ବିଚାରକ, କବି, ରସିକ, ଭକ୍ତ, ଧାର୍ମିକ ଓ ରାଧାଗତପ୍ରାଣ ବୈଷ୍ଣବ ଥିଲେ । ତାଙ୍କ ନାୟିକା ଲଜ୍ଜାଶୀଳା- ରସିକା, କୃଷ୍ଣଙ୍କର ସଦା ଆନନ୍ଦକାରିଣୀ— । ଗୋପାଳକୃଷ୍ଣ "ତୋତେ ରୂପ ପ୍ରାଣେଶ୍ୱର ସାକ୍ଷୀ ମୁଁ କି କରାଇବି ।" ଶୀର୍ଷକ କବିତାରେ ଏକାଧାରରେ ରାଧାଙ୍କର ଓ ମନସ୍ତତ୍ତ୍ୱ ବର୍ଣ୍ଣନା କରିଅଛନ୍ତି—

"ତୋତେ ରୂପ ପ୍ରାଣେଶ୍ୱର ସାକ୍ଷୀ ମୁଁ କି କରାଇବି ରେ  
ଚନ୍ଦନ ବୋଲି ଦେଇ ଯା ଅଙ୍ଗେ  
ଉକୁଟାଇ ଦେଉ ସେହି ଲଗେ  
ଆଜି ହିନ ଯାକ ଦେଖି ନାହୁଁ ମାନସେ କି ଭାବି ରେ ।

ପୁନଶ୍ଚ—

"ପଶା ଖେଳରେ ମୋହନ ହାର  
ହରିଲେ ମିଶାଇ ଦେଇ ସାର  
ହସି ବୋଲୁଥାଉ ସଖୀ ଅସ୍ତ ହୋଇଯିବେ ରବି ରେ ।"

କୃଷ୍ଣଙ୍କ ରୂପ ମାଧୁର୍ଯ୍ୟ ଦର୍ଶନରେ ସେ ଏପରି ମୁଗ୍ଧ ଥିଲେ ଯେ, ଥରେ କୃଷ୍ଣଙ୍କ ଦେହରେ ଚନ୍ଦନ ଲଗାଇ ତାକୁ ପୋଛି କୃଷ୍ଣଙ୍କର ନୈସର୍ଗିକ ଶୋଭା ସନ୍ଦର୍ଶନ କରିବା— ପୁଣି ପଶାଖେଳରେ ମୋହନ ହାରିଗଲେ କାଳେ ତାଙ୍କ ମନରେ କଷ୍ଟ ଆସିବ, ଏହି ଆଶଙ୍କାରେ ଚତୁରୀ ରସିକା ରାଧା ସାର ମିଶାଇ ଦେଇ ସମସ୍ତ ହୋଇଗଲଣି ବୋଲି

ଉଠିପଡ଼ିବା—ଏ ଚିତ୍ର ସମଗ୍ର ଓଡ଼ିଆ ସାହିତ୍ୟରେ ଦୁର୍ଲ୍ଲଭ । କି ଚମତ୍କାର ଆତ୍ମ-ନିବେଦନ ଓ ଅନୁରାଗ—ଅନବଦ୍ୟ ଅପରୂପ ଭାଷାରେ କି ମନୋହର ପ୍ରକାଶ । କବିଙ୍କର ରସିକତା ଓ ଚତୁରତା ଏଠାରେ ପ୍ରତିଫଳିତ ।

ପାରସ୍ପରିକ ପ୍ରୀତି ବର୍ଣ୍ଣନାରେ କବି ଗୋପାଳକୃଷ୍ଣ ଧୁରନ୍ଧର ଥିଲେ । ସର୍ବୋପରି ରାଧାଙ୍କ ଆତ୍ମନିବେଦନ, ଆତ୍ମୋତ୍ସର୍ଗ ଏବଂ ଐକାନ୍ତିକ ପ୍ରେମ କବିଙ୍କ ଆଲୋଚନାରେ ରୂପ ଲାଭ କରି ପାଠକଗୋଷ୍ଠୀଙ୍କୁ ଆନନ୍ଦସାଗରରେ ଭସାଇ ଦେଉଅଛି । ରାଧା ପ୍ରେମରେ ତନ୍ମୟ ହୋଇଥିଲେ ବୋଲି କବି ଏପରି ରସଭଣ୍ଡାର ସୃଷ୍ଟି କରି-ପାରିଅଛନ୍ତି, କବି ନିଜର ଭାବକୁ ନାଟକୀୟ ତଥା ବିଶ୍ୱଜନୀନ କରିଦେଇଅଛନ୍ତି । ଏକାଧାରରେ କବିଙ୍କର ଭାବାବେଗ, ଉତ୍କଣ୍ଠା ଓ ବଳିଷ୍ଠ ବ୍ୟକ୍ତିତ୍ୱ ତାଙ୍କର ଯାଦୁକରୀ ଭାଷାରେ ଆତ୍ମଲାଭ କରିଛି । ଭାବର ଗାମ୍ଭୀର୍ଯ୍ୟ ଭାଷାର ସୁମୋହନ ପରିପାଟୀ ତାଙ୍କ କବିତାକୁ ହୃଦ୍ୟ, ଉପଭୋଗ୍ୟ କରାଇ ତାଙ୍କ ପ୍ରକାଶଭଙ୍ଗୀକୁ ପ୍ରାଣସ୍ପର୍ଶୀ କରିଅଛି । ରାଧା-କୃଷ୍ଣଲୀଳା କୀର୍ତ୍ତନ କରି କବି ଆତ୍ମହରା ହୋଇଯାଇଥିଲେ । ଏହି ରାଧାକୃଷ୍ଣ ଲୀଳାର ଦୁଇଟି ଜିନିଷ ଅତୁଳନୀୟ । ଶ୍ରୀକୃଷ୍ଣଙ୍କ ରୂପର ତୁଳନା ନାହିଁ । ଆଉ ରାଧିକାଙ୍କର ପ୍ରେମର ତୁଳନା ନାହିଁ । ବୈଷ୍ଣବ ପଦାବଳୀରେ ଏହି ରୂପ ଓ ପ୍ରେମର ଉତ୍କର୍ଷ ଅନ୍ୟ ସମସ୍ତ ବିଷୟକୁ ଅତିକ୍ରମ କରିଅଛି । ରୂପ ନ ହେଲେ ପ୍ରେମ ସ୍ଫୂର୍ତ୍ତିଲାଭ କରେ ନାହିଁ । ଏଠାରେ ଯେତେ ରୂପ ତେତେ ପ୍ରେମ । ରୂପ ଓ ପ୍ରେମ ପରସ୍ପର ସାହାଯ୍ୟକାରୀ । ରୂପ ହୃଦୟରେ ଜାଗରିତ କରେ ପ୍ରେମ, ଆଉ ପ୍ରେମରୂପକୁ ଆସ୍ୱାଦନ କରି ସାର୍ଥକ କରେ, ଧନ୍ୟ କରେ, ସମ୍ପୂର୍ଣ୍ଣ କରେ । ପ୍ରେମ ଆଧାର, ରୂପ ଆଧେୟ । ସେହି ରୂପବର୍ଣ୍ଣନାରେ କବି କହୁଅଛନ୍ତି—

ବିରଞ୍ଚି, ଭଲି ପାଟିଲି ରେ—
ଶ୍ୟାମ ଅନୁରୂପ ରାଧା ରଚିଲିରେ
କୋଟି ରତି ମାର ନିଉଛାଣିକୁ
ତୁଲି ହେବ ନାହିଁ ପଦତଳକୁ—
ସୁନ୍ଦର ପଣରେ ପ୍ରଥମ ଟିୱ
ଜଗଜ୍ଜନମନ ମୃଗ ବାଗୁରା—
ବାଦେ ବଢ଼ୁଛନ୍ତି ଯା ଛବି ପ୍ରେମ
ଆଜ ଯରକ ନାହିଁ ଯେ ବିଶ୍ରାମ—
ସାମାନ୍ୟ ସ୍ୱକୀୟାକୁ ବରଜିଲି
ପରକୀୟାରେ ଚିତ୍ତ ମଜ୍ଜାଇଲି—

ଉଜ୍ଜ୍ୱଳ ନିର୍ଯ୍ୟାସ କୃଷ୍ଣ ଶ୍ରୀମୂର୍ତ୍ତି
ପରାନନ୍ଦ ସ୍ୱରୂପିଣୀ ଶ୍ରୀମତୀ —
ଗୋପାଳକୃଷ୍ଣ ସେ ପଦନଳିନ-
ଯୁଗେ ସମର୍ପିଲ ମନ ଜୀବନ —

ଯୁଗଳ ରୂପ ଦର୍ଶନ ଓ ବର୍ଣ୍ଣନର ସାରଲ୍ୟ ହିଁ ଲାଳିତ୍ୟପୂର୍ଣ୍ଣ ଭାଷାରେ ଏ ଯେଉଁ କମନୀୟ ପ୍ରକାଶ, ଏହା ପାଠକର ହୃଦୟକୁ ରସାଭିଷିକ୍ତ କରେ । କବି ଏଠାରେ ସ୍ୱକୀୟା ଅପେକ୍ଷା ପରକୀୟାକୁ ଶ୍ରେଷ୍ଠ ସ୍ଥାନ ଦେଇଅଛନ୍ତି । ଗୌଡ଼ୀୟ ବୈଷ୍ଣବ ଧର୍ମରେ ପରକୀୟା-ରସର ଓ ପରକୀୟା ନାୟିକାର ଶ୍ରେଷ୍ଠତ୍ୱ ସର୍ବଥା ଗ୍ରହଣ କରାଯାଇଅଛି ।

ଉଜ୍ଜ୍ୱଳନୀଳମଣିରେ ଉକ୍ତ ଅଛି—

"ରାଗେଣୈବାର୍ପିତାତ୍ମାନୋ ଲୋକଯୁଗ୍ମାନପେକ୍ଷିଣା
ଧର୍ମେଣାସ୍ୱୀକୃତା ଯାସ୍ତୁ ପରକୀୟା ଭବନ୍ତି ତାଃ ।"

ଯେଉଁ ନାୟିକା ବିବାହାଦିଦ୍ୱାରା ଗୃହୀତ ହୋଇ ଇହଲୋକ ପରଲୋକକୁ ଅପେକ୍ଷା ନ କରି କେବଳ ପରମ ଅନୁରାଗଦ୍ୱାରା ଅନ୍ୟ ଏକ ନାୟକକୁ ଆତ୍ମସମର୍ପଣ କରେ, ତାହାକୁ ପରକୀୟା ନାୟିକା ବୋଲାଯାଏ । ପରକୀୟା ନାୟିକାର ଲକ୍ଷଣରେ ପରକୀୟା ରସର ଆତ୍ମା ନିହିତ ହୋଇଅଛି । ପରକୀୟାର ରସରେ କେବଳ ଅନୁରାଗଦ୍ୱାରା ସମ୍ପୂର୍ଣ୍ଣ ଆତ୍ମସମର୍ପଣର ଭାବ ବିଳକ୍ଷ ରୂପ ଧାରଣ କରେ ବୋଲି ଏହା ଶ୍ରେଷ୍ଠ । ଏଥିରେ ଉଦ୍‌ବେଗ, ଉନ୍ମାଦନାର ଭାବ ଲକ୍ଷ୍ୟ କରିବାର କଥା । ସେହି ପରକୀୟାଭାବ ଆଲୋଚ୍ୟ କବି ଦର୍ଶାଇ ଅଛନ୍ତି । ରାଧା ହିଁ ପରକୀୟା ନାୟିକା – ସେ ମାୟାମୟୀ । ସେହି ମାୟାମୟୀ ଦେବୀଙ୍କ ପଦକଞ୍ଜରେ କବି ତାଙ୍କର ଭକ୍ତିର ଅର୍ଘ୍ୟ ପ୍ରଦାନ କରି ନିଜକୁ ଧନ୍ୟ ମଣିଅଛନ୍ତି । ତେଣୁ ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ ସର୍ବଜନର ଉପଭୋଗର ସାମଗ୍ରୀ । ତାଙ୍କର ବିଶ୍ୱଜନୀନ କଳ୍ପନା, ଭଗବତ୍ ନିବେଦନ, ଗଭୀର ଅନୁଭୂତି, ଆଶା, ନିରାଶା ଓ ଆତ୍ମସମର୍ପଣର ପ୍ରାଞ୍ଜଳ ପ୍ରକାଶ ଦ୍ୱାରା ସେ ଅହୈତୁକ ପ୍ରେମର ମହନୀୟ ଚିତ୍ର ଓଡ଼ିଆ ସାହିତ୍ୟକୁ ଯୋଗାଇ ଜାତିର ତଥା ଦେଶର ମୁଖ ଉଜ୍ଜ୍ୱଳ କରି ଯାଇଅଛନ୍ତି ।



# ପ୍ରେମ ପଞ୍ଚାମୃତ

ମନୁଷ୍ୟ ଜୀବନର ବହୁବିଧ ବୈଭବ ମଧ୍ୟରେ ହାସ୍ୟ-ଅଶ୍ରୁ, ମିଳନ ବିରହ, ଅନୁରାଗ-ବିରାଗ, ସୁଖ-ଦୁଃଖ ପ୍ରଭୃତି ଯେପରି ଆକସ୍ମିକ ନୁହନ୍ତି, ପ୍ରତ୍ୟେକେ ଏକ ଏକ ଚିରନ୍ତନ ସତ୍ୟର ପରମ ତଥା ଚରମ ଅଭିବ୍ୟକ୍ତି, ସେହିପରି ପ୍ରେମ ମଧ୍ୟ ମନୁଷ୍ୟ ଜୀବନରେ ଏକ ମହାନ୍ ଓ ପବିତ୍ର ପରିପ୍ରକାଶ । ଯୁଗବ୍ୟାପୀ ରଥଚକ୍ର ତଳେ ମନୁଷ୍ୟଜାତି, ମନୁଷ୍ୟ ସମାଜ ସର୍ବୋପରି ମନୁଷ୍ୟର ପାରିପାର୍ଶ୍ୱିକ ଅବସ୍ଥା ଯେତେ ବିକ୍ଷେପିତ ହେଲେ ମଧ୍ୟ, ତାର ହୃଦୟରେ ପ୍ରେମର ଅଖଣ୍ଡ ରାଜତ୍ୱ ବିଦ୍ୟମାନ । ପ୍ରେମର ମହାର୍ଘ ରୂପାୟନ ହିଁ ମନୁଷ୍ୟ ଜୀବନର ପରମ ସତ୍ୟ, ପ୍ରେମର ପରମ ଅଭିବ୍ୟକ୍ତି ହିଁ ମାନବର ଯଥାର୍ଥ ପରିପ୍ରକାଶ । କେଉଁ ସ୍ମରଣାତୀତ କାଳରୁ ମାନବ ମନରେ ଏହି ଜୈବିକ ପ୍ରବୃତ୍ତି ଏକ ଅଖଣ୍ଡ ଆସନ ଅଧିକାର କରିଆସିଛି । ଅପ୍ରତିହତ ତାର ଗତିସ୍ରୋତରେ ସେ ବାଧା ମାନି ନାହିଁ, ବନ୍ଧନକୁ ଭ୍ରୂକ୍ଷେପ କରି ନାହିଁ, ସମୟର ପ୍ରଭାବରେ ପ୍ରଭାବିତ ହୋଇ ନାହିଁ । ନିଜର ଆଭିଜାତ୍ୟର ଜୟଢ଼ଙ୍କ ବଜାଇ ପ୍ରେମ ମନୁଷ୍ୟ ହୃଦୟକୁ ସେଥିପାଇଁ ଯୁଗେ ଯୁଗେ ଆଲୋଡ଼ିତ ଓ ଆନ୍ଦୋଳିତ କରିଆସିଛି । କେବଳ ମନୁଷ୍ୟ ଜୀବନ ନୁହେଁ, ସାହିତ୍ୟରେ ମଧ୍ୟ ପ୍ରେମର ପ୍ରଭାବ ଅପ୍ରତିହତ ସେଥିପାଇଁ ସାହିତ୍ୟରେ ଶୃଙ୍ଗାର ରସକୁ ଆଦି ରସର ଗୌରବ ଦିଆଯାଇଅଛି । ସଂସ୍କୃତ ଆଲଙ୍କାରିକ ଅଗ୍ରଣୀ ଆନନ୍ଦବର୍ଦ୍ଧନ ତାଙ୍କର ମହାନ୍ ଅଲଙ୍କାର ଗ୍ରନ୍ଥ 'ଧ୍ୱନ୍ୟାଲୋକ'ରେ କହିଛନ୍ତି—

"ଶୃଙ୍ଗାର ଏବ ମଧୁର ପରଃ ପ୍ରହ୍ଲାଦନୋ ରସଃ  
ତନ୍ମୟମବଲମ୍ବେନ ମାଧୁର୍ଯ୍ୟ ପ୍ରତିତିଷ୍ଠତି ।"

ପୃଥିବୀର ସବୁ ଦେଶର ସାହିତ୍ୟରେ ଏହି ଶୃଙ୍ଗାର ରସର ଅଳ୍ପ ବହୁତ ଚର୍ଚ୍ଚା ଯେ କୌଣସି ବିଦଗ୍ଧ ପାଠକ ଲକ୍ଷ୍ୟ କରିପାରେ । ଯଥାର୍ଥରେ ଭୋଜରାଜ କହିଛନ୍ତି— "ଶୃଙ୍ଗାରୀଶ୍ଚେତ୍ କବିଃ ।"

ସଂସ୍କୃତ ସାହିତ୍ୟରେ ମହାନ କୃତି ଶୃଙ୍ଗାରତିଳକ, ଶୃଙ୍ଗାର ଶତକ, ମେଘଦୂତ ପ୍ରଭୃତିରେ ଯେପରି ପ୍ରେମର ମହିମା ପରିକୀର୍ତ୍ତିତ, ଓଡ଼ିଆ ସାହିତ୍ୟରେ କବି ଭୂପତି ପଣ୍ଡିତଙ୍କ ପ୍ରେମ ପଞ୍ଚାମୃତରେ ସେହିପରି ପ୍ରେମର ଅଖଣ୍ଡ ପ୍ରବାହ ପ୍ରବାହିତ ହୋଇଅଛି ।

ସମଗ୍ର ଓଡ଼ିଆ ବୈଷ୍ଣବ ସାହିତ୍ୟରେ "ପ୍ରେମ ପଞ୍ଚାମୃତ" ଏକ କାନ୍ତିକାରୀ ସୃଷ୍ଟି । ଭୂପତିଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ପ୍ରେମର ବର୍ଣ୍ଣନା ଯେ ନ ଥିଲା ତାହା ନୁହେଁ । ମାତ୍ର ପ୍ରେମର ସରଳ ଓ ଅନାବିଳ ପରିପ୍ରକାଶ କରି ସମଗ୍ର ପାଠକ ହୃଦୟକୁ ଏକ ମହାର୍ଘ ରସରେ ଆଚ୍ଛନ୍ନ କରିବାର କୃତିତ୍ୱ କେବଳ ଭୂପତିଙ୍କର ହିଁ ପ୍ରାପ୍ୟ । ପଞ୍ଚାମୃତ ଯେପରି ଅର୍ଚ୍ଚ୍ୟ ଜୀବନର ଏକ ଉପାସ୍ୟ ସାମଗ୍ରୀ ଓ ସେବ୍ୟ ପଦାର୍ଥ ରୂପେ ଗୃହୀତ ହୋଇ ଅସଂସ୍କୃତ ପଦାର୍ଥକୁ ସଂସ୍କୃତ କରିଦିଏ, ସେହିପରି ପ୍ରେମପଞ୍ଚାମୃତରେ କବିଙ୍କର କଳ୍ପିତ ଏକମାତ୍ର ଉପାସ୍ୟ ପ୍ରେମଭକ୍ତି ମନୁଷ୍ୟ ହୃଦୟରୁ ସମସ୍ତ ଆବର୍ଜ୍ଜନା ଦୂରକରି ତାହାକୁ ସଂସ୍କୃତ କରିଦିଏ । ଫଳତଃ ମୋହମାୟାଗ୍ରସ୍ତ ମାନବର ମନ ସ୍ୱାର୍ଥ ଅଭିମାନ, ସଙ୍କୀର୍ଣ୍ଣତା ଓ ପାଶବିକତାର ନାଗଫାଶରୁ ମୁକ୍ତ ହୋଇ ଦିବ୍ୟ ଭାବରେ ଉଦ୍‌ବୁଦ୍ଧ ହୁଏ । ବସ୍ତୁତଃ ଏହି ପରିପ୍ରେକ୍ଷୀରେ ହିଁ ପ୍ରେମପଞ୍ଚାମୃତର ପରିକଳ୍ପନା ।

୪

କାବ୍ୟାରମ୍ଭରେ କବି ଭୂପତି ନିଗୂଢ଼ ବୈଷ୍ଣବତତ୍ତ୍ୱକୁ ସରଳ କରିବାକୁ ହେଲେ ପ୍ରାକୃତ ଭାଷାର କିପରି ପ୍ରୟୋଜନ, ତାହାର ଏକ ସୁନ୍ଦର ବ୍ୟାଖ୍ୟା ଦେଇଅଛନ୍ତି ।

"କୃଷ୍ଣ ମହିମା ଯାହା ଶୁଣି — ସେ ସର୍ବ ବାକ୍ୟରେ ମୂର୍ଦ୍ଧନ୍ୟ ।
ଯେବେ ନ ଥାଇ କୃଷ୍ଣରସ — ସେ ସଂସ୍କୃତେ କାର୍ଯ୍ୟ କିସ ।
ପାଟବସନେ ଗୁଞ୍ଜା ଫଳ — ଥିଲେ ନୁହିଁଇ ବହୁମୂଲ୍ୟ ।
ଚିରା କନାରେ ମଣିବର — ଥିଲେ ନ ତୁଟେ ମୂଲ୍ୟ ତାର ।
ସୁର ଭାଷା ହିଁ ରସମୟେ — ସେ ନାରିକେଳ ଫଳ ପ୍ରାୟେ ।
କ୍ଳେଶେ ହୁଅଇ ରସଭୋଗ — ସବୁଙ୍କୁ ନୋହେ ଉପଯୋଗ" ।

ଭୂପତିଙ୍କ ପୂର୍ବରୁ ବୈଷ୍ଣବ ସାଧକ କବିମାନେ ନିଗୂଢ଼ ବୈଷ୍ଣବ ଧର୍ମ ତତ୍ତ୍ୱକୁ ନାନା ପ୍ରତୀକ ଓ ରୂପକଳ୍ପ ମାଧ୍ୟମରେ ପ୍ରକାଶ କରିଥିବାରୁ, ଅନେକତ୍ର ସେହି ସାହିତ୍ୟର ଭାଷା ଓ ଭାବ ସାଧାରଣରେ ବୋଧଗମ୍ୟ ହୋଇପାରୁ ନ ଥିଲା । ଏପରି କି ବୈଷ୍ଣବ ସାହିତ୍ୟକୁ ବୁଝିବା ପାଇଁ ନ୍ୟାୟ, ଶାସ୍ତ୍ର, ପୁରାଣ, ବେଦ, ଆଗମ ଓ କାବ୍ୟର ମଧ୍ୟ ଯଥେଷ୍ଟ ବ୍ୟୁତ୍ପତ୍ତି ଆବଶ୍ୟକ ବୋଲି କବି ଅଭିମନ୍ୟୁ ନିର୍ଭୀକ ଓ ସ୍ପଷ୍ଟ ଭାବରେ ଘୋଷଣା କରିଯାଇଅଛନ୍ତି । ଫଳତଃ ବୈଷ୍ଣବ ସାହିତ୍ୟ ଅଳ୍ପ କେତେଜଣ ସାଧକମାନଙ୍କ ବ୍ୟତୀତ ଅନ୍ୟମାନଙ୍କ ହୃଦୟର ନିକଟରେ ପହଞ୍ଚିପାରୁ ନ ଥିଲା । ମାତ୍ର ଚତୁର ପୁଣି ରସିକ ବିଦଗ୍ଧ କବି ଭୂପତି କଠିନ ବୈଷ୍ଣବ ତତ୍ତ୍ୱକୁ ଯେପରି ସରଳ ତଥା ପ୍ରାଞ୍ଜଳ ଭାଷାରେ ପ୍ରକାଶ କରିଯାଇଅଛନ୍ତି, ବୈଷ୍ଣବ ଦର୍ଶନର ବହୁ ରହସ୍ୟକୁ ଯେପରି ଚଟୁଳ ଭାବରେ ସୁବିନ୍ୟସ୍ତ କରିପାରିଛନ୍ତି, ତାହା କି ପ୍ରେମ ପଞ୍ଚାମୃତକୁ ଏକାଧାରରେ ଦେଇଛି ଏକ

ଧର୍ମଗ୍ରନ୍ଥ ଓ ଏକ କାବ୍ୟର ଗୌରବ । କାବ୍ୟକଳା ଧର୍ମ ଦର୍ଶନର ମଧୁର ସମନ୍ୱୟ ଯେଉଁ ସାହିତ୍ୟରେ ସମଭାବରେ ଦେଖାଦେଇଛି, ସେ ସାହିତ୍ୟ ସେତେ ପରିମାଣରେ ଚିରନ୍ତନ ହୋଇପାରିଛି ବୋଲି ଅବଧାରଣା କରିବାକୁ ହେବ । କାରଣ କେବଳ ଓଡ଼ିଆ ସାହିତ୍ୟ ନୁହେଁ, ବିଶ୍ୱ ସାହିତ୍ୟର ଇତିହାସ ପୃଷ୍ଠାରେ ଧର୍ମ ଓ ସାହିତ୍ୟର ନିବିଡ଼ ଆତ୍ମୀୟତା ଯେକୌଣସି ସହୃଦୟ ବିଦଗ୍ଧ ପାଠକ ଲକ୍ଷ୍ୟ କରିପାରେ । ଧର୍ମ ଯେପରି ସାହିତ୍ୟରେ ସ୍ଥାନ ଲାଭକରି ତାହାକୁ ଏକ ଅଭିଜାତ୍ୟ ସୃଷ୍ଟି ସମ୍ପଦରେ ପରିଣତ କରେ, ସାହିତ୍ୟ ସେହିପରି ଧର୍ମକୁ ଆଶ୍ରୟ କରି ସମାଜ ଓ ସଂସ୍କୃତିକୁ ନୈତିକ ଦିଗ୍‌ଦର୍ଶନ ଦିଏ । ଫଳତଃ ଧର୍ମ ଓ ସାହିତ୍ୟର ମଧୁର ସମନ୍ୱୟ କେବଳ କାବ୍ୟକଳା ଦୃଷ୍ଟିରୁ ନୁହେଁ, ସମାଜ ଓ ସଂସ୍କୃତି ଦୃଷ୍ଟିରୁ ମଧ୍ୟ ପ୍ରୟୋଜନ । ବସ୍ତୁତଃ ଏହି ଆଭିମୁଖ୍ୟ ନେଇ ସବୁ ଯୁଗରେ ସବୁ ସାହିତ୍ୟରେ ପ୍ରତ୍ୟେକ ପ୍ରତିଭାବାନ କବି ବା ସାହିତ୍ୟିକ ଲେଖନୀ ଧାରଣ କରିଥାଆନ୍ତି । ଓଡ଼ିଆ ସାହିତ୍ୟର ବୈଷ୍ଣବ କବିମାନଙ୍କ କୃତିରେ ଧର୍ମ ଓ ସାହିତ୍ୟର ଯେଉଁ ମଧୁର ସମନ୍ୱୟ ଦେଖିବାକୁ ମିଳେ, ତାହା ହିଁ ସାହିତ୍ୟର ଚିରନ୍ତନ ମୂଲ୍ୟବୋଧର ଯଥାର୍ଥ ପରିପ୍ରକାଶ ।

ଏହି ପରିପ୍ରେକ୍ଷୀରେ ପ୍ରେମପଞ୍ଚାମୃତକୁ ଅନୁଶୀଳନ କଲେ ଜଣାଯାଏ, ପ୍ରେମ-ପଞ୍ଚାମୃତ ଧର୍ମ ଓ କାବ୍ୟକଳାର ଏକ ମନୋଜ୍ଞ ତଥା ମଞ୍ଜୁଳ ସମନ୍ୱୟ । ସେଥିପାଇଁ କଠିନ ବୈଷ୍ଣବ ଧର୍ମ ଦର୍ଶନ ନାରିକେଳ ପାକରୁ ଉନ୍ନୀତ ହୋଇ ଦ୍ରାକ୍ଷାକୃତ ପାକରେ ପରିଣତ ହୋଇପାରିଛି । ଗୌଡ଼ୀୟ ବୈଷ୍ଣବ କବି ଅଭିମନ୍ୟୁ ତାଙ୍କର ପ୍ରସିଦ୍ଧ କାବ୍ୟଗ୍ରନ୍ଥ ବିଦଗ୍ଧଚିନ୍ତାମଣିରେ ବିଭିନ୍ନ ସ୍ଥାନରେ ବିଭିନ୍ନ ପ୍ରକାର ପାକର ବ୍ୟବସ୍ଥା କରି ତାର ପ୍ରସ୍ତର ସୀମାବଦ୍ଧ କରିଥିଲେ ହେଁ ଭକ୍ତକବି ଭୂପତିଙ୍କ ପ୍ରେମପଞ୍ଚାମୃତରେ କୁତ୍ରାପି ଏପରି ସୀମା ନିର୍ଦ୍ଦେଶ ଦେଖିବାକୁ ମିଳେ ନାହିଁ । ପରନ୍ତୁ ପ୍ରେମପଞ୍ଚାମୃତରେ ସମଗ୍ର ଶାସ୍ତ୍ରର ଯେପରି ଭାବରେ ରସାଳ ଓ ପ୍ରାଣବନ୍ତ ହୋଇପାରିଛି, ତାହା କେବଳ ଏହାର ସହଜ ଓ ସାବଲୀଳ ପରିପ୍ରକାଶ ଯୋଗୁ ହିଁ ସମ୍ଭବ ହୋଇଛି ।

ତଥାପି ପ୍ରେମପଞ୍ଚାମୃତରେ କାବ୍ୟତ୍ୱ ଅପେକ୍ଷା ଧାର୍ମିକତ୍ୱ ବିଶେଷ ଭାବରେ ପରିଲକ୍ଷିତ ହୁଏ । କାରଣ ଭାଗବତର ବିଷୟବସ୍ତୁକୁ ଆଶ୍ରୟ କରି ପ୍ରେମପଞ୍ଚାମୃତ ରଚିତ ହୋଇଛି । ଏହା ବହୁ ସ୍ଥଳରେ ସ୍ୱୀକାର କବି ଭୂପତି କରିଅଛନ୍ତି —

(୧) ଇତିଶ୍ରୀ ପ୍ରେମପଞ୍ଚାମୃତ ଭକ୍ତି ବିଭେଦ ଭାଗବତ ।
କୃଷ୍ଣ ଚରଣେ ଦେଇ ମତି, ଭଣିଲେ ସୁକବି ଭୂପତି ।
(୨) ଇତିଶ୍ରୀ ପ୍ରେମପଞ୍ଚାମୃତେ ଭକ୍ତି ବିଭେଦ ଭାଗବତେ ।

ସତେ ଯେପରି ଏହା ଏକ ଭକ୍ତିଭାଗବତ ।

ପ୍ରତ୍ୟେକ ଅଧ୍ୟାୟ ଶେଷରେ 'ଇତଶ୍ରୀ' ପ୍ରୟୋଗ ପୂର୍ବରେ ଅନୁକରଣରେ ହୋଇଥିଲା ପରି ମନେହୁଏ । ପ୍ରତ୍ୟେକ ଅଧ୍ୟାୟ ଶେଷରେ ଏହିପରି ଶୈଳୀର ପ୍ରୟୋଗ ପରିଲକ୍ଷିତ ହୁଏ । ଭୂପତିଙ୍କ ପୂର୍ବରୁ ଜଗନ୍ନାଥ, ଅଚ୍ୟୁତ ଓ ଦିବାକରପ୍ରମୁଖ କବିମାନେ ଏହି ଶୈଳୀରେ ବହୁ ଗ୍ରନ୍ଥ ପ୍ରଣୟନ କରିଯାଇଛନ୍ତି । ତେଣୁ କବି ଭୂପତି ବହୁ ତତ୍ତ୍ୱ ତଥା ଧର୍ମ ଦର୍ଶନକୁ କେନ୍ଦ୍ରକରି ପ୍ରେମପଞ୍ଚାମୃତ ଗ୍ରନ୍ଥ ରଚନା କରିଥିବାରୁ ଏହାକୁ କାବ୍ୟ ଅପେକ୍ଷା ଧର୍ମଗ୍ରନ୍ଥ କହିବା ବୋଧହୁଏ ଅଧିକ ସମୀଚୀନ ହେବ ।

ରୀତିଯୁଗର କଠିନ ଅଲଙ୍କାରିକତା କବଳରୁ ଭୂପତି ସମ୍ପୂର୍ଣ୍ଣ ଭାବରେ ନିଜକୁ ମୁକ୍ତ କରି ନ ପାରିଥିଲେ ମଧ୍ୟ ବହୁ ପରିମାଣରେ ନିଜର ମୌଳିକତା ବଜାୟ ରଖି-ପାରିଛନ୍ତି । ସେଥିପାଇଁ ତାଙ୍କ କାବ୍ୟରେ ଆଲଙ୍କାରିକତା କେଉଁଠି ହେଲେ ଦୁର୍ବୋଧ ହୋଇ ନାହିଁ । ତାହା ହିଁ ପ୍ରେମପଞ୍ଚାମୃତର ଆଙ୍ଗିକ କୌଶଳ ସର୍ବଶ୍ରେଷ୍ଠ ଓ ସର୍ବୋତ୍ତମ ସାଫଲ୍ୟ । ସର୍ବଜନପ୍ରିୟ ଭାଗବତର ଦଶମସ୍କନ୍ଧ ବୃତ୍ତିକୁ ଆଶ୍ରୟ କରି 'ପ୍ରେମପଞ୍ଚାମୃତ' ଯେପରି ଭାବରେ ଗଢ଼ି ଉଠିଛି, ତାହା ଏକାଧାରରେ ରସିକ ପାଠକ ତଥା ଧର୍ମର ସାଧକମାନଙ୍କୁ ସନ୍ତୁଷ୍ଟ କରିବାକୁ କ୍ଷମ ହୋଇପାରିଛି ।

ଗୌଡ଼ୀୟ ବୈଷ୍ଣବ ଧର୍ମ ଦର୍ଶନରେ ବୃନ୍ଦାବନ କ୍ଷେତ୍ରର ଶ୍ରେଷ୍ଠତ୍ୱ ତଥା ଶ୍ରୀକୃଷ୍ଣଙ୍କର ଅବତାରିତ୍ୱ ସ୍ୱୀକାର କରାଯାଇଅଛି । ଗୋପୀମାନେ ସ୍ୱାମୀ ଭାବରେ କୃଷ୍ଣଙ୍କୁ ଆରାଧନା କରି କୃଷ୍ଣଙ୍କ ସହିତ ନାନାଦି ଲୀଳାରସରେ ନିମଜ୍ଜିତ ହୋଇ କୃଷ୍ଣଙ୍କ ଅଙ୍ଗସୁଖ ଲଭିକରି ମୋକ୍ଷପ୍ରାପ୍ତ ହୋଇଥାଆନ୍ତି । ଅବଶ୍ୟ ଗୌଡ଼ୀୟ ବୈଷ୍ଣବ ଦର୍ଶନ ଅନୁସାରେ ଏ ମୋକ୍ଷର ଏକ ସ୍ୱାତନ୍ତ୍ର୍ୟ ବିଦ୍ୟମାନ । ଯୋଗ ଓ କର୍ମ ମାଧ୍ୟମରେ ଭଗବତ୍ ପ୍ରାପ୍ତି ଉତ୍କଳୀୟ ବୈଷ୍ଣବ ଧର୍ମର ସାରତତ୍ତ୍ୱ ହୋଇଥିଲେ ହେଁ ପରକୀୟା ପ୍ରେମ ସାହାଯ୍ୟରେ ଓ ସହଜିଆ ଭକ୍ତି ମାଧ୍ୟମରେ ଶ୍ରୀକୃଷ୍ଣଙ୍କ ସହିତ ମିଳିତ ହେବାର ବାସନା ଗୌଡ଼ୀୟ ବୈଷ୍ଣବ ଧର୍ମର ସାରମର୍ମ । ଏହି ତତ୍ତ୍ୱକୁ କବି ଭୂପତି ତିନୋଟି ଯୋଗ ମାଧ୍ୟମରେ ପ୍ରକାଶ କରି ଭକ୍ତିଯୋଗର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଯାଇଅଛନ୍ତି । ଅବଶ୍ୟ ସେ ଏହି ତିନିଯୋଗ ମଧ୍ୟରେ ଏକ ସମନ୍ୱୟ ଆଣି ଗଣେଶଙ୍କ ଫଳପ୍ରାପ୍ତିରେ ସହଜିଆ ଦର୍ଶନର ନିର୍ଦ୍ଦେଶ କରିଅଛନ୍ତି । ତେଣୁ ଯଥାର୍ଥରେ କବି କହିଅଛନ୍ତି—

"ଏପଥେ ସେହି ଫଳ ମତ । ଭୁଞ୍ଜିତେ କୃଷ୍ଣ ପରାପତ ।"

ଗ୍ରନ୍ଥର ପ୍ରାରମ୍ଭରେ କବି ନାମବ୍ରହ୍ମର ମହିମା ଘୋଷଣା କରିଅଛନ୍ତି । ସେ କହିଛନ୍ତି—

"ଶ୍ରୀହରେ କୃଷ୍ଣ ରାମନାମ । ମୃତ ଜଗମେ ଅନୁପମ ।
ଶ୍ରୀପୂର୍ଣ୍ଣ ବ୍ରହ୍ମ ନାମମନ୍ତ୍ରୀ । ନାମ ଶବଦ ରୂପେ ଥାଇ ।

× × ×

ସକଳ ରୂପ ନାମୁଁ ଜାତ । ନାମଟି ନିତ୍ୟ ସତ୍ୟ ତତ୍ତ୍ୱ ।
ଅବ୍ୟୟ ଅକ୍ଷୟ ଅଥୟ । ନାମଟି ଠୁଲ ଶୂନ୍ୟମୟ ।"

ନାମର ଏହି ବିଶ୍ଳେଷଣରୁ ବୈଷ୍ଣବ ଦର୍ଶନର 'ଶ୍ରବଣଂ, କୀର୍ତ୍ତିନଂ, ବିଷ୍ଣୁସ୍ମରଣମ୍, ପାଦ ସେବନଂ, ବନ୍ଦନଂ, ଅର୍ଚ୍ଚନଂ, ସଖ୍ୟଂ, ଦାସ୍ୟଂ, ଆତ୍ମନିବେଦନଂ'—ଏହି ନବଧା ଭକ୍ତି ମଧ୍ୟରୁ ନାମ ସଙ୍କୀର୍ତ୍ତନର ଶ୍ରେଷ୍ଠତ୍ୱ ତଥା ମହିମା ଉଦ୍‌ଘୋଷିତ । ବୈଷ୍ଣବ ଧର୍ମ ଅନୁଯାୟୀ ନାମ ଓ ନାମୀ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ନାମୀ ପରି ନାମ ମଧ୍ୟ ପୂର୍ଣ୍ଣ । ସ୍ୱୟଂ କୃଷ୍ଣ ନାମରେ କୃଷ୍ଣବଶୀକରଣୀ ଶକ୍ତି ପୂର୍ଣ୍ଣରୂପେ ବିଦ୍ୟମାନ । ତେଣୁ କବି ପ୍ରଥମରେ ନାମ ମାହାତ୍ମ୍ୟ, ପରେ କୃଷ୍ଣ ପ୍ରାପ୍ତିର ଉପାୟ ନିର୍ଦ୍ଦେଶ କରିଅଛନ୍ତି ।

ବେଦ ଉପନିଷଦରେ କର୍ମଯୋଗର ଶ୍ରେଷ୍ଠତ୍ୱ ଭାରତୀୟ ଶାସ୍ତ୍ରର ଅନ୍ୟ ଏକ ବିଶେଷତ୍ୱ । ତେଣୁ ବେଦରେ ବର୍ଣ୍ଣିତ ଜ୍ଞାନକାଣ୍ଡ ମୂଳସ୍ଥାନ ହୋଇପଡ଼ିଅଛି । କର୍ମ ହିଁ ବେଦର ପ୍ରତିପାଦ୍ୟ ବିଷୟ । କର୍ମ ହିଁ ମନୁଷ୍ୟକୁ ଦେବତାର ଆସନକୁ ଉନ୍ନୀତ କରେ । ତାହାକୁ ତାର କାମ୍ୟବସ୍ତୁ ନିକଟରେ ପହଞ୍ଚାଇଦିଏ । ଶୋକତାପ ପରିପୂର୍ଣ୍ଣ ଏହି ସଂସାରରୁ ମୁକ୍ତି ପାଇବା ପାଇଁ କର୍ମ ହିଁ ଏକମାତ୍ର ମାଧ୍ୟମ । ପୁଣି ଏହି କର୍ମ ସକାମ ଓ ନିଷ୍କାମ ଭେଦରେ ଦୁଇ ପ୍ରକାର । କୌଣସି ଏକ ନିର୍ଦ୍ଦିଷ୍ଟ କାମନାର ବଶବର୍ତ୍ତୀ ହୋଇ ଭଗବତ୍ ଆରାଧନାରେ ମୋକ୍ଷପ୍ରାପ୍ତି ସମ୍ଭବ ହୁଏ ନାହିଁ । କାରଣ –

ସେ ଧର୍ମ ଫଳ କରି ପୂର୍ଣ୍ଣ । ଅନ୍ତର ହୋନ୍ତି ଭଗବାନ ।

ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି—"ଯଥା ପୁଷ୍କର ପଳାଶ ଆପୋନ ଶ୍ଲିଷ୍ୟନ୍ତି ଏବ ଏବଂ ବିଦ ପାପଂ କର୍ମ ନ ଶ୍ଲିଷ୍ୟତେ" । ପାପ ଅବା ପୁଣ୍ୟକର୍ମ ପୁଣ୍ୟବାନ୍ ଓ ତତ୍ତ୍ୱଦର୍ଶୀକୁ ବିଚଳିତ କରିପାରେ ନାହିଁ । ଅହଂକାରର ବଶବର୍ତ୍ତୀ ହୋଇ ମନୁଷ୍ୟ ନିଜକୁ କର୍ମର କର୍ତ୍ତା ବୋଲି ମନେକଲେ ମଧ୍ୟ ପ୍ରକୃତରେ ସେ କର୍ମପାଶରେ ଆବଦ୍ଧ ହେବା ଫଳରେ ନିଗୂଢ଼ ତତ୍ତ୍ୱକୁ ଜାଣିପାରେ ନାହିଁ । ତେଣୁ ଅଭିମାନଶୂନ୍ୟ କର୍ମ ହିଁ ପ୍ରକୃତ କର୍ମ । ତେଣୁ କବି ଭୂପତି ଯଥାର୍ଥରେ କହିଅଛନ୍ତି —

"ନିର୍ମଳେ ରହୁ ତୁ ନିର୍ବେଳେ । ସାକ୍ଷୀ ସ୍ୱରୂପେ ଗୃହମେଳେ ।
ଅଥବା ଚଳ ଦେଶାନ୍ତରେ । ସମାନ ଏ ଦୁଇ ପ୍ରକାରେ ।"

ଗୀତାରେ ଅଛି—"କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ"। କର୍ମଫଳ ପ୍ରତି ଆସ୍ଥା ନ ରଖି ସମସ୍ତ କର୍ମ ଭଗବାନଙ୍କୁ ନିବେଦନ କର । ଏହା ହିଁ ଗୀତାର ମର୍ମବାଣୀ । ଜୟ-ପରାଜୟ, ଲାଭ-କ୍ଷତି, ସୁଖ-ଦୁଃଖ, ସିଦ୍ଧି-ଅସିଦ୍ଧି ଏସବୁକୁ ଯେଉଁ ଲୋକ ସମାନ ଚକ୍ଷୁରେ ଦେଖେ, ସେ ପ୍ରକୃତ ଆତ୍ମଜ୍ଞାନୀ । ଭଗବାନଙ୍କ ସନ୍ନିଧି ମିଳିତ ହେବାପାଇଁ ତାହାର ଅଧିକାର ବେଶୀ । ତେଣୁ ଶ୍ରୀକୃଷ୍ଣ ଗୀତାରେ କହିଛନ୍ତି—

"ସୁଖଦୁଃଖେ ସମକୃତ୍ୱା ଲାଭାଲାଭୌ ଜୟାଜୟୌ
ତତୋ ଯୁଦ୍ଧାୟ ଯୁଧ୍ୟସ୍ୱ ନୈବଂ ପାପମବାପ୍ସ୍ୟସି"

ଗୀତାର ଏହି ମର୍ମବାଣୀକୁ ଭୂପତି ମଧ୍ୟ ଆତ୍ମସ୍ଥ କରି ସରଳଭାବରେ କହିଅଛନ୍ତି—

"ଦେହ ସମ୍ପଦ ଗୃହ ବାସ । ଦାରାତନୟ ଦାସୀଦାସ ।
ଯେ ପିତୃ କାର୍ଯ୍ୟ ଯଜ୍ଞଦାନ । ଏ ଆଦି ପୂଣ୍ୟ କର୍ମମାନ ।
ଯେ ତୀର୍ଥ ବ୍ରତ ଜପତପ । ସବୁ ହିଁ କୃଷ୍ଣଙ୍କୁ ସମର୍ପ ।"

କୃଷ୍ଣପ୍ରାପ୍ତି ନିମନ୍ତେ ନିଷ୍କାମ ପ୍ରେମର ପ୍ରାଧାନ୍ୟ ଯଥେଷ୍ଟ ବେଶୀ । ଏହି ରହସ୍ୟ ଉପଲବ୍ଧି କରି କବି ଭୂପତି ଅପ୍ରୟୋଜନ ପ୍ରେମର ପରାକାଷ୍ଠା ପ୍ରତିପାଦନ କରି କହିଅଛନ୍ତି—

"ଅପ୍ରୟୋଜନ ପ୍ରେମ ପାଇ । ମାଗଉଛନ୍ତି କୃଷ୍ଣ ଖାଇ
ଯା ପ୍ରେମ ପ୍ରୟୋଜନେ ଥିବ । ସେ କାହୁଁ କୃଷ୍ଣଙ୍କୁ ପାଇବ ।
ତା ପ୍ରୟୋଜନ ତାକୁ ଦେଇ । ଅବଶ୍ୟ ତାହାକୁ ଛାଡ଼ଇ ।
ଅପ୍ରୟୋଜନ ପ୍ରେମ ଯାର । ଗୋବିନ୍ଦ ଅଧୀନ ତାହାର ।"

ମନୁଷ୍ୟର ବନ୍ଧୁ ଆରାଧ୍ୟ ଦେବତା କୃଷ୍ଣଚନ୍ଦ୍ର ମଧ୍ୟ କର୍ମର ଅଧୀନ ନୁହନ୍ତି । ଆଲୋଚକ ଲକ୍ଷ୍ମୀକାନ୍ତ ଚଉଧୁରୀଙ୍କ ଭାଷାରେ "ସେ ତ୍ରିଗୁଣାତୀତ, ତହୁଁ କର୍ମାତୀତ । ତାଙ୍କ କରୁଣା ହେଲେ ମନୁଷ୍ୟ ଅଧର୍ମାଚରଣ କରି ସୁଦ୍ଧା ଧର୍ମ କାର୍ଯ୍ୟାନୁଷ୍ଠାନର ଫଳଲାଭ କରେ ।" କବିଙ୍କର ନିମ୍ନୋକ୍ତ ପଂକ୍ତିରେ ଏଇ ଭାବର ଚମତ୍କାର ଅଭିବ୍ୟଞ୍ଜନା ଦେଖିବାକୁ ମିଳେ ।

"କଟାକ୍ଷେ ମାଧବେ ଗୋବିନ୍ଦେ । ନାଶେ ଅଶେଷ କର୍ମ ବନ୍ଧ ।
ଅନ୍ଧକୁ ଚକ୍ଷୁଦାନ ଦେଲେ । କୁବୁଜାକ ସୁନ୍ଦର କଲେ ।
ରଜକ ବୈକୁଣ୍ଠକୁ ନେଇ । ବାନରେ ବ୍ରହ୍ମପଦ ଦେଇ ।।"

ଇତ୍ୟାଦି

କର୍ମଯୋଗର ଚମତ୍କାର ବ୍ୟାଖ୍ୟା ପରେ କବି ଭୂପତି ଜ୍ଞାନଯୋଗର ଅବତାରଣା କରିଅଛନ୍ତି । ସଂଶୟଶୂନ୍ୟ ହୋଇ ସଚ୍ଚିଦାନନ୍ଦ ଭଗବାନଙ୍କ ଅସ୍ତିତ୍ୱରେ ପୂର୍ଣ୍ଣ ବିଶ୍ୱାସ କରିବା ସାଙ୍ଗେ ସାଙ୍ଗେ ଭଗବାନଙ୍କର ସତ୍ତାକୁ ଅଣୁ ପରମାଣୁରେ ଉପଲବ୍ଧି କରିବାକୁ ଜ୍ଞାନ ବୁଝାଯାଏ । ଭକ୍ତିପଥରେ ଜ୍ଞାନ ପ୍ରତିବନ୍ଧକ ସୃଷ୍ଟି କରେ ନାହିଁ, ପରନ୍ତୁ ତାହାକୁ ଭକ୍ତିର ପ୍ରତିଷ୍ଠାତା ବୁଝାଯାଇପାରେ । ଜ୍ଞାନମାର୍ଗରେ ଭକ୍ତ-ସାଧକ ଭଗବାନଙ୍କ ମାଧୁର୍ଯ୍ୟଲୀଳାକୁ ଅବଲୋକନ କରିପାରେ ନାହିଁ । ପଞ୍ଚମ ଅଧ୍ୟାୟରେ କବି ଭୂପତି ନିତ୍ୟସ୍ଥଳର ନାରୀମାନଙ୍କ ସହିତ କୃଷ୍ଣଙ୍କ କଥୋପକଥନ ପ୍ରସଙ୍ଗରେ ଏହି ଭାବକୁ ସୁନ୍ଦର ଭାବରେ ବ୍ୟକ୍ତ କରିଅଛନ୍ତି । 'ଚୈତନ୍ୟ ଚରିତାମୃତ' ଓ 'ଶ୍ରୀମଦ୍ଭଗବତ ଗୀତା'ରେ ନିର୍ଗୁଣ ଭକ୍ତି କୃଷ୍ଣପ୍ରାପ୍ତିର ସହଜ ପନ୍ଥା ରୂପେ ନିର୍ଦ୍ଦେଶିତ ହୋଇଅଛି । କବି ଭୂପତି ଗଣେଶଙ୍କ ଫଳପ୍ରାପ୍ତି ପ୍ରସଙ୍ଗରେ ଏହି ଭାବ ବ୍ୟକ୍ତ କରିଅଛନ୍ତି ।

କର୍ମଯୋଗ ପରେ ଭକ୍ତିଯୋଗର ମାର୍ମିକ ବ୍ୟାଖ୍ୟା କରିବାକୁ ଯାଇ କବି ଭୂପତି ଭକ୍ତିକୁ ଦୁଇ ଭାଗରେ ବିଭକ୍ତ କରିଅଛନ୍ତି । ବୈଧୀ ଓ ରାଗାନୁଗା । କର୍ମଯୋଗ ଦ୍ୱାରା ମନୁଷ୍ୟ ଆସକ୍ତିଶୂନ୍ୟ ହୋଇ ଚିତ୍ତକୁ ଶୁଦ୍ଧ କରେ । ଜ୍ଞାନଯୋଗରେ ସେ ସର୍ବଭୂତରେ ଭଗବାନଙ୍କ ସତ୍ତା ଉପଲବ୍ଧି କରେ । ଫଳରେ ତାର ମନରେ ଭକ୍ତି ସ୍ୱତଃ ଉଦ୍ରେକ ହୁଏ । ବିଷ୍ଣୁ ପୁରାଣ, ଶାଣ୍ଡିଲ୍ୟସୂତ୍ର, ନାରଦ ସୂତ୍ର, ଶଙ୍କରାଚାର୍ଯ୍ୟଙ୍କ ମହାନ୍ କୃତିରେ ଭକ୍ତିର ଚମତ୍କାର ବ୍ୟାଖ୍ୟା ଦେଖିବାକୁ ମିଳେ । ଭଗବାନଙ୍କ ନିକଟରେ ଏକାନ୍ତ ଭାବରେ ଆତ୍ମ ନିବେଦନ ହିଁ ଭକ୍ତି । ସଂସାରର ସବୁ କିଛି ବୈଷୟିକ ବ୍ୟାପାର ଭଗବାନଙ୍କଠାରେ ଉତ୍ସର୍ଗ କରିବାକୁ ହେବ । ଏଥିରେ ଭକ୍ତର କୌଣସି ବ୍ୟକ୍ତିଗତ ଅଧିକାର ରହେ ନାହିଁ । କବି ଭୂପତି ଭକ୍ତିଯୋଗର ଏଇ ଗୂଢ଼ ତତ୍ତ୍ୱଟିକୁ ମର୍ମେ ମର୍ମେ ଅନୁଭବ କରିଥିଲେ; ହୃଦୟରେ ନିବିଡ଼ ଭାବରେ ଅନୁଭବ କରିଥିଲେ । ଫଳତଃ ପ୍ରେମପଞ୍ଚାମୃତର ବହୁ ଛନ୍ଦରେ ଅନୁଭବର ସେହି ବିଚିତ୍ର ସ୍ୱାଦ କବି ପରିବେଷଣ କରିଯାଇଅଛନ୍ତି । ସେ ଭକ୍ତିକୁ ବୈଧୀ ଓ ରାଗାନୁଗା ଭେଦରେ ବିଭକ୍ତ କରି ରାଗାନୁଗା ଭକ୍ତିର ଶ୍ରେଷ୍ଠତ୍ୱ ପ୍ରତିପାଦନ କରିଅଛନ୍ତି । ଚୈତନ୍ୟଚରିତାମୃତରେ ଏହି ଭକ୍ତିର ସ୍ପଷ୍ଟ ଉଲ୍ଲେଖ ରହିଛି । ଯଥା—

"ରାଗହୀନ ଜନ ଭଜେ ଶାସ୍ତ୍ରେର ଆଜ୍ଞାୟ
ବୈଧୀ ଭକ୍ତି ବଲି ତାରେ ସର୍ବ ଶାସ୍ତ୍ରେ ଗାୟ ।"

ବୈଧୀ ଭକ୍ତି ଶାସ୍ତ୍ରଜ୍ଞାନର ଅଧୀନ, ମାତ୍ର ରାଗାନୁଗା ଶାସ୍ତ୍ରାଦି ଯୁକ୍ତିର ଅଧୀନ ନ ହୋଇ କେବଳ ଭକ୍ତର ଆସକ୍ତି ଓ ନିଷ୍ଠା ଉପରେ ପ୍ରତିଷ୍ଠିତ ହୋଇଥାଏ । ବୈଧୀଭକ୍ତି ଜ୍ଞାନମାର୍ଗର ଅଧୀନ, କିନ୍ତୁ ରାଗାନୁଗା କର୍ମ, ଜ୍ଞାନ ଆଦିର ଊର୍ଦ୍ଧ୍ୱରେ ରହି

ତାହାର ଚତୁଃପାର୍ଶ୍ୱରେ ବିଚିତ୍ର ଏକ ହ୍ଲାଦିନୀ ଆତ୍ମମଣ୍ଡଳ ସୃଷ୍ଟି କରିଥାଏ । କେବଳ ବ୍ରଜର ଗୋପୀମାନେ ଏହି ରାଗାନୁଗା ମାର୍ଗର ସାଧିକା । ତେଣୁ ଭଗବାନଙ୍କୁ ପାଇବା ପାଇଁ ଗୋପୀଙ୍କର ସେବିକା ହେବାକୁ ଗୌଡ଼ୀୟ ବୈଷ୍ଣବ କବିମାନେ ବିଶେଷ ଭାବରେ ଆଗ୍ରହୀ । ଏ ପ୍ରଚ୍ଛଦପଟରେ ଅଭିମନ୍ୟୁଙ୍କ ନିମ୍ନୋକ୍ତ ପଂକ୍ତି ସବିଶେଷ ଉଲ୍ଲେଖ ଯୋଗ୍ୟ ।

"ଓଷଧୀଶାନନ ହେ ମାଗୁଛୁ ପଦ ଧରି ।
ଓ କରିବି ଆଲୋ ଦାସୀ ଡାକିଲେ କିଶୋରୀ ।"

ପ୍ରେମପଞ୍ଚାମୃତରେ ମଧ୍ୟ କବି ଭୂପତି କହିଅଛନ୍ତି—

ଯେ ଭଜେ ଗୋପୀ ଅଙ୍ଗେ ମିଶି ।
ସେ ପାରେ କୃଷ୍ଣ ଅଙ୍ଗେ ପଶି ॥

ଭକ୍ତିର ସ୍ୱରୂପ ବିଭିନ୍ନ ଶାସ୍ତ୍ରରେ ଏହି ଭାବରେ ଲକ୍ଷ୍ୟ କରାଯାଇଥାଏ । ଯଥା—ବିଶୁଦ୍ଧ, ନିର୍ଗୁଣ, ସ୍ୱତନ୍ତ୍ର, ଅନିର୍ବଚନୀୟ । ଏହା ସଚ୍ଚିଦାନନ୍ଦ ଭଗବାନଙ୍କର ସର୍ବଶ୍ରେଷ୍ଠ ହ୍ଲାଦିନୀ ଶକ୍ତି । ମାୟାରେ ଆସକ୍ତ ହୋଇ ଭକ୍ତିଲାଭ କରାଯାଇପାରେ ନାହିଁ । ମାୟା ଅନ୍ତର୍ହିତ ହେଲେ ମନୁଷ୍ୟ ଆପେ ଆପେ ଭକ୍ତି ଉପଲବ୍ଧି କରେ । ଏଥିପାଇଁ ସାଧୁସଙ୍ଗ ଦ୍ୱାରା ସଂସାରର ନାନା ପାପତାପରୁ ନିବୃତ୍ତି ମିଳିଥାଏ । କବି ଭୂପତି ଦଶମ ଅଧ୍ୟାୟରେ ଓ ଦ୍ୱିତୀୟ ଅଧ୍ୟାୟରେ ସାଧୁସଙ୍ଗ, ସାଧୁବ୍ୟକ୍ତିର ଜୀବନୀ ଆଲୋଚନା, ଉତ୍ତମ ଗ୍ରନ୍ଥାଲୋଚନା ଓ ତୀର୍ଥାଦି ଭ୍ରମଣରେ ଉପଯୋଗିତା ଦର୍ଶାଇଅଛନ୍ତି । ନିରଭିମାନ ଭକ୍ତି କୃଷ୍ଣପ୍ରାପ୍ତିର ସୁଲଭ ମାଧ୍ୟମ । ବୃନ୍ଦାବତୀର ଗର୍ବ ଗଞ୍ଜନ ପ୍ରସଙ୍ଗରେ କୃଷ୍ଣଚନ୍ଦ୍ର ଏହା ହିଁ ପ୍ରତିପାଦନ କରିଅଛନ୍ତି । କବି ଭୂପତିଙ୍କ ଭାଷାରେ—

| | |
|---|---|
| ଗର୍ବଗଞ୍ଜନ ବାନା ଯାର | । ସେ ଗର୍ବ ସହିବ କାହାର । |
| ଦୁଧ ନଉତି ପୂରିଥାଇ | । ସୁରା ଟୋପାକେ ନାଶଯାଇ । |
| ଅଶୁଦ୍ଧ ହୋଇ ତତକ୍ଷଣି | । ନ ଲଗେ ଦେବତା ବ୍ରାହ୍ମଣେ । |
| ଶ୍ୱପଚ ଭୋଗ ଯେ ପଡ଼ଇ | । ଉତ୍ତମ ଲୋକେ ତା ଗ୍ରହଇ । |
| ଛଦବତ ପ୍ରେମେ ଗର୍ବ ମିଶେ | । ଗୋବିନ୍ଦ ତା ପାଶେ ନ ପଶେ । |
| ଗର୍ବ ଗଞ୍ଜିଲେ ବ୍ରହ୍ମାଙ୍କର | । ଭାବ ଘେନଇ ବୃନ୍ଦାଙ୍କର । |

ବୈଷ୍ଣବ ଧର୍ମଶାସ୍ତ୍ରରେ ମୁକ୍ତିକୁ ସାଲୋକ୍ୟ, ସାର୍ଷ୍ଟି, ସାମୀପ୍ୟ, ସାରୂପ୍ୟ, ସାଜୁଜ୍ୟ ଭାବରେ ବିଭକ୍ତ କରାଯାଇଅଛି ।

କିନ୍ତୁ ଗୌଡ଼ୀୟ ଭକ୍ତମାନେ ମୁକ୍ତିବାଦକୁ ସ୍ୱୀକାର କରି ନାହାନ୍ତି । କାରଣ ସେମାନଙ୍କ ମତରେ ମୁକ୍ତି କୈତବପୂର୍ଣ୍ଣ । ଯଥାର୍ଥରେ ଅଭିମନ୍ୟୁ କହିଛନ୍ତି—

"ଅକୈତବ କରୁଣାକୁ ପରସ୍ପରେ କର"

ସେହି କଥା ଗୋପାଳକୃଷ୍ଣ ଅନ୍ୟ ଭାବରେ କହିଛନ୍ତି—'ମୋକ୍ଷ ପଦକୁ ଲକ୍ଷ୍ୟ ନ କରି ରହିଯା ଅଳାରେ' । ପ୍ରସିଦ୍ଧ ଗୌଡ଼ୀୟ ଭକ୍ତ ଓ ଦାର୍ଶନିକ ଶ୍ରୀମଦ୍ କୃଷ୍ଣଦାସ କବିରାଜ କହିଛନ୍ତି—"ତାର ମଧ୍ୟେ ମୋକ୍ଷ ବାଞ୍ଛା କୈତବ ପ୍ରଧାନ । ଯାର ଭାବତେ କୃଷ୍ଣ ଭକ୍ତି ହୟେ ଅନ୍ତର୍ଦ୍ଧାନ ।"

ଗୌଡ଼ୀୟମାନଙ୍କ ମତରେ ପ୍ରେମ ହିଁ ପରମ ଓ ଚରମ ପଞ୍ଚମ ପୁରୁଷାର୍ଥ । ଗୋପୀମାନେ ତେଣୁ ମୋକ୍ଷକୁ ପ୍ରାଧାନ୍ୟ ଦେଇ ନାହାନ୍ତି । ଉପରୋକ୍ତ ମୁକ୍ତିବାଦମାନଙ୍କ ମଧ୍ୟରୁ ସାଯୁଜ୍ୟ ମୁକ୍ତି ଅଦ୍ୱୈତବାଦୀମାନେ ହିଁ ଗ୍ରହଣ କରିଥାଆନ୍ତି । ସେମାନଙ୍କ ମତରେ ଜୀବ ଓ ବ୍ରହ୍ମ ଏକ । "ବ୍ରହ୍ମ ସତ୍ୟ, ଜଗତ୍ ମିଥ୍ୟା । ଜୀବଃ ବ୍ରହ୍ମୈବ ନାପରଃ । ଜଗତ ମାୟା, ଜୀବ ବ୍ରହ୍ମଛଡ଼ା ଅନ୍ୟ କିଛି ନୁହେଁ । ଜୀବ ବ୍ରହ୍ମର ଏକତ୍ୱ ଅଦ୍ୱୈତବାଦୀମାନଙ୍କର ଅଭିମତ ହେଲେ ହେଁ ଗୌଡ଼ୀୟମାନଙ୍କର ତାହା ଗ୍ରହଣୀୟ ନୁହେଁ । ସେମାନଙ୍କର ଯୁକ୍ତି ହେଉଛି ବ୍ରହ୍ମ, ବିଭୁ ଏବଂ ବ୍ୟାପକ ବସ୍ତୁ । ଜୀବ କ୍ଷୁଦ୍ର, ତେଣୁ ପ୍ରଭୁ-ଭୃତ୍ୟ ସମ୍ବନ୍ଧ । ତେଣୁ ଏ ଦୁହିଁଙ୍କ ମଧ୍ୟରେ ଅଭେଦତ୍ୱ ଅସମ୍ଭବ । ଏହା ସମ୍ଭବ ହେଲେ ମଧ୍ୟ ଅର୍ଥାତ୍ ଜୀବ ଓ ବ୍ରହ୍ମ ଏକ ହେଲେ ମଧ୍ୟ ଉପଲବ୍ଧି ବା ଉପଭୋଗର ସମ୍ଭାବନା ନାହିଁ । ଚିନି ହେବା ଓ ଚିନି ଖାଇବା—ଏ ଦୁଇ ମଧ୍ୟରେ ଚିନି ଖାଇବା ଅଧିକ ବାଞ୍ଛନୀୟ । ସେହିପରି ନିତ୍ୟ ରସାମୃତ ମୂର୍ତ୍ତି ଶ୍ରୀକୃଷ୍ଣଚନ୍ଦ୍ରଙ୍କ ସହିତ ଏକ ହେବା ଅପେକ୍ଷା ପୃଥକ ରହି ତାଙ୍କୁ ଉପଲବ୍ଧି କରିବା ମାନବ ତଥା ଭକ୍ତର ଚରମ ଲକ୍ଷ୍ୟ ହେବା ଉଚିତ । ସୁତରାଂ ସାଯୁଜ୍ୟମାନଙ୍କ ପକ୍ଷରେ ତାହା ସର୍ବଥା ବର୍ଜନୀୟ ।

ଦ୍ୱିତୀୟତଃ ଯାହାକୁ ସାମୀପ୍ୟ ମୁକ୍ତି ବୋଲି କୁହାଯାଏ, ତାର ଅର୍ଥ ହେଉଛି, ଇଷ୍ଟଙ୍କ ସମୀପରେ ରହିବା । କେବଳ ସମୀପରେ ରହିବା ଦ୍ୱାରା ଅଭୀଷ୍ଟ ସିଦ୍ଧି କେବେ ହୋଇପାରେ ନାହିଁ । ଏତଦ୍‌ବ୍ୟତୀତ ସମୀପରେ ରହିବା ଯୋଗୁଁ ମନରେ ଯେଉଁ ଅହଂକାର ଜାତ ହୁଏ, ତାହା ପରମ ଲକ୍ଷ୍ୟ ସିଦ୍ଧିର ପ୍ରଧାନ ପ୍ରତିବନ୍ଧକ ।

ତୃତୀୟରେ ସାଲୋକ୍ୟ ମୁକ୍ତି । ଏହି ମୁକ୍ତିର ଅର୍ଥ ହେଉଛି, ଏକାଲୋକରେ ଇଷ୍ଟଙ୍କ ସହିତ ବସବାସ କରିବା । ଏହି ସାଲୋକ୍ୟ ମୁକ୍ତି ସହିତ ସାମୀପ୍ୟ ମୁକ୍ତିର ସାଧର୍ମ୍ୟ ରହିଛି । ଏଥିରେ ମଧ୍ୟ ଭକ୍ତ ମନରେ ଅହଙ୍କାର ଆସିପାରେ ।

ଚତୁର୍ଥରେ ସାରୂପ୍ୟ ମୁକ୍ତି । ଏହାର ଅର୍ଥ ହେଉଛି ଇଷ୍ଟଦେବଙ୍କ ରୂପ ପ୍ରାପ୍ତି ଇଷ୍ଟଦେବଙ୍କ ହେବ ରୂପ ପ୍ରାପ୍ତ ହେଲେ, ଇଷ୍ଟ ସହିତ ସମାନ ହେବାର ଯେଉଁ ଅହଙ୍କାର, ତାହା ଆସିପାରେ ଏବଂ ତାହା ଆସିଲେ ଇଷ୍ଟୋପଲବ୍ଧି ପକ୍ଷରେ ଚରମ ଅନ୍ତରାୟ । ଉଦାହରଣ ସ୍ୱରୂପ, ରାଜାଙ୍କ ବେଶ ଓ ଅନ୍ୟାନ୍ୟ ଉପକରଣ ଦ୍ୱାରା ବିଭୂଷିତ ହେଲେ

ଭକ୍ତ୍ୟ ମନରେ ରାଜ ସମାନ ହେବାର ଅହଙ୍କାର ଆସିଥାଏ ଏବଂ ରାଜାଙ୍କୁ ମାନିବାର ଯେଉଁ ପ୍ରବୃତ୍ତି ବା ରାଜଭକ୍ତି ତା ମନରେ ଉଦୟ ହୁଏ ନାହିଁ । ତେଣୁ ଅହଙ୍କାର ହିଁ ପରମ ଲକ୍ଷ୍ୟ ପ୍ରାପ୍ତିର ପ୍ରଧାନ ପ୍ରତିବନ୍ଧକ । ସେହି ହେତୁ ସାରୂପ୍ୟ ମୁକ୍ତି ଗୌଡ଼ୀୟମାନଙ୍କର କାମ୍ୟ ନୁହେଁ ।

ପଞ୍ଚମରେ ସାର୍ଷ୍ଟି ମୁକ୍ତି । ଏହି ମୁକ୍ତିର ଅର୍ଥ ହେଉଛି ଇଷ୍ଟଙ୍କ ଭଳି ସମୃଦ୍ଧିଶାଳୀ ହେବା ବା ସମାନ ଐଶ୍ୱର୍ଯ୍ୟଶାଳୀ ହେବା । ସମାନ ଐଶ୍ୱର୍ଯ୍ୟଶାଳୀ ହେଲେ ଅହଙ୍କାର ବାସନା ବଢ଼ିବା ସଙ୍ଗେ ସଙ୍ଗେ ଇଷ୍ଟଦେବଙ୍କୁ ଉପେକ୍ଷା କରିବା ପ୍ରବୃତ୍ତି ମନରେ ଜାତ ହେବା ସ୍ୱାଭାବିକ । ସୁତରାଂ ଏ ମୁକ୍ତି ମଧ୍ୟ ଗୌଡ଼ୀୟମାନଙ୍କ ପକ୍ଷରେ ବର୍ଜନୀୟ । ଏ ପଞ୍ଚପ୍ରକାର ମୁକ୍ତିକୁ ନିନ୍ଦାକରି କୃଷ୍ଣଦାସ କବିରାଜ ମୋକ୍ଷ ବାଞ୍ଛାକୁ କୈତବ ପ୍ରଧାନ ବୋଲି ଅଭିହିତ କରିଅଛନ୍ତି ।

ଭକ୍ତର ହୃଦୟରେ ନିର୍ଗୁଣ ଭକ୍ତି ଉଦୟ ହେଲେ ସେ ଏ ସମସ୍ତ ମୁକ୍ତିକୁ ହେୟ ମନେକରେ । ବ୍ରଜକନ୍ୟାମାନଙ୍କର କୃଷ୍ଣଚନ୍ଦ୍ରଙ୍କୁ ଅନ୍ୱେଷଣ ପ୍ରସଙ୍ଗରେ କବି ଭୂପତି ଏହାର ଏକ ସୁନ୍ଦର ବ୍ୟାଖ୍ୟା ଦେଇଅଛନ୍ତି ।

"ସହଜେ ସାଲୋକ୍ୟ ସାମୀପ୍ୟ । ବିରହେ ହୋଇଲେ ସାରୂପ୍ୟ ॥
ସାଜୁଯ୍ୟ ମୁକ୍ତିରେ ପଶିଲେ । ତେବେହେଁ ତହିଁ ନ ରସିଲେ ॥
ଉଦାସ ହୋଇ ତହୁଁ ଆସି । ପୁଣି ଭଗତିଭାବେ ପଶି ॥
ପୁଣି ଲୋଡ଼ନ୍ତି ଭଗବାନ । ପରମ ରସ ଆସ୍ୱାଦନ ॥"

ଭକ୍ତ କୃଷ୍ଣପ୍ରାପ୍ତି ବ୍ୟତିରେକେ ଅନ୍ୟ କୌଣସି କାମନା ମନରେ ପୋଷଣ କରେ ନାହିଁ । ସେ ଏଥିପାଇଁ ଅଷ୍ଟାଦଶ ସିଦ୍ଧିକୁ ତୁଚ୍ଛ ମନେକରେ । ମନରେ କୌଣସି ଅଭିଳାଷ ପୋଷଣ ନ କରି ସେ ଭଗବାନଙ୍କର ଅଙ୍ଗସୁଖ ଲାଭ କରିବା ପାଇଁ ବ୍ୟାକୁଳ ହୋଇଉଠେ । ଏଥିପାଇଁ ତାକୁ ନାନାଦି ପଦବୀର ପ୍ରଲୋଭନ ଦେଖାଇଲେ ମଧ୍ୟ ସେ ସବୁଠାରୁ ନିଜକୁ ଦୂରେଇ ରଖେ । କେବଳ ଭଗବାନଙ୍କର ଭାବ ହିଁ ତାହାର ଏକମାତ୍ର ଧ୍ୟେୟ । ତେଣୁ କବି କହିଅଛନ୍ତି—

"ମୋ ମୂଳଧନ ତୋର ଭାବ । ତୋତେ ପାଇଛୁ ଆଉ ଲାଭ ।
ଲାଭେ ମୋ ପ୍ରୟୋଜନ ନାହିଁ । ମୂଳକୁ ଦାଢ଼େ ନ ଛାଡ଼ଇ" ॥

ପ୍ରେମପଞ୍ଚାମୃତରେ ବହୁ ସ୍ଥଳରେ ଭକ୍ତିଯୋଗର ମାହାତ୍ମ୍ୟ ପରିକୀର୍ତ୍ତନ କରି କବି ଭୂପତି ନିଜ ଧର୍ମମତର ସ୍ୱକୀୟତା ତଥା ମୌଳିକତାର ଯେଉଁ ଚରମ ପରାକାଷ୍ଠା

ଦଶାଇଛନ୍ତି, ତାହା ଓଡ଼ିଆ ଗୌଡ଼ୀୟ ବୈଷ୍ଣବ ସାହିତ୍ୟରେ ତାଙ୍କୁ ଚିରଦିନ ଅମର କରି ରଖିବ ।

ପ୍ରେମପଞ୍ଚାମୃତର ପରିକଳ୍ପନାରେ ଅନ୍ୟ ଏକ ବୈଶିଷ୍ଟ୍ୟ ପରିଦୃଷ୍ଟ ହୁଏ । କବିଙ୍କର ଗୋପକନ୍ୟା, ଦେବକନ୍ୟା ଓ ମୁନିକନ୍ୟା ବର୍ଣ୍ଣନା ପ୍ରସଙ୍ଗରେ ଅବଶ୍ୟ ଏପରି ବିଭାଗୀକରଣରେ କବି ଅଚ୍ୟୁତାନନ୍ଦଙ୍କ ଶୂନ୍ୟସଂହିତା ଦ୍ୱାରା ବିଶେଷ ଭାବରେ ପ୍ରଭାବିତ ହୋଇଛନ୍ତି । ଶୂନ୍ୟସଂହିତାର ନବମ ଅଧ୍ୟାୟରେ କବି ଅଚ୍ୟୁତାନନ୍ଦ ଋଷିକନ୍ୟା, ଦେବକନ୍ୟା, ଋଷିକନ୍ୟାର ଅବତାରଣା କରିଛନ୍ତି । ଭାଗବତରେ ପ୍ରଧାନତଃ ଗୋପୀମାନଙ୍କୁ ତିନି ଭାଗରେ ବିଭକ୍ତ କରାଯାଇଅଛି । ସାଧନସିଦ୍ଧା, ଦେବୀ ଓ ନିତ୍ୟସିଦ୍ଧା । ପୁଣି ସାଧନସିଦ୍ଧା, ମୁନିକନ୍ୟା ଓ ବେଦକନ୍ୟା ଭେଦରେ ଦ୍ୱିବିଧ । ଦଣ୍ଡକାରଣ୍ୟରେ ବାସ କରୁଥିବା ମୁନିମାନେ ଶ୍ରୀରାମଚନ୍ଦ୍ରଙ୍କର ରୂପଲାବଣ୍ୟରେ ମୁଗ୍ଧ ହୋଇ ତାହାଙ୍କର ଅଙ୍ଗସ୍ପର୍ଶ ଲାଭ କରିବାକୁ ବ୍ୟାକୁଳ ହୋଇଉଠିଥିଲେ । ଫଳତଃ ରାମଚନ୍ଦ୍ର ସେମାନଙ୍କର ମନସ୍କାମନା ପୂର୍ଣ୍ଣକରି ପରବର୍ତ୍ତୀ ଜନ୍ମରେ ସେ ନିଜେ ଶ୍ରୀକୃଷ୍ଣ ଓ ମୁନିକନ୍ୟାମାନେ ଗୋପୀରୂପେ ଜନ୍ମଲାଭ କରିଥିଲେ । ଏହି ମୁନିକନ୍ୟାମାନଙ୍କର ପ୍ରସଙ୍ଗ ପଦ୍ମପୁରାଣ, ଶ୍ରୀମଦ୍ ଭଗବତ ଗୀତାରେ ମଧ୍ୟ ଦେଖିବାକୁ ମିଳେ । କବି ଭୂପତି ମୁନିଅଂଶୀ ଏହି କନ୍ୟାମାନଙ୍କୁ ଶ୍ରୀକୃଷ୍ଣଙ୍କୁ ଅନ୍ୱେଷଣ କରିବାପାଇଁ ପଶ୍ଚିମ ଦିଗକୁ ପ୍ରେରଣ କରି ଯେଉଁ ଦାର୍ଶନିକଭାବର ପ୍ରତିଷ୍ଠା କରିଛନ୍ତି, ତାହା ହେଉଛି—

"ଯେ କନ୍ୟା ମୁନି ଅଂଶୀ । କୃଷ୍ଣର ଦେହଲଗା ଦାସୀ ।
ନିଜ ଭାରିଯା ସମସରି । ତାହାଙ୍କ ତୁଲେ ପ୍ରୀତିକରି ।
କୃଷ୍ଣ କରନ୍ତି ସ୍ନେହ ଅତି । ସେ ଦାସୀଭାବ ନ ଛାଡ଼ନ୍ତି ।
କୃଷ୍ଣ ଆସନେ କୃଷ୍ଣ ଶେଯେ । ଭରସି ନ ପାରନ୍ତି ଏ ଯେ ।
ଜଣାନ୍ତି ଶିରେ କର ଦେଇ । ଖଣ୍ଡିଏ ଦୂରେ ଉଭା ହୋଇ ।
ଆଘ୍ରାଣ ପୁଷ୍ପ ନ ଧରନ୍ତି । ମୁକୁତ ମୁଖେ ନ ହସନ୍ତି ।
ମିଳନ୍ତି ଶୟନ ଭବନେ ବସନ୍ତି ଚରଣ ସେବନେ ।"

ଏହି କନ୍ୟାମାନଙ୍କର ଜ୍ଞାନ ଉଦୟ ହେବାରୁ ସେମାନେ କୃଷ୍ଣଚନ୍ଦ୍ରଙ୍କୁ କ୍ଷୀରସିନ୍ଧୁବାସୀ ମହାବିଷ୍ଣୁ ତଥା ସଂସାରର ପାପତାପ ବିନାଶ ପାଇଁ, ଧର୍ମ ସଂସ୍ଥାପନା ପାଇଁ ମୀନ, କୂର୍ମ, ବରାହାଦି ରୂପ ଗ୍ରହଣ କରିଥିବାର ଜାଣିପାରିଥିଲେ ।

କୃଷ୍ଣଚନ୍ଦ୍ରଙ୍କୁ ଅନ୍ୱେଷଣ କରିବାକୁ ଯାଇ ଯେଉଁ ବେଦକନ୍ୟାମାନେ ଦକ୍ଷିଣଦିଗକୁ ଯାତ୍ରା କରିଥିଲେ, ସେମାନେ ଉପଲବ୍ଧି କରିଥିଲେ କୃଷ୍ଣଚନ୍ଦ୍ର ନିରଞ୍ଜନ,

ନିରାକାର, ପୂର୍ଣ୍ଣବ୍ରହ୍ମ ଓ ଅବିନାଶୀ । ସେମାନେ କୃଷ୍ଣଙ୍କର ଦେହପରି, କିନ୍ତୁ ସେମାନେ ଆତ୍ମାରେ ପ୍ରବେଶ କରିପାରନ୍ତି ନାହିଁ । କବିଙ୍କ ଭାଷାରେ—

"ଯେ ବେଦଅଂଶୀ କନ୍ୟାଗଣ । କୃଷ୍ଣର ଦେହ ବୋଲି ଜାଣ ।
ଏ ନିତ୍ୟରୂପୀ ପରି ଚିହ୍ନି । ବେଦାନ୍ତ ମତ ତତ୍ତ୍ୱ ଜ୍ଞାନି ।
କୃଷ୍ଣର ଦେହେ ମିଶିଥାନ୍ତି । ଆତ୍ମାରେ ପଶି ନ ପାରନ୍ତି ।"

ଯେଉଁମାନେ ଉତ୍ତରାସ୍ୱରେ ଯାତ୍ରୀ ହୋଇ କୃଷ୍ଣଙ୍କୁ ଆକୁଳ ଆଗ୍ରହରେ ଅନ୍ୱେଷଣ କରିଥିଲେ, ସେମାନେ ହେଲେ ବେଦ୍‌କନ୍ୟା । ଭୂପତିଙ୍କ ମତରେ ସେମାନେ କୃଷ୍ଣଙ୍କ ସ୍ତ୍ରୀ ସଦୃଶ । ସେମାନଙ୍କ କାଯ଼ା ଭିନ୍ନ; ମାତ୍ର ହୃଦୟ କୃଷ୍ଣଙ୍କଠାରେ ଲୀନ । କୃଷ୍ଣଙ୍କ ସମ୍ବନ୍ଧରେ ଏହି ଦେବକନ୍ୟାମାନଙ୍କର ଉପଲବ୍‌ଧି ହେଲା– କୃଷ୍ଣ ନିତ୍ୟ ବୈକୁଣ୍ଠବାସୀ ମହାବିଷ୍ଣୁ । ରାକ୍ଷସମାନଙ୍କର ଅତ୍ୟାଚାରରୁ ରକ୍ଷା ପାଇବା ନିମନ୍ତେ ବ୍ରହ୍ମା ପ୍ରଭୃତି ଦେବତାମାନେ ବିଷ୍ଣୁଙ୍କୁ ଆରାଧନା କରିବାରୁ ସେ 'ଗୋପରେ ଜନ୍ମ ହୋଇଛନ୍ତି ।

କୃଷ୍ଣଙ୍କୁ ଅନ୍ୱେଷଣ କରିବାକୁ ଯାଇ ଯେଉଁ ଗୋପକନ୍ୟାମାନେ ପୂର୍ବଦିଗକୁ ଯାତ୍ରା କରିଥିଲେ, ସେମାନେ ନିତ୍ୟସିଦ୍ଧା । ସେମାନଙ୍କୁ ଗୋପକନ୍ୟା ନାମରେ କବି ନାମିତ କରିଅଛନ୍ତି । କୃଷ୍ଣଙ୍କ ସହିତ ଏକାତ୍ମଭାବରେ ସେମାନେ ନିମଜ୍ଜିତ ହୋଇଥିଲେ । ରାଧିକା ଆଦି ଗୋପକନ୍ୟାମାନେ କୃଷ୍ଣଙ୍କୁ ଭଗବାନ ବୋଲି ଜାଣିଥିଲେ ମଧ୍ୟ ଅତି ଆତ୍ମୀୟଭାବରେ ସେମାନେ କେବଳ ବ୍ରଜବାଳକ କୃଷ୍ଣଚନ୍ଦ୍ରଙ୍କୁ ଅନ୍ୱେଷଣ କରିଥିଲେ । ବ୍ରଜପୁରରେ କଥିତ ନାମ, ଗୁଣ ଓ ରୂପ ଆଦିରେ ସେମାନେ ଶ୍ରୀକୃଷ୍ଣଙ୍କୁ ବାରମ୍ବାର ଆହ୍ୱାନ କରିଥିଲେ । ତେଣୁ ସେମାନେ କୃଷ୍ଣଙ୍କୁ ନାନାଦି ଭୟ ଦେଖାଇ ଡାକିଥିଲେ । ଏହି ଗୋପକନ୍ୟାଙ୍କ ମଧ୍ୟରେ ଶ୍ରେଷ୍ଠ ହେଉଛନ୍ତି ରାଧା । କବି ଭୂପତି ରାଧିକାଙ୍କୁ ଜୀବାତ୍ମା ଓ କୃଷ୍ଣଙ୍କୁ ପରମାତ୍ମା ରୂପରେ କଳ୍ପନା କରିଅଛନ୍ତି । ଗୋପୀମାନଙ୍କୁ କୃଷ୍ଣଙ୍କର ଜୀବନ ବା ଆତ୍ମାରୂପେ କଳନା କରି କବି ଭୂପତି କହିଅଛନ୍ତି—

"ପରମ ଆତ୍ମା ଭଗବାନ । ରାଧିକା ଜୀବ-ଆତ୍ମା ଜାଣ ।
ରାଧିକା ଅଂଶେ ଯେତେ ଗୋପୀ । ସେ କୃଷ୍ଣ ଜୀବନ ସ୍ୱରୂପୀ ।"

ଏହି ତ୍ରିବିଧ କନ୍ୟା ମଧ୍ୟରୁ କବି ଭୂପତି ବ୍ରଜକନ୍ୟାଙ୍କର ଶ୍ରେଷ୍ଠତ୍ୱ ପ୍ରତିପାଦନ କରି ପ୍ରେମପଞ୍ଚାମୃତର ଅଭିନବ କବି ପ୍ରତିଭାର ପରିଚୟ ଦେଇଅଛନ୍ତି ।

ଏହାବ୍ୟତୀତ କବି ପ୍ରୀତିକୁ ସ୍ୱକୀୟ ଓ ପରକୀୟା ଭେଦରେ ଦ୍ୱିଭାଗ କରି ପରକୀୟା ପ୍ରୀତିର ମହତ୍ତ୍ୱ ପ୍ରତିଷ୍ଠା କରିଯାଇଅଛନ୍ତି । ଏହା ହିଁ କବିଙ୍କର ଗୌଡ଼ୀୟ ବୈଷ୍ଣବ ଧର୍ମ ଦର୍ଶନ ପ୍ରତି ପ୍ରଚଣ୍ଡ ଅନୁରକ୍ତିର ନିଦର୍ଶନ ।

ବହୁବିଧ ବିଭବ, ଅନୁଭାବକୁ ଆଶ୍ରୟ କରି କବି ଭୂପତି ପ୍ରେମପଞ୍ଚାମୃତର ଅଙ୍ଗସଜ୍ଜାରେ ଯେଉଁ ନବରୂପାୟନ ଦେଖାଇ ଦେଇଅଛନ୍ତି, ତାହା ତାଙ୍କୁ ଓଡ଼ିଆ ସାହିତ୍ୟରେ ଦେଇଛି ଏକ ଉଚ୍ଚତର ସାହିତ୍ୟିକ ମର୍ଯ୍ୟାଦା । ଜୀବନକୁ ସଂସ୍କୃତ କରିବା ନିମିତ୍ତ କବି ଭୂପତି ପ୍ରେମ ପଞ୍ଚାମୃତରେ ଏକ ଅଖଣ୍ଡ ସାଂସ୍କୃତିକ ନିର୍ଝର ଝରାଇ ଦେଇଯାଇଅଛନ୍ତି । ଝରଣାର ସେଇ କଳକଳନାଦ ଏବେ ସୁଦ୍ଧା ଝଙ୍କୃତ ହୋଇଉଠୁଛି ଓଡ଼ିଆ ସାହିତ୍ୟରେ, ଅନୁରଣିତ ହୋଇଉଠୁଚି ବିଦଗ୍ଧ ପାଠକର ହୃଦୟେ ହୃଦୟେ । ଅଖଣ୍ଡ ଓ ଅଲଭ୍ୟ ସ୍ୱାକ୍ଷର ବହନ କରି ଓଡ଼ିଶାର ଧର୍ମ-ସାହିତ୍ୟରେ ପ୍ରେମ ପଞ୍ଚାମୃତ ଯୁଗେ ଯୁଗେ ଯେ ଏକ ସ୍ୱତନ୍ତ୍ର ସାହିତ୍ୟିକ ମର୍ଯ୍ୟାଦା ଲାଭ କରିବ—ଏଥିରେ ସନ୍ଦେହ ନାହିଁ ।



# କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ

କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ – ଓଡ଼ିଶାର ଏହି ଦୁଇ କ୍ଷଣଜନ୍ମା କବିଙ୍କର କୃତିମାନଙ୍କରେ ନାନା ସୌସାଦୃଶ୍ୟ ପରିଲକ୍ଷିତ ହୁଏ । ଉଭୟେ ସଂସ୍କୃତ ଓ ପ୍ରାଚୀନ ଓଡ଼ିଆ ସାହିତ୍ୟରେ ସୁବିଦୂଷ ଥିଲେ । ସଂସ୍କୃତ କାବ୍ୟ ତଥା ଅଳଙ୍କାର-ଶାସ୍ତ୍ରରେ ସେମାନଙ୍କର ପ୍ରବେଶ ଥିଲା ଅସାଧାରଣ । ରଚନାଭଙ୍ଗୀ ମଧ୍ୟ ଉଭୟଙ୍କର ସରସ ଓ ସମୁଜ୍ଜ୍ୱଳ । ଶୃଙ୍ଗାର ପ୍ରଧାନ ହେଲେ ହେଁ ଦୁହିଁଙ୍କ କବିତାବଳୀ ସେହି ସର୍ବଜନ ଉପାସ୍ୟ ଅଭୀଷ୍ଟ ଯୁଗଳରୂପ ଲକ୍ଷ୍ୟରେ ହିଁ ପ୍ରଧାବିତ । ଭାବଗାରିମା, ରସାଭିନିବେଶ, ପ୍ରତିଭାଦୀପ୍ତ ଅଳଙ୍କାର ବିନ୍ୟାସ, ମଞ୍ଜୁଳ ପଦ ପ୍ରୟୋଗ ଭାବୁକ ଓ ପାଠକ ହୃଦୟକୁ ମୁଗ୍ଧ କରିଥାଏ । ତେବେ କବିସୂର୍ଯ୍ୟଙ୍କ ପଦାବଳୀରେ ଅନୁପ୍ରାସ ଅନୁରଣିତ ଶବ୍ଦଯୋଜନା ପରିଦୃଷ୍ଟ ହୁଏ, ତାହା ଶବ୍ଦାଡ଼ମ୍ବରରେ ଆଟୋପିତ। ସ୍ଥଳ ବିଶେଷରେ ଶବ୍ଦାଟୋପ ଦୃଷ୍ଟିରୁ ପ୍ରକୃତ ରସାନୁକୂଳ ବର୍ଣ୍ଣବିନ୍ୟାସ ପ୍ରତି କବିସୂର୍ଯ୍ୟ ଦୃଷ୍ଟି ଦେଇନାହାନ୍ତି । ତଥାପି ମଧୁର ରସବର୍ଷୀ ତାଙ୍କ ଅପୂର୍ବ ରଚନାରେ ମୁଗ୍ଧ ହୋଇ ଓଡ଼ିଶାର ସର୍ବାଞ୍ଚଳର ପାଠକ ତାଙ୍କଠାରେ ନିଜକୁ ଋଣୀ ବୋଧ କରୁଅଛନ୍ତି । କ୍ୱଚିତ୍ ସ୍ଥାୟୀ ଭାବକୁ ଉଦ୍‌ବୁଦ୍ଧ ମାତ୍ର ନ ରଖି ତାକୁ ପରିସ୍ଫୁଟ କରିବାରେ ସେ ସମର୍ଥ ହୋଇଛନ୍ତି । କେତେକ ସ୍ଥଳରେ ଗୀତ ବିଶେଷରେ ଗ୍ରାମ୍ୟତାର ସମାବେଶ ହେତୁ ରସାପକର୍ଷ ଆଭାସିତ ହୋଇଅଛି । କବିତ୍ୱ ଓ ପାଣ୍ଡିତ୍ୟର ସମନ୍ୱୟ ଯୋଗୁଁ କବିତାରେ ଅସାଧାରଣତା ବିକଶିତ ହୋଇଅଛି, କହିଲେ ଅତ୍ୟୁକ୍ତି ହେବନାହିଁ ।

ଭକ୍ତ ଶିରୋମଣି କବି କଳହଂସ ଗୋପାଳକୃଷ୍ଣଙ୍କ କବିତା ସରଳ, ତରଳ ସରସ, ଗମ୍ଭୀରାର୍ଥଗର୍ଭିତ ଓ ଅଳ୍ପାକ୍ଷର ପଦାବଳୀରେ ବ୍ୟଞ୍ଜିତ । ଏହା ହିଁ ତାଙ୍କର ପରମ ବୈଶିଷ୍ଟ୍ୟ । ତାଙ୍କ କବିତାରେ ରସ ଓ ଭାବର ପ୍ରାଧାନ୍ୟ, ଦାର୍ଶନିକ ତତ୍ତ୍ୱର ଉନ୍ମେଷଣ, ରସଭାବନା ସରଣୀ, ମାଧୁର୍ଯ୍ୟ ପ୍ରସାଦ ପ୍ରଭୃତିରେ ପ୍ରଗୁଣିତ ହୋଇ ଦିବ୍ୟ ଭାବର ପୋଷାକ ହୋଇଅଛି । ଅଧିକାଂଶ ପଦାବଳୀ ଅନୁପ୍ରାସଭୂଷିତ ହେଲେ ହେଁ କବିଙ୍କର ଭାବାର୍ଥଗାରିମା-ଦୃଷ୍ଟି ମୁଖ୍ୟ । ଶବ୍ଦାନୁସନ୍ଧାନରେ କବିଙ୍କର ତାଦୃଶ ପ୍ରୟାସ ନାହିଁ । ପ୍ରତ୍ୟେକ ପଦ, କି ସଂସ୍କୃତ, କି ପ୍ରାକୃତ ସର୍ବଜ ରସାନୁକୂଳବର୍ଣ୍ଣ ଘଟିତ । ଉଭୟ କବି ତତ୍ତ୍ୱଦର୍ଶୀ ଓ ଦାର୍ଶନିକ ।

କବିସୂର୍ଯ୍ୟ ପଣ୍ଡିତ ଓ ଭକ୍ତକବି, ମାତ୍ର ଗୋପାଳକୃଷ୍ଣ କୃଷ୍ଣ-ଭକ୍ତ-କବି । ସୃଷ୍ଟିରେ ତାଙ୍କର ପାଣ୍ଡିତ୍ୟର ଅହମିକା ନାହିଁ, ଆଭିଜାତ୍ୟ ନାହିଁ । ସର୍ବତ୍ର ସରଳ, ସୁକୋମଳ, ସୁଷମାପୂର୍ଣ୍ଣ କବିତାରେ ସେ ଓଡ଼ିଆ ପଦାବଲୀ ସାହିତ୍ୟକୁ ବିମଣ୍ଡିତ କରିଯାଇଅଛନ୍ତି । କବିସୂର୍ଯ୍ୟ ଚମ୍ପୂକାବ୍ୟ ରଚୟିତା ହିସାବରେ ସାରା ଓଡ଼ିଶାରେ ସମ୍ମାନିତ ହେଲେ ମଧ୍ୟ ପଦକର୍ତ୍ତା ଭାବରେ ତାଙ୍କର ଦାନ ଅବଶ୍ୟ ସ୍ୱୀକାର୍ଯ୍ୟ । ସ୍ୱରଚିତ କିଶୋର ଚନ୍ଦ୍ରାନନ୍ଦ ଚମ୍ପୂ ଦ୍ୱାରା ସେ ଅମର ହୋଇଯାଇଅଛନ୍ତି । ଆଲୋଚ୍ୟ ଚମ୍ପୂରେ ବିପ୍ରଲମ୍ଭ ଶୃଙ୍ଗାର ପରିସ୍ଫୁଟ । ଏହା ସମ୍ଭୋଗ ଶୃଙ୍ଗାରର ପରିପୋଷକ । ଯେପରି ବୁଭୁକ୍ଷିତ ପାରଦ ବିଶେଷ ରସଭାବନାର ଅଭିବୃଦ୍ଧିଯୋଗ୍ୟ ହୁଏ, ଠିକ୍ ସେହିପରି ବିପ୍ରଲମ୍ଭ ସମ୍ଭୋଗର ପୁଷ୍ଟି ସାଧନ କରେ । ତେଣୁ କୁହାଯାଇଛି, "ନବିନା ବିପ୍ରଲମ୍ଭେନ ଶୃଙ୍ଗାର ପୁଷ୍ଟିମାଶ୍ନୁତେ ।"

ଏତଦ୍ୱାରା କବିଙ୍କର ରଚନାରେ ତାହା ରସର ଭାବୋତ୍କର୍ଷର ପରିଚାୟକ ହୋଇଥାଏ । "ଗଦ୍ୟ ପଦ୍ୟମୟଂ କାବ୍ୟଂ ଚମ୍ପୂରିତ୍ୟଭିଧୀୟତେ"—ଏହି ନିୟମରେ ଏହା ସଂସ୍କୃତର ରଚନାଂଶରେ ଚମ୍ପୂ ଲକ୍ଷଣାକ୍ରାନ୍ତ ହେଲେ ମଧ୍ୟ ଓଡ଼ିଆ ପଦ୍ୟାଂଶରେ ଗଦ୍ୟର ଅଭାବ ହେତୁ ଏହା କିପରି ଚମ୍ପୂ ଭାବରେ ଆଖ୍ୟାୟିତ ହେବ, ଏପରି ଆଶଙ୍କା କୌଣସି ପକ୍ଷରୁ ହୋଇଥାଏ । ଏହା ସ୍ୱାଭାବିକ । କିନ୍ତୁ କବି ଖୁବ୍ କୌଶଳ ସହକାରେ ଗୋଟିଏ ମାତ୍ର ଶବ୍ଦ ପ୍ରୟୋଗକରି ଏ ଦ୍ୱନ୍ଦ୍ୱର ସମାଧାନ କରିଛନ୍ତି । ଓଡ଼ିଆ ପଦ୍ୟ ଯାହା କବିଙ୍କର ଲେଖନୀପ୍ରସୂତ ହୋଇଅଛି, ତାହା "ଧ୍ରୁବାଦ" ସାହାଯ୍ୟରେ ଉଭୟାତ୍ମକ ହେବାରେ କୌଣସି ବିରୋଧ ନାହିଁ । ଅପର ପକ୍ଷରେ ସଙ୍ଗୀତ ଶାସ୍ତ୍ରାନୁଯାୟୀ ତାରାବଲୀ କୋଟୀରେ ଏହା ପର୍ଯ୍ୟାୟଭୁକ୍ତ ହେତୁ ଚମ୍ପୂ ଆଖ୍ୟା ପାଇବାରେ କୌଣସି ଆପତ୍ତି ନାହିଁ । କବିସୂର୍ଯ୍ୟଙ୍କ ମାର୍ଗ ମଧୁର, ସେଥିରେ ପୁଣି ମହାପ୍ରାଣ ବର୍ଣ୍ଣରେ ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନାକରି ଶାସ୍ତ୍ରୀୟ ଅନୁଶାସନକୁ ଭ୍ରୂକ୍ଷେପ କରିଛନ୍ତି । 'ଘ', 'ଧ' ପ୍ରଭୃତି ମହାପ୍ରାଣ ବର୍ଣ୍ଣରେ ବିପ୍ରଲମ୍ଭ ଶୃଙ୍ଗାର ବର୍ଣ୍ଣନା ଦୋଷବହ, ମାତ୍ର ଚଉତିଶା କ୍ରମରେ ଲିଖିତ ହୋଇଥିବାରୁ ଦୋଷଦୁଷ୍ଟ ନୁହେଁ । ପୁନଶ୍ଚ ମହାପ୍ରାଣ ବର୍ଣ୍ଣର ପ୍ରୟୋଗରେ ଯଥେଷ୍ଟ ସାବଧାନତା ମଧ୍ୟ ସେ ଅବଲମ୍ବନ କରିଛନ୍ତି । ଭୋଜରାଜଙ୍କ ମତରେ ଶୃଙ୍ଗାର ବର୍ଣ୍ଣନାରେ ଯଦିବା କ୍ୱଚିତ୍ ମହାପ୍ରାଣ ବର୍ଣ୍ଣ ବ୍ୟବହୃତ ହେବ, ସେଥିରେ ସମତା ରକ୍ଷାକରାଯିବା ଉଚିତ । ମହାପ୍ରାଣ ବର୍ଣ୍ଣ ପ୍ରୟୋଗରେ "ସମତା" ରକ୍ଷିତହେଲେ ତାହା ଦୋଷମୁକ୍ତ ହେବ । କବିସୂର୍ଯ୍ୟ ସେହି ପନ୍ଥା ହିଁ ଅବଲମ୍ବନ କରିଅଛନ୍ତି । ମହାପ୍ରାଣ ବର୍ଣ୍ଣର ବ୍ୟବହାର ଓ ପ୍ରୟୋଗରେ ସର୍ବତ୍ର ସମତା ରକ୍ଷିତ ହୋଇଅଛି । ଫଳରେ ବହୁସ୍ଥଳରେ ତାଙ୍କ ଭାଷା ସରଳ, ସୁଲଳିତ, ସରସ ଏବଂ ବୈଚିତ୍ର୍ୟଭରା । ହେତୁ ବଳିଷ୍ଠ ରୂପଧାରଣ କରିଛି । ବାରମ୍ବାର ଆଲୋଚନା ଦ୍ୱାରା

ସେ ଭଞ୍ଜୀୟ କବିତାର ଦୋଷଗୁଣ ଉତ୍ତମ ରୂପେ ହୃଦୟଙ୍ଗମ କରିପାରିଥିଲେ । ତେଣୁ ସ୍ୱ-କବିତାରେ ସେ ଦୋଷ ଯେପରି ନ ଆସେ, ତତ୍ପ୍ରତି ସେ ବିଶେଷ ଦୃଷ୍ଟି ନିବଦ୍ଧ ହୋଇଥିଲେ । ବର୍ଣ୍ଣନାଚାତୁରୀ, ରଚନାଭଙ୍ଗୀ, ବିଶୁଦ୍ଧ ଭାଷା ପ୍ରୟୋଗ ପ୍ରତି ସେ ବିଶେଷ ଧ୍ୟାନ ଦେଇଅଛନ୍ତି । ଚନ୍ଦ୍ରକଳା କାବ୍ୟରେ ଚନ୍ଦ୍ରକଳାର ଜନ୍ମ, ବାଲ୍ୟଲୀଳା, କଳାବିଦ୍ୟାର ଅନୁଶୀଳନ, ଉଦ୍ୟାନ ବିହାର, ଜଳକେଳି, ବେଶ ବିନ୍ୟାସ, ଯୌବନାରମ୍ଭ, ସ୍ୱପ୍ନ ଦର୍ଶନ ପ୍ରଭୃତି ଯେଉଁଭଳି ଭାବରେ ବର୍ଣ୍ଣିତ ହୋଇଅଛି ତା'ର ଧାରା ତଥା ସରଣୀ ଅନ୍ୟାନ୍ୟ କାବ୍ୟକାବ୍ୟରୁ ଗୃହୀତ ହୋଇଥିଲେ ହେଁ କବିସୂର୍ଯ୍ୟଙ୍କ ଅସାଧାରଣ ପାଣ୍ଡିତ୍ୟ, ଅଲୌକିକ ରଚନାଚାତୁରୀ, ବିଚିତ୍ର ଅଳଙ୍କାର ସୃଷ୍ଟିର ପରିଚୟ ସେଥିରୁ ମିଳୁଅଛି ।

ଭଞ୍ଜୀୟ କବିତା ପରି ଏହା ଯେପରି ଦୁର୍ବୋଧ ନୁହେଁ । ଭାଷାର କଠିନ ଆବରଣରେ ଭାବରେ ବିଚିତ୍ର ସୌନ୍ଦର୍ଯ୍ୟକୁ ଆସ୍ୱାଦନ କରିବା ତାଙ୍କର ପ୍ରବୃତ୍ତି ନ ଥିଲେ ମଧ୍ୟ କେତେକାଂଶରେ ଶବ୍ଦକ୍ଲିଷ୍ଟତା ତଥା ଅର୍ଥକ୍ଲିଷ୍ଟତା ପରିଲକ୍ଷିତ ।

କବିସୂର୍ଯ୍ୟ ଓ ଗୋପାଳକୃଷ୍ଣ ଉଭୟେ ଉଜ୍ଜ୍ୱଳ ରସ ଓ ଶୁଦ୍ଧାଭକ୍ତି ମାର୍ଗର ଉପାସକ । ଉଭୟେ ଅପ୍ରାକୃତ ପ୍ରେମର ପରିବେଷକ । କିନ୍ତୁ ଗୋପାଳକୃଷ୍ଣଙ୍କ ଲେଖନୀରେ ଆଲୋଚ୍ୟ ଉଜ୍ଜ୍ୱଳରସ ତଥା ଅପ୍ରାକୃତ ପ୍ରେମ ଯେପରି ଭାବରେ ବର୍ଣ୍ଣିତ ହୋଇଅଛି, ତା'ର ପଟାନ୍ତର ନାହିଁ । ରସମୟ କବିତ୍ୱର ଉନ୍ମେଷ ସହ ଲାଳିତ୍ୟପୂର୍ଣ୍ଣ ସଙ୍ଗୀତର ସୁସମାବେଶ ତାଙ୍କ କବିତାବଳୀକୁ ପରମ ଉପଭୋଗ୍ୟ କରାଇଅଛି । ଭାବ ଗ୍ରହଣରେ ଓ ରସାସ୍ୱାଦନରେ କୌଣସି ପ୍ରକାର ବିକାର ଜାତ ହୁଏ ନାହିଁ । ବିଶ୍ୱବିମୋହିନୀ ପୌର୍ଣ୍ଣମାସୀର ସୁଧାମୟ ଚନ୍ଦ୍ରିକା ତୁଲ୍ୟ ସ୍ନିଗ୍ଧ ସମୁଜ୍ଜ୍ୱଳ ପଦାବଳୀ ସାହାଯ୍ୟରେ ଗୋପାଳକୃଷ୍ଣ ସମଗ୍ର ପାଠକ ସମାଜର ଚିତ୍ତରାଜ୍ୟରେ ଅପୂର୍ବ ଶିହରଣ ସୃଷ୍ଟି କରିପାରିଛନ୍ତି । ବାତ୍ସଲ୍ୟ ଓ ଶାନ୍ତରସ ଅପେକ୍ଷା ମଧୁର ରସ ହିଁ ତାଙ୍କ କବିତାରେ ଅଧିକତର ପରିସ୍ଫୁଟ । ନବାନୁରାଗର ନାୟିକାର ଉତ୍କଣ୍ଠା, ଉଦ୍‌ବେଗ, ଉନ୍ମାଦନା, କ୍ରମେ କ୍ରମେ କିପରି ପ୍ରସ୍ଫୁଟିତ ହୁଏ ତାର ଏକ ଅନବଦ୍ୟ ଚିତ୍ର କବି ଏକ ନିପୁଣ କଳାକାର ଭାବରେ ପ୍ରସ୍ଫୁଟିତ କରିଅଛନ୍ତି । ଏ ପ୍ରସ୍ଫୁଟନରେ ଅଛି ଆନ୍ତରିକତା ଅଛି, ଭାବର ଉଚ୍ଛ୍ୱାସ ଓ ଆତ୍ମସମର୍ପଣ । ଗୋପାଳକୃଷ୍ଣ କବିସୂର୍ଯ୍ୟଙ୍କ ପରି କେବଳ ରସକବି ବା ଆଳଙ୍କାରିକ କବି ନୁହନ୍ତି, ସେ ଜଣେ ଅସାଧାରଣ ସଙ୍ଗୀତଜ୍ଞ । ସଙ୍ଗୀତଗୁଡ଼ିକ ଲୟ, ତାନ, ମାଧୁର୍ଯ୍ୟ, ସମ୍ବେଦନଶୀଳତାରେ ପରିପୂର୍ଣ୍ଣ । ସଙ୍ଗୀତ-ଯୁଗର ଶ୍ରେଷ୍ଠ କବି ଭାବରେ ସେ ସମ୍ମାନିତ ହେବେ । ଗମ୍ଭୀର ତଥା ଆନ୍ତରିକତାପୂର୍ଣ୍ଣ ପ୍ରେମ ସୃଷ୍ଟିରେ ସେ ସାରା ଓଡ଼ିଶାରେ ଅତୁଳନୀୟ । ପ୍ରତ୍ୟେକ କବିତାରେ କବିଙ୍କର କୃଷ୍ଣୈକ-ପ୍ରାଣତା, ରାଧାଭାବ, ଆତ୍ମସମର୍ପଣ ତଥା ଆତ୍ମବିସର୍ଜନ ଭାବ ପ୍ରକଟିତ । ତାଙ୍କ

କବିତାରେ ଅଳଙ୍କାରିତା, ସଙ୍ଗୀତର ମାଧୁର୍ଯ୍ୟ ଓ ସ୍ୱରମୂର୍ଚ୍ଛନା ବିକଶିତ । ସ୍ୱରଚିତ ପଦାବଳୀର ଉଲ୍ଲେଖଯୋଗ୍ୟ ବୈଶିଷ୍ଟ୍ୟ ହେଉଛି ତାଙ୍କର ପ୍ରକାଶଭଙ୍ଗୀ । ସେ ପ୍ରକାଶଭଙ୍ଗୀ ସର୍ବତୋଭାବରେ ଗୋପାଳକୃଷ୍ଣୀୟ । ସେଥିରେ କବିତ୍ୱର ସୂଚନା ଅଛି, ଇଙ୍ଗିତ ଅଛି, ଅଳ୍ପ କଥାରେ ବେଶି ଭାବ ଫୁଟାଇବାର କୌଶଳ ନିହିତ ରହିଛି । ମଧ୍ୟଯୁଗୀୟ କବିମାନେ ଏପରିକି କବିସମ୍ରାଟ ମଧ୍ୟ ଯେଉଁ ଭାବ ଦର୍ଶନ ତଥା ତତ୍ତ୍ୱକୁ ପରିସ୍ଫୁଟ କରିବାପାଇଁ ଗୋଟିଏ ଗୋଟିଏ ଗ୍ରନ୍ଥ ସୃଷ୍ଟିର ପରିକଳ୍ପନା କରିଛନ୍ତି, ଗୋପାଳକୃଷ୍ଣ ସେ ସବୁକୁ ଏକାପଦରେ ହିଁ ବ୍ୟକ୍ତ କରିଅଛନ୍ତି । ସୁକଣ୍ଠ ଗାୟକ ତାଙ୍କ ପଦାବଳୀ ଗାନକରି ନିଜେ ତ ଆନନ୍ଦିତ ହୁଏ, ପରନ୍ତୁ ଅନ୍ୟମାନଙ୍କୁ ଆନନ୍ଦିତ କରାଇଥାଏ ଏଇଠାରେ ହିଁ ଗୋପାଳକୃଷ୍ଣଙ୍କ ସଙ୍ଗୀତର ମହତ୍ତ୍ୱ ତଥା ଶ୍ରେଷ୍ଠତ୍ୱ ପ୍ରମାଣିତ । ବୈଷ୍ଣବ ପଦାବଳୀ ସାହିତ୍ୟ ସୃଷ୍ଟିରେ ସାମାଜିକ ପୃଷ୍ଠଭୂମି ବିଚାର୍ଯ୍ୟ । ଦେଶ ଅବସ୍ଥା, ପରାଧୀନ ଭାରତର ଚିତ୍ର, ମୁସଲମାନ ଆକ୍ରମଣ ଓ ଯବନ ସଂସ୍କୃତିର ପ୍ରଭାବ, ମାନସିକ ବିଶୃଙ୍ଖଳା ପ୍ରତି ପ୍ରାୟ କବିମାନେ ସଚେତନ ନ ଥିଲେ । ସେ ଯୁଗରେ ତେଣୁ ଉନ୍ନତ ଚିନ୍ତାର ଉନ୍ମେଷ ଦେଖାଯାଏ ନାହିଁ । କିନ୍ତୁ ଓଡ଼ିଆ ପଦାବଳୀ ଯୁଗରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବ ଏବଂ ଉତ୍କଳୀୟ ସଂସ୍କୃତିର ସଂଘର୍ଷ ଫଳରେ ଏକ ନୂତନ ଧାରାର ପ୍ରବର୍ତ୍ତନ ପରିଲକ୍ଷିତ ହୁଏ । ଏ ଯୁଗରେ ଧର୍ମ ଗୌଣ, ମାତ୍ର ସାହିତ୍ୟ ମୁଖ୍ୟସ୍ଥାନ ଅଧିକାର କରିଅଛି । ଉନ୍ନତ ସାର୍ବଜନୀନ ଚିନ୍ତାର ବିକାଶ ସମ୍ଭବପର ହୋଇଅଛି । ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ବିଶ୍ଳେଷଣ ଓ ନାନାବିଧ ଭାବର ବିକାଶ ମଧ୍ୟ ସଂଘଟିତ ହୋଇଅଛି । ସାହିତ୍ୟ ହୋଇଛି ସାର୍ବଜନୀନ । ତେଣୁ ଗୋପାଳକୃଷ୍ଣ କେବଳ ସୁଧୀ, ପଣ୍ଡିତ, କୋବିଦ, ଅର୍ଥୀ ପ୍ରଭୃତିମାନଙ୍କ ପାଇଁ କବିତା ରଚନା କରି ନାହାନ୍ତି, ସକଳ ଶ୍ରେଣୀର ପାଠକ-ପାଠିକାମାନଙ୍କପାଇଁ ଏହା ଉଦ୍ଦିଷ୍ଟ । ଚିରନ୍ତନ ପ୍ରେମର ବନ୍ୟା ସେ କି ସେ ପୁରପଲ୍ଲୀରେ ଖେଳାଇ ଦେଇଅଛନ୍ତି । ତାଙ୍କର ସଙ୍ଗୀତ ଦେଶ-କାଳ-ପାତ୍ରର ସୀମାତିକ୍ରମ କରିଛି । ଗୋଟିଏ କଥାରେ କହିଲେ ତାଙ୍କ ପଦାବଳୀ ଶାଶ୍ୱତ । ପଦାବଳୀ ସାହିତ୍ୟର ଯେଉଁ ତିନୋଟି ଧାରା ସାହିତ୍ୟ, ଦର୍ଶନ ଓ ଧର୍ମ—ସେହି ତ୍ରିବିଧ ଧାରା ପ୍ରତି ତାଙ୍କର ଦୃଷ୍ଟି ପ୍ରସାରିତ । ଓଡ଼ିଆ ସାହିତ୍ୟରେ ବହୁ ପଦକର୍ତ୍ତା ଅଛନ୍ତି— ବନମାଳୀ, ଜଗବନ୍ଧୁ, ଗୌରହରି କବିସୂର୍ଯ୍ୟ ପ୍ରଭୃତି । ଏମାନେ ସମସ୍ତେ କବିତା ସୃଷ୍ଟି କରିଅଛନ୍ତି; କିନ୍ତୁ ଗୋପାଳକୃଷ୍ଣ ଯେପରି ମଣିଷ ମନର ଚିରନ୍ତନ ଅନୁଭୂତିର ପ୍ରକାଶକୁ ତାଙ୍କ କବିତାରେ ଫୁଟାଇ ପାରିଛନ୍ତି, ସେହିପରି କୃତିତ୍ୱ କବି ଫୁଟାଇବାକୁ ସମର୍ଥ ହୋଇଅଛନ୍ତି । ତାଙ୍କ କବିତା ଅଶ୍ଳୀଳତାଶୂନ୍ୟ—ଭାଷା ପ୍ରୟୋଗ ଓ ବର୍ଣ୍ଣନା ଭଙ୍ଗୀର ମୌଳିକତା ଭକ୍ତିଭାବ ସମ୍ବଳିତ । ଗୀତିଧର୍ମୀ କବିତା ସୃଷ୍ଟିରେ ସେ ଅମରତ୍ୱ ଲାଭ କରିଅଛନ୍ତି । ରୂପ ଓ ପ୍ରେମର ମଧୁର ମିଳନରେ ତାଙ୍କ ସୃଷ୍ଟି ସୁଷମାମୟ ଓ ସୁରୁଚିଯୁକ୍ତ ।

●

# ଓଡ଼ିଆ ସମର ସାହିତ୍ୟକୁ ବ୍ରଜନାଥଙ୍କ ଦାନ

ଓଡ଼ିଶାର ସୁଦୃଢ଼ ସାମରିକ ପରମ୍ପରା ଓଡ଼ିଆ କବିର ବିପୁଳ ସୃଷ୍ଟି ସମ୍ପଦ ମଧ୍ୟରେ ଅତ୍ୟନ୍ତ ଜୀବନ୍ତ ଭାବରେ ପ୍ରକାଶିତ ହୋଇଅଛି । ଓଡ଼ିଶାର ଜାତୀୟ ମହାକବି ସାରଳା ଦାସଙ୍କ ବିରାଟ କାବ୍ୟକୃତି ମହାଭାରତ ଯଥାର୍ଥରେ ଏକ ଜାତୀୟ ସାମରିକ ମହାକାବ୍ୟ । କବି ସାରଳାଦାସ ଥିଲେ ଗଜପତି ସମ୍ରାଟ କପିଳେନ୍ଦ୍ର ଦେବଙ୍କ ସମସାମୟିକ କବି । ଓଡ଼ିଶାର ଇତିହାସରେ କପିଳେନ୍ଦ୍ର ଦେବ ସାମରିକ ଶକ୍ତିର ଏକ ଦିଗ୍‌ବିଜୟୀ ସଙ୍କେତ । ତାଙ୍କର ନିପୁଣ ସମର କୁଶଳତା ଓ ଓଡ଼ିଆ ପାଇକମାନଙ୍କର ବୀରତ୍ୱ, ଓଡ଼ିଶାର ରାଜନୈତିକ ସ୍ଥିତିକୁ କେବଳ ସୁଦୃଢ଼ କରି ନ ଥିଲା । ତାର ଭୌଗୋଳିକ ସୀମାକୁ ମଧ୍ୟ କରିଥିଲା ସମ୍ପ୍ରସାରିତ । ଏହି କପିଳେନ୍ଦ୍ର ଦେବଙ୍କ ଦାକ୍ଷିଣାତ୍ୟ ଅଭିଯାନ, ପ୍ରତ୍ୟକ୍ଷ ଭାବରେ ହେଉ କିମ୍ବା ପରୋକ୍ଷ ଭାବରେ ହେଉ, ସାରଳା ଦାସଙ୍କୁ ଯେ ଗଭୀର ଭାବରେ ପ୍ରଭାବିତ କରିଥିଲା, ଏଥିରେ ସନ୍ଦେହ ନାହିଁ । କାରଣ ତାହା ହୋଇ ନ ଥିଲେ । ଲୋମହର୍ଷକାରୀ ସମର ବର୍ଣ୍ଣନାରେ ସାରଳା ଦାସ ଏପରି ଅନବଦ୍ୟ କୃତିତ୍ୱ ଅର୍ଜନ କରିପାରି ନ ଥାନ୍ତେ । ଡକ୍ଟର ମାୟାଧର ମାନସିଂହ ତାଙ୍କର 'ଓଡ଼ିଆ ସାହିତ୍ୟର ଇତିହାସ'ରେ ଯଥାର୍ଥରେ ଲେଖିଛନ୍ତି—'' ସାରଳାଙ୍କ ମହାଭାରତରେ ଯୁଦ୍ଧାଭିଯାନ, ଦ୍ୱନ୍ଦ୍ୱଯୁଦ୍ଧ, ସାମରିକ କ୍ରୀଡ଼ା ଇତ୍ୟାଦି ଯେପରି ଜୀବନ୍ତ ବର୍ଣ୍ଣିତ ସେଥିରୁ ମନେ ହେଉଛି ଯେ, ଏଗୁଡ଼ିକ କବିଙ୍କର ବ୍ୟକ୍ତିଗତ ଅଭିଜ୍ଞତା ଥିଲା ଓ ଖୁବ୍ ସମ୍ଭବତଃ ସମ୍ରାଟ କପିଳେନ୍ଦ୍ର ଦେବଙ୍କର ଐତିହାସିକ ଦକ୍ଷିଣାଭିଯାନ ଗୁଡ଼ିକରେ କବି ନିଜେ ଜଣେ ସୈନିକ ଭାବରେ ଯୋଗ ଦେଇଥିଲେ ।'' ପ୍ରଖ୍ୟାତ ଐତିହାସିକ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ମଧ୍ୟ ମତପ୍ରକାଶ କରିଅଛନ୍ତି ଯେ, ମହାଭାରତରେ ସାରଳା ଦାସଙ୍କର ଯୁଦ୍ଧ ବର୍ଣ୍ଣନା କପିଳେନ୍ଦ୍ର ଦେବଙ୍କର ଦାକ୍ଷିଣାତ୍ୟ ଅଭିଯାନର ଏକ ଐତିହାସିକ ସଙ୍କେତ ।

ସାରଳା ଦାସଙ୍କର 'ଚଣ୍ଡୀପୁରାଣ' ଓ 'ବିଲଙ୍କା ରାମାୟଣ'ରେ ମଧ୍ୟ ସମର ବର୍ଣ୍ଣନା ଦେଖିବାକୁ ମିଳେ । ଏସବୁ ସମର ବର୍ଣ୍ଣନା ଯେପରି ରୋମାଞ୍ଚକର, ସେହିପରି ପ୍ରୀତିପ୍ରଦ ।

'ଚଣ୍ଡୀପୁରାଣରେ' ନିମ୍ନୋକ୍ତ ବର୍ଣ୍ଣନାରୁ ସମର ଚିତ୍ର ଅଙ୍କନର ସ୍ୱାଭାବିକ ଭୟଙ୍କରତାର ଚିତ୍ର ସହଜରେ ଉପଲବ୍‌ଧି ହୋଇଥାଏ ।

ପଞ୍ଚଷଷ୍ଠୀ ସହସ୍ର ଢୋଲ ଯେ ବଜାଇ
ପଞ୍ଚଷଷ୍ଠୀ ସହସ୍ର ଯେ ନିଶାଣ ଶୁଭଇ ।
ପଞ୍ଚଷଷ୍ଠୀ ସହସ୍ରେକ ନିଶାଣ ଯେ ବାଜେ
ଦଉଣ୍ଡୀ ବିଜଘୋଷ ତ ଡମ୍ବ କେହୁ ହଜେ ।
ପଞ୍ଚଷଷ୍ଠୀ ସହ୍ର ବାଦ୍ଯ ଅଛଇ ଝଞ୍ଜାଳ
ପଞ୍ଚଷଷ୍ଠୀ କୋଟି ଡମ୍ବ ବାଜଇ କାହାଳ ।
ପଞ୍ଚଷଷ୍ଠୀ କୋଟି ଶଙ୍ଖ ବାଜେ ତହିଁ ପୁଣି
ପଞ୍ଚଷଷ୍ଠୀ କୋଟି ରାମତାଳ ପରିମାଣି ।
ପଞ୍ଚଷଷ୍ଠୀ କୋଟି ଏକ ମହୁରି ଦୋସରି
ଏ ବିଧି ଅନେକ ପରକାରେ ବାଦ୍ୟ ତୂରି ।

ସାରଳା ମହାଭାରତରେ ଭୀମ ଦୁଃଶାସନ ଯୁଦ୍ଧ, ଅଭିମନ୍ୟୁ ବଧ ପ୍ରଭୃତି ପାଠକଲାବେଳେ ପାଠକର ଆଖି ଆଗରେ ସେହିସବୁ ଦୃଶ୍ୟ ଘଟି ଯାଉଥିବା ପରି ମନେହୁଏ । ପ୍ରତ୍ୟକ୍ଷଦର୍ଶୀ ପରି କବି ଏହି ଯୁଦ୍ଧ ବର୍ଣ୍ଣନାରେ ଯେପରି ନିପୁଣତା ପ୍ରକାଶ କରିଅଛନ୍ତି, ପାରଦର୍ଶିତା ପ୍ରଦର୍ଶନ କରିଅଛନ୍ତି, ତାହାର ତୁଳନା ନାହିଁ । ଏକ ଐତିହାସିକ ଜାତିର ମର୍ମସ୍ଥଳରେ ଯୁଦ୍ଧ ପିପାସା ଜାଗାଇ ରଖିବା, ପୁଣି ଦେଶର ନିରାପତ୍ତା ରକ୍ଷାପାଇଁ ଅନ୍ତରେ ଅନ୍ତରେ ସାମରିକ ବହ୍ନିଶିଖା ପ୍ରଜ୍ଜ୍ୱଳିତ କରି ରଖିବାରେ, ସାରଳା ଦାସଙ୍କ ଲେଖନୀ ଯେପରି ଅଗ୍ନିସ୍ରାବୀ ସମର-ବର୍ଣ୍ଣନା ନିପୁଣତା ପ୍ରକାଶ କରିଅଛି, ତାହା ଭାବିଲେ ବିସ୍ମିତ ହେବାପାଇଁ ପଡ଼େ । 'ଏପରିକି' 'ବିଲଙ୍କା ରାମାୟଣ' ଓ 'ଚଣ୍ଡୀ ପୁରାଣ'ରେ ନାରୀ ଶକ୍ତିର ଯେପରି ଉନ୍ମେଷ ଘଟିଛି, ଅନ୍ୟାୟର ପ୍ରତିରୋଧ ପାଇଁ "ନାରୀ ମଧ୍ୟ ଅସ୍ତ୍ରଧାରଣ କରିପାରେ, ଏଇ ଧାରଣାର ରୂପକତା ଯେପରି ପ୍ରକାଶ ପାଇଅଛି, ତାହା ହିଁ ପ୍ରମାଣ କରୁଅଛି ଯେ ଓଡ଼ିଶାର ଏକ ସୁଦୃଢ଼ ସାମରିକ ପରଂପରାର ସାରଳାଦାସ ଥିଲେ ଯଥାର୍ଥ ଉତ୍ତରାଧିକାରୀ । ତାଙ୍କ ସାହିତ୍ୟ-କୃତି ଶ୍ରେଷ୍ଠ ହୋଇଉଠିଛି ଏଇ ପରଂପରାର ଯଥାର୍ଥ ସାରସ୍ୱତ ଉଦ୍ଧରଣ ।

ବଳରାମ ଦାସଙ୍କ 'ଦାଣ୍ଡୀ ରାମାୟଣ'ରେ ପ୍ରଦତ୍ତ ଯୁଦ୍ଧର ବର୍ଣ୍ଣନା ପାଠକ ମନରେ ଭୟ ସଞ୍ଚାର କରିଥାଏ । ଜୀବନ ଆଉ ଯୁଦ୍ଧ– ଏହା ହିଁ ଯେମିତି ଥିଲା ସେ କାଳର ସାରସ୍ୱତ ସନ୍ଦେଶ । ପୌରାଣିକ ବର୍ଣ୍ଣନା ସମୂହର ରୂପକତା ମଧ୍ୟରେ ଜାତୀୟ ଜୀବନର ନିଗୂଢ଼ ଅଭିପ୍ସା । ସେସବୁ କାବ୍ୟରେ ଜୀବନ୍ତ ହୋଇ ଉଠିଅଛି । ବଳରାମ

ଦାସଙ୍କ ଅସ୍ତ୍ରଶସ୍ତ୍ର ବର୍ଣ୍ଣନା ପ୍ରାଚୀନ ଓଡ଼ିଆ ଜାତିର ସାମରିକ ଅସ୍ତ୍ରଶସ୍ତ୍ରର ଯେପରି ଏକ ଚମତ୍କାର ସୂଚୀପତ୍ର । ବଳରାମ ଦାସଙ୍କଠାରୁ କବି ବ୍ରଜନାଥ ବଡ଼ଜେନାଙ୍କ ପର୍ଯ୍ୟନ୍ତ ଓଡ଼ିଆ ସାହିତ୍ୟରେ ସମର ଚିତ୍ରର ଦାରିଦ୍ର୍ୟ ଅନୁଭୂତ ହୋଇଥାଏ । ବସ୍ତୁତଃ, ଷୋଡ଼ଶ ଶତାବ୍ଦୀର ପଞ୍ଚସଖା ସାହିତ୍ୟ ଓ ତା'ପରେ ରୀତିଯୁଗ ସାହିତ୍ୟରେ ସମର ଚିତ୍ରର ପ୍ରାଧାନ୍ୟ ନ ରହିବାହିଁ ସ୍ୱାଭାବିକ । ଓଡ଼ିଆ ସାହିତ୍ୟର ଇତିହାସରେ ଏହି ଦୁଇଟି ଯୁଗ ତା'ର ଯେଉଁସବୁ ବୈଶିଷ୍ଟ୍ୟପାଇଁ ଚିହ୍ନିତ ହୋଇଅଛୁ ତାହା ହେଲା – ସାହିତ୍ୟରେ ଧର୍ମଧାରାର ପ୍ରକାଶ ଓ ରୀତିକ୍ଷେତ୍ରରେ ବିପ୍ଳବ । ଚୈତନ୍ୟଙ୍କର ଓଡ଼ିଶା ଆଗମନ ଓ ପରେ ପରେ ଓଡ଼ିଶାରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରସାର ଓଡ଼ିଶାର କ୍ଷାତ୍ରଧର୍ମରେ ଆଣିଥିଲା ଅଭୂତପୂର୍ବ ଶିଥିଳତା । ଓଡ଼ିଶାର ପୌରୁଷ ଆଉ କରବାଳରେ ନୁହେଁ, କରତାଳ ଭିତରେ ହିଁ ଯେପରି ଆତ୍ମାରୋପନ କରି ବସିଲା । ଏକ ଅତୀନ୍ଦ୍ରିୟ ଅଜଣା ଜଗତର ସନାତନ ଆକର୍ଷଣ । ଓଡ଼ିଶାର ରାଜା ତଥା ପ୍ରଜାମାନଙ୍କ ଆଖିରେ ସୃଷ୍ଟି କରି ବସିଲା ଏପରି ଏକ ବିଚିତ୍ର ଇନ୍ଦ୍ରଜାଲ, ଯାହାର ପରିବେଶରେ ସମରସଜ୍ଜାର ଆଉ ଆବଶ୍ୟକତା ନ ଥିଲା । ପରେ ପରେ ଓଡ଼ିଶା ହେଲା ମୋଗଲ ଶାସନାଧୀନ । ମୋଗଲ-ମାନଙ୍କର ହିନ୍ଦୁ ଦଳନ ନୀତି ଓ ତତ୍କାଳୀନ ରାଜନୈତିକ ଓ ସାମାଜିକ ପୃଷ୍ଠଭୂମିରେ ବର୍ଦ୍ଧରୋଚିତ ଅମାନୁଷିକ ଲୁଣ୍ଠ, ତରାଜ, ହତ୍ୟା, ନାରୀଧର୍ଷଣ ପ୍ରଭୃତି ଓଡ଼ିଶାର ଜନ-ଜୀବନରେ ଏକପ୍ରକାର ସନ୍ନ୍ୟାସବାଦ ସୃଷ୍ଟି କରିଥିଲା । ଓଡ଼ିଶାର ଜନ-ଜୀବନରେ ସେତିକ ଆଉ ଜିଜ୍ଞାସା ନ ଥିଲା । ଉପସ୍ଥିତ ପରିସ୍ଥିତିରେ, ପ୍ରାଣଧାରଣ କେମିତି କରାଯିବ, ତାହା ହିଁ ଥିଲା ସବୁଠାରୁ ବଳି ଅସ୍ୱସ୍ତିକର ପ୍ରଶ୍ନବାଚୀ । ସୁତରାଂ ଏପରି ପରିବେଶରେ ଓଡ଼ିଶାରେ ଆଉ ଯୁଦ୍ଧର କୌଣସି ପ୍ରୟୋଜନ ନ ଥିଲା କିମ୍ବା ସେଥିପାଇଁ କୌଣସି ମାନସିକ ପ୍ରସ୍ତୁତି ଓ ଅଭିଳାଷ ମଧ୍ୟ ନ ଥିଲା । ତେଣୁ ଜାତୀୟ ଜୀବନରେ କ୍ଷାତ୍ରଧର୍ମର ଶିଥିଳତା ତତ୍କାଳୀନ ସାହିତ୍ୟରେ ସମର ଚିତ୍ରର ଦାରିଦ୍ର୍ୟ ପାଇଁ ଯେ ଅନେକ ପରିମାଣରେ ଦାୟୀ, କହିବା ନିଷ୍ପ୍ରୟୋଜନ ।

କିନ୍ତୁ ସେତିକ ବହିଃ ଆକ୍ରମଣ ଓ ଆଭ୍ୟନ୍ତରୀଣ ଦ୍ୱନ୍ଦ୍ୱର ଆଶଙ୍କା ନ ଥିବା ଏକ ବିଚିତ୍ର ରାଜନୈତିକ ପରିସ୍ଥିତିରେ ସମର ସଜ୍ଜାର ଆବଶ୍ୟକତା ହୁଏତ ନ ଥିଲା । କିନ୍ତୁ କାବ୍ୟ କବିତାରେ କାମଯୁଦ୍ଧର ବର୍ଣ୍ଣନା ଦେବାରେ କବିମାନଙ୍କୁ ଆଉ ତର ସହି ନ ଥିଲା । ସେଥିପାଇଁ ରୀତି-କାବ୍ୟରେ ଶୃଙ୍ଗାରିକତାର ଅନ୍ତରାଳରେ କାମଯୁଦ୍ଧର ବିପୁଳ ବର୍ଣ୍ଣନା ପରିଲକ୍ଷିତ ହୋଇଥାଏ । ଏପରିକି ଯୁଦ୍ଧଯାତ୍ରା ସମୟରେ ସୁନ୍ଦରୀ ରମଣୀ ଚିନ୍ତାର ରମଣୀୟତା ମଧ୍ୟରେ ସୈନ୍ୟ ସାମନ୍ତଙ୍କର ଚିନ୍ତାଧାରା ବନ୍ଦ ହୋଇ ପଡ଼ିଥିଲା । ଉପେନ୍ଦ୍ର ଭଞ୍ଜଙ୍କ 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ର ୬୭ ଛାନ୍ଦରୁ ପ୍ରଦତ୍ତ ନିମ୍ନୋକ୍ତ ଉକ୍ତିରୁ ଏହା ସ୍ପଷ୍ଟ ହେବ—

ଖଡ଼୍ଗ ଫଳକ ଢଳକ ଶୂଳ ବାଣ କମାଣ
ଭ୍ରୂନେତ୍ର ମେଳ
ତୂଣୀର ନାସା ଅତି ମଞ୍ଜୁଳ କୁନ୍ତ
କଟାକ୍ଷ ଯେ
ଚତୁରଙ୍ଗଧ ବାଦ୍ୟ ବାଜେଣୀ ବଳୟ ବାଳା
ମୃଦୁ କଙ୍କିଣୀ
ଛତ୍ରାଳ ଚେଳ ଅଞ୍ଚଳ ଜାଣି ଚଞ୍ଚଳ
ଦକ୍ଷ ଯେ ।
ଉଚ୍ଚ ଶତାଙ୍ଗ କୁଚ ବଉଳ ଝଙ୍ଗ ଯେ
ନଖେ ଭୂଷା ବଦ୍ରୁମ ମାଳିକା ହାସ ଯେ ।
ଚଳ ଚ.ଟର୍ଜ ପାଶ ଯେ ଶ୍ରୋଣୀ ତୁରଙ୍ଗ ରଙ୍ଗ
ତରଙ୍ଗ ମତ
ମତ୍ତ ମାତଙ୍ଗ ଗମନ ଗତି ସଙ୍ଗମେ ହୃଦ ଯେ ॥

ଏହାପରେ ଯଥାର୍ଥ ସମର ବର୍ଣ୍ଣନାର ସ୍ୱାଦ ମିଳେ ପୁରୁଷୋତ୍ତମ ଦାସଙ୍କ 'କାଞ୍ଚି-କାବେରୀ'ରେ । ରାଜା ପୁରୁଷୋତ୍ତମ ଦେବଙ୍କର କାଞ୍ଚି ଅଭିଯାନର ବିଷୟବସ୍ତୁ ଭିତ୍ତିରେ ଏହି ଗ୍ରନ୍ଥଟି ପରିକଳ୍ପିତ । ଓଡ଼ିଶାର ଲୋକ-ଚିତ୍ତରେ ଏହି କାହାଣୀର ଅବିସମ୍ବାଦିତ ପ୍ରଭାବ ସମ୍ଭବତଃ କବିଙ୍କୁ ଏପରି କାବ୍ୟ ରଚନାର ପ୍ରେରଣା ପ୍ରଦାନ କରିଅଛି । ଏହି କାବ୍ୟରେ ଓଡ଼ିଆ ଜାତିର ଚିର ଆରାଧ୍ୟ ଦେବତା ଜଗନ୍ନାଥ, ବଳଭଦ୍ର ବଡ଼ଦେଉଳର ବଡ଼ଠାକୁର ଗୁଡ଼ି ଯୋଦ୍ଧୃବେଶରେ ଯେପରି କାଞ୍ଚି ଅଭିଯାନକରି, ଅପୂର୍ବ ସମର ନିପୁଣତାର ପରିଚୟ ଦେଇଅଛନ୍ତି, ତାହା ହିଁ ଏହି କାବ୍ୟକୁ ଦେଇପାରିଛି କାବ୍ୟିକ ପୁରୁସ୍କାର । ପୁରୁଷୋତ୍ତମ ଦେବ ନୁହନ୍ତି, ଜଗନ୍ନାଥଙ୍କ ଖଡ଼୍ଗ ହିଁ ଏହି କାବ୍ୟର ଯଥାର୍ଥ ଅଭିଜ୍ଞାନ ।

ବସ୍ତୁତଃ ସମର ତରଙ୍ଗ ରଚନା ପୂର୍ବରୁ ଏହା ହିଁ ହୋଇଛି ଓଡ଼ିଆ ସାହିତ୍ୟରେ ମୋଟାମୋଟି ସମର ବର୍ଣ୍ଣନାର ଐତିହ୍ୟ । ଏପରି ଏକ ପରିସ୍ଥିତି ମଧ୍ୟରେ କିନ୍ତୁ ବ୍ରଜନାଥଙ୍କ 'ସମର ତରଙ୍ଗ' ଓଡ଼ିଆ ଜାତିର ଦୁର୍ଜୟ ପୁରୁଷକାରର ଏକ ଅନୁପମ କାବ୍ୟଲିପି, 'ସମର କୁଶଳୀ ଏକ ଐତିହାସିକ ଜାତିର ଦୁର୍ଜ୍ଜୟ ଅଭିମାନ । ଏହି ରଚନାଟିକୁ କେବଳ ସାର୍ଥକ ଓ ରସୋତ୍ତୀର୍ଣ୍ଣ କରି ନାହିଁ, ଇତିହାସର ସେହି ଘୋର ମରୁଡ଼ି କାଳରେ ସୂଚିତ ଦେଇଛି ନୂତନ ଫସଲର ସନ୍ଧାନ ।

ଏକ ବିଚିତ୍ର ସାମାଜିକ ଓ ଐତିହାସିକ ପୃଷ୍ଠଭୂମିରେ 'ସମର ତରଙ୍ଗ' କାବ୍ୟ ପରିକଳ୍ପିତ । ମରହଟ୍ଟା ଶାସନ ଅମଳର କଥା ; କିନ୍ତୁ ସେ ଅମଳ ଓଡ଼ିଶାରେ ଯେ ଏକ ଭୟଙ୍କର ଅଧ୍ୟାୟ ସଂଯୋଜିତ କରିଅଛି, ଏଥିରେ ସନ୍ଦେହ । ଓଡ଼ିଶାରେ

ଯେତେବେଳେ ଶାସନ କହିଲେ ହତ୍ୟା, ଲୁଟ ତରାଜ ଓ ଲୁଣ୍ଠନର ଇତିହାସ। ମରହଟ୍ଟାମାନଙ୍କର ବାରମ୍ବାର ଓଡ଼ିଶା ଆକ୍ରମଣ ଓ ଲୁଣ୍ଠନ ଯେତେବେଳେ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନକୁ ଏକପ୍ରକାର ବିପର୍ଯ୍ୟସ୍ତ କରିଦେଇଥିଲା । ନିର୍ଦ୍ଦିଷ୍ଟ ଓ ସୁପରିଚାଳିତ କେନ୍ଦ୍ର ଶାସନର ଅଭାବ ଦେଶରେ ସୃଷ୍ଟି କରିଥିଲା ଚରମ ଅଶାନ୍ତି ଓ ଅରାଜକତା । ପୁଣି ଏହା ସାଙ୍ଗକୁ ପ୍ରାୟ ଲାଗିରହିଥିଲା ଗଡ଼ଜାତ ରାଜାମାନଙ୍କର କ୍ଷୁଦ୍ର କ୍ଷୁଦ୍ର ସ୍ୱାର୍ଥର ସଂଘର୍ଷ । ନିଜ ନିଜ ଭିତରେ ଏସବୁ କଳହ ଓଡ଼ିଶାର ରାଜନୈତିକ ଐକ୍ୟକୁ ଯେ ଦୁର୍ବଳତର କରିଥିଲା, ତାହା ନୁହେଁ, ଏହି କାରଣରୁ ବେଳେ ବେଳେ ମରହଟ୍ଟାମାନଙ୍କ ସହ ମଧ୍ୟ ସଂଘର୍ଷ ଲାଗି ଯାଉଥିଲା । ଏହିପରି ଏକ ଯୁଦ୍ଧର କାବ୍ୟରୂପ ହିଁ 'ସମର ତରଙ୍ଗ' । ଏହି ଯୁଦ୍ଧ ହୋଇଥିଲା ମରହଟ୍ଟା ସୁବାଦାର ଓ ଢେଙ୍କାନାଳର ତତ୍କାଳୀନ ନରପତି ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ମଧ୍ୟରେ । ତ୍ରିଲୋଚନ ମହୀନ୍ଦ୍ର ବାହାଦୂର ୧୭୬୨ରୁ ୧୭୯୫ ପର୍ଯ୍ୟନ୍ତ ଢେଙ୍କାନାଳ ସିଂହାସନ ଅଳଙ୍କୃତ କରିଥିଲେ । ଯଥା ସମୟରେ ପେଶ୍‌କସ ଟଙ୍କା ନ ଦେବା ଫଳରେ ମରହଟ୍ଟା ସୁବାଦାର ଢେଙ୍କାନାଳ ଆକ୍ରମଣ କଲେ । ଏହା ୧୭୮୧ ମସିହାର ଘଟଣା ସୁଦୀର୍ଘ ଅଠର ଦିନ ଦ୍ୟାପି ମରହଟ୍ଟା ସୈନ୍ୟ ଦୁର୍ଗ ଅବରୋଧ କରିଥିଲେ । ଏହି ସମୟରେ ଢେଙ୍କାନାଳ ରାଜାଙ୍କର ମରହଟ୍ଟାମାନଙ୍କ ସହ ପ୍ରଚଣ୍ଡ ଯୁଦ୍ଧ ହୋଇଥିଲା । କବି ବ୍ରଜନାଥ ସମ୍ଭବତଃ ଥିଲେ ଏହି ଯୁଦ୍ଧର ପ୍ରତ୍ୟକ୍ଷଦର୍ଶୀ । ସେଥିପାଇଁ ଏ ଯୁଦ୍ଧ ସହ କିଛି ପରିମାଣରେ ସେ ସଂପୃକ୍ତ ହୋଇଥିବା ଆଶା କଲେ ମଧ୍ୟ ଅନ୍ୟାୟ ହେବ ନାହିଁ । ବୋଧହୁଏ ସେହି କାରଣରୁ 'ସମର ତରଙ୍ଗ'ରେ ସମର ବର୍ଣ୍ଣନାର ସାମୟିକତା ପ୍ରାଧାନ୍ୟ ଲାଭ କରିଅଛି ।

ବ୍ରଜନାଥଙ୍କ ସମର ବର୍ଣ୍ଣନା କୁଶଳତାର ଏହା ହିଁ ଅନ୍ୟତମ ମୁଖ୍ୟ କାରଣ । ସମର ବର୍ଣ୍ଣନାରେ ସାରଳା, ବଳରାମ ଯେ ଯଥେଷ୍ଟ କୃତିତ୍ୱର ପରିଚୟ ଦେଇଅଛନ୍ତି ସନ୍ଦେହ ନାହିଁ; ମାତ୍ର ସେମାନଙ୍କ ରଚନାରେ 'କଳ୍ପନା'ର ମାତ୍ରାଟା ହିଁ ବେଶି । ମହାଭାରତ, ଚଣ୍ଡୀ ପୁରାଣ, ବିଲଙ୍କା ରାମାୟଣ କିମ୍ବା ଦାଣ୍ଡି ରାମାୟଣ ପ୍ରଭୃତି ପୌରାଣିକ ବିଷୟବସ୍ତୁ ଆଧାରିତ । ଏସବୁ ବିଷୟର ବିନ୍ୟାସ ଯେ ଅଧିକ କବି-କଳ୍ପନାର ଅପେକ୍ଷା ରଖେ, କହିବା ନିଷ୍ପ୍ରୟୋଜନ । ରାମ-ରାବଣ ବା କୁରୁ ପାଣ୍ଡବ ଯୁଦ୍ଧ କବି ସ୍ୱଚକ୍ଷୁରେ ଦେଖି ନାହାନ୍ତି । ନିଜ ଜାତିର ସାମରିକ ପରଂପରା ଓ କଳ୍ପନାର ସମବାୟ ହିଁ ସେହିସବୁ ପୌରାଣିକ କୃତିମାନଙ୍କର ସମର ବର୍ଣ୍ଣନାର ପୁଞ୍ଜି । ମାତ୍ର ବ୍ରଜନାଥ 'ସମର ତରଙ୍ଗ' ପାଇଁ କଳ୍ପନା ନୁହେଁ ପ୍ରତ୍ୟକ୍ଷ ଦର୍ଶୀ ଅଭିଜ୍ଞତାକୁ ହିଁ କାମରେ ଲଗାଇଛନ୍ତି ବେଶି । ସମ୍ଭବତଃ, ସେଇଥିପାଇଁ ସମର ତରଙ୍ଗର ଯୁଦ୍ଧ ବର୍ଣ୍ଣନା ଏତେ ଜୀବନ୍ତ ଓ ସ୍ୱାଭାବିକ ।

'ସମର ତରଙ୍ଗ' ସାତଟି ଛାନ୍ଦରେ ବିଭକ୍ତ । ପ୍ରଥମ ଛାନ୍ଦରେ, ଢେଙ୍କାନାଳ ରାଜ୍ୟର ଭୌଗୋଳିକ ଓ ପ୍ରାକୃତିକ ବର୍ଣ୍ଣନା ସହ ରାଜବଂଶର ମହାତ୍ମ୍ୟ ପରିକୀର୍ତ୍ତିତ । ଏଥିରେ ତତ୍କାଳୀନ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ଯଶ, ପ୍ରତିଷ୍ଠା ଓ ସଦ୍‌ଗୁଣାବଳୀର ପରିଚୟ ପ୍ରଦତ୍ତ । ଏହି ସମୟରେ ମରହଟ୍ଟା ସୁବାଦାର ରାଜାରାମ ପଣ୍ଡିତ ଢେଙ୍କାନାଳ ଆକ୍ରମଣ କଲେ ; ମାତ୍ର ଢେଙ୍କାନାଳର ଲଢ଼ୁଆ ପାଇକମାନଙ୍କ ଦ୍ୱାରା ପରାସ୍ତ ହୋଇ ରାଜାରାମ କଟକ ଫେରିଗଲେ ଓ ପରେ ସୁଯୋଗ ଉଣ୍ଡି, ବର୍ଷାକାଳ ଶେଷ ହୋଇଥିବାରୁ ପୁନର୍ବାର ଢେଙ୍କାନାଳ ଆକ୍ରମଣ କଲେ । ଦ୍ୱିତୀୟ ଛାନ୍ଦରେ ସମର ସଜ୍ଜାର ନିପୁଣ ବର୍ଣ୍ଣନା ଦେଖିବାକୁ ମିଳେ । ମରହଟ୍ଟାମାନଙ୍କର ସୈନ୍ୟ-ସଜ୍ଜା, ଢେଙ୍କାନାଳ ସୈନ୍ୟମାନଙ୍କ ମନରେ ଭୀତି ସଞ୍ଚାର କରିଛି । ସେମାନେ ଭୟଭୀତ ହୋଇ ପଡ଼ିବାରୁ, ଢେଙ୍କାନାଳର ରାଜା ସେମାନଙ୍କୁ ଦେଇଛନ୍ତି ଅଗ୍ନିବର୍ଷୀ ଉଦ୍‌ବୋଧନ । ଏ ଉଦ୍‌ବୋଧନ, ସୈନ୍ୟମାନଙ୍କ ମନରେ ଫେରାଇ ଆଣିଛି ଦୃଢ଼ ମନୋବଳ । ପରବର୍ତ୍ତୀ ଦୁଇଟି ଛାନ୍ଦରେ ଦେଖିବାକୁ ମିଳେ ଭୟଙ୍କର ସମରବର୍ଣ୍ଣନାର ଚିତ୍ର । ଢେଙ୍କାନାଳ ସୈନ୍ୟମାନଙ୍କର ପ୍ରଚଣ୍ଡ ସମର ନିପୁଣତା ମରହଟ୍ଟାଙ୍କୁ ଖାଲି ବ୍ୟତିବ୍ୟସ୍ତ କରି ନାହିଁ, ସେମାନଙ୍କୁ ପାଣି ମଧ୍ୟ ପିଆଇ ଦେଇଛି । ଦୁଇ ପକ୍ଷର ପ୍ରଚୁର ସୈନ୍ୟ ମଧ୍ୟ ମୃତ୍ୟୁ ବରଣ କରିଅଛନ୍ତି । ତାପରେ ମରହଟ୍ଟା ସୁବଦାର ଆଣିଛନ୍ତି ସନ୍ଧିର ପ୍ରସ୍ତାବ; ମାତ୍ର ତାହା ଢେଙ୍କାନାଳ ରାଜାଙ୍କ ଦ୍ୱାରା ଗ୍ରହଣୀୟ ହୋଇ ନାହିଁ । ପଞ୍ଚମ ଛାନ୍ଦରେ ରାଜାଙ୍କର ପାତ୍ର ମନ୍ତ୍ରୀଙ୍କ ସହ ସନ୍ଧି ପ୍ରସ୍ତାବର ଆଲୋଚନା ପ୍ରଦତ୍ତ । ରାଜା ପ୍ରଥମେ ଅସମ୍ମତ ହୋଇଥିଲେ, ମଧ୍ୟ ପରେ ସମ୍ମତ ହୋଇଛନ୍ତି । ଷଷ୍ଠ ଛାନ୍ଦରେ ସନ୍ଧିର କାର୍ଯ୍ୟକାରିତା, ମରହଟ୍ଟାମାନଙ୍କର ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସମର କୁଶଳତାର ପ୍ରଶଂସା ପ୍ରଭୃତି ବର୍ଣ୍ଣିତ । ଏହା କେନ୍ଦୁଝର ରାଜାଙ୍କ ମନରେ ସୃଷ୍ଟି କରିଛି ପ୍ରଚଣ୍ଡ ଈର୍ଷା । କେନ୍ଦୁଝର ଢେଙ୍କାନାଳର ସମୀପବର୍ତ୍ତୀ ହୋଇଥିବାରୁ, କେନ୍ଦୁଝର ରାଜା ଢେଙ୍କାନାଳ ରାଜ୍ୟ ସୀମା ମଧ୍ୟରେ ଅଶାନ୍ତି ଉପଦ୍ରବ ସୃଷ୍ଟି କରିଛନ୍ତି । ପରିଣତିରେ ଉଭୟ ପକ୍ଷଙ୍କ ମଧ୍ୟରେ ପୁନର୍ବାର ଯୁଦ୍ଧ ହୋଇଛି ଓ ସ୍ୱାଭାବିକ ଭାବରେ ଶେଷରେ ଢେଙ୍କାନାଳ ରାଜା ହିଁ ଜୟଯୁକ୍ତ ହୋଇଛନ୍ତି । ଶେଷ ଛାନ୍ଦରେ କବି ଢେଙ୍କାନାଳ ରାଜାଙ୍କର ପ୍ରଶସ୍ତି ଗାନ କରିବା ସଙ୍ଗେ ସଙ୍ଗେ ଜାତି ଉଦ୍ଦେଶ୍ୟରେ ଥୋଇ ଯାଇଛନ୍ତି ନିଜର ବ୍ୟକ୍ତିଗତ ପରିଚୟ । ବସ୍ତୁତଃ ଏହା ହିଁ ହେଉଛି ସମର ତରଙ୍ଗର ମୋଟାମୋଟି କଥାବସ୍ତୁ ।

'ସମର ତରଙ୍ଗ' କାବ୍ୟର ଏଇ ସୀମିତ ପରିସୀମା ମଧ୍ୟରେ ଆମେ ଦୁଇଗୋଟି ଯୁଦ୍ଧର ବର୍ଣ୍ଣନା ଦେଖିବାକୁ ପାଉଁ । ଗୋଟିଏ ଢେଙ୍କାନାଳ ରାଜା ତ୍ରିଲୋଚନ ମହୀନ୍ଦ୍ର ବାହାଦୂରଙ୍କ ସହ ମରହଟ୍ଟା ସୁବାଦାରଙ୍କର ଓ ଅନ୍ୟଟି କେନ୍ଦୁଝର ରାଜାଙ୍କ ସହ ତ୍ରିଲୋଚନ ମହୀନ୍ଦ୍ର ବାହାଦୁରଙ୍କର । ଏ ଦୁଇଟି ଯୁଦ୍ଧ ମଧ୍ୟରୁ ପ୍ରଥମଟିର ଗୁରୁତ୍ୱ ହିଁ

ବେଶି । କାରଣ ଏ ଯୁଦ୍ଧ କେବଳ ଢେଙ୍କାନାଳର ନୁହେଁ ଶହ ଶହ ବର୍ଷର ଏକ ଐତିହାସିକ ବୀର ଜାତିର ସମର ଐତିହ୍ୟ ସହ ଯେପରି ଘଟିଅଛି । ସେହି ଦୃଷ୍ଟିରୁ ବିଚାର କଲେ 'ସମର ତରଙ୍ଗ' ସମର ବର୍ଣ୍ଣନା କୁଶଳତା ଓ ଐତିହାସିକ ଗୁରୁତ୍ୱର ମୁଦ୍ରାଙ୍କ ମଧ୍ୟ ବହନ କରିଅଛି । ତେଣୁ ସମର ତରଙ୍ଗ ଯଥାର୍ଥରେ ହୋଇଉଠିଛି କଳ୍ପନାର ଚମତ୍କାରିତା । ବର୍ଣ୍ଣନାର ସ୍ୱାଭାବିକତା ଓ ଐତିହାସିକ ଗୁରୁତ୍ୱର ଏକ ସମନ୍ୱୟ ପ୍ରୟୋଗ ।

'ସମର ତରଙ୍ଗ' ବର୍ଣ୍ଣିତ ଯୁଦ୍ଧରେ ତତ୍କାଳୀନ ଅସ୍ତ୍ର ଶସ୍ତ୍ରର କେତେକ ନମୁନା ଦେଖିବାକୁ ମିଳିଥାଏ । ସେସବୁ ହେଲା—

"ତୋପ କମାଣ, ଢାଲକଟା ଗୁଣ୍ଡ
ଜଜାର ଜମ୍ବୁରା ନଳୀ ପ୍ରଚଣ୍ଡ
ପେଶକଟା ସାତହାଥ ବନ୍ଧୁକ
ଗରନାଳ ବାଣ ସବୁହିଁ ଟେକ ଯେ
ଗାରଦୀ ଧରି ବାହାରିଲେ ଯହିଁ ସେ
ବ୍ରହ୍ମାଣ୍ଡ ଦହନ୍ତି ଜାଳି ଯେ ।"

ଏସବୁ ପ୍ରାଚୀନ ଓ ଆଧୁନିକ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଦୁର୍ଦ୍ଧର୍ଷ ଢେଙ୍କାନାଳ ସୈନ୍ୟ । ମରହଟ୍ଟା ସୈନ୍ୟମାନଙ୍କୁ ଅତର୍କିତ ଆକ୍ରମଣ କରି ତାଙ୍କୁ ପରାସ୍ତ କରି ଦେଇ-ଥିଲେ । ଏହି ଯୁଦ୍ଧର ବର୍ଣ୍ଣନା ଯେପରି ପ୍ରାଞ୍ଜଳ, ସେହିପରି ଭୟାବହ ।

ଗୁଳି ଗୋଟିଏ ନ ପଡ଼େ ତଳରେ
ଯାଇ ବସଇ କାହା କପାଳରେ
କାହା ପିଠିରେ କଙ୍କାଳେ ବାହାରି
ପେଟ ଆବା ଫୁଟିଯାଏ କାହାରି ।
କେଉଁ ଲୋକର ତଣ୍ଟି ଯାଏ ଫୁଟି
ଭାଙ୍ଗି ପକାଏ କାହାର ଛକାଠି
ଯାଇଁ ବାଜଇ କାହାର ପିଠିରେ
ପିଣ୍ଡ ବନ୍ଧୁକ ଭାଗେ ସେ ଅଥିରେ
ଭାଙ୍ଗି ପକାଏ କାହା ଜାନୁହାଡ଼
ସେ ଯେ ଘୋଷରେ ହୋଇ ନଡ଼ବଡ଼ ।

× × ×

କାହା ବଦନେ ଡେରଚ୍ଛ ବାଜଇ
ଦାନ୍ତ ପାଟିରୁ ଫାଳେ ଘେନଗଲା ।
(ଶମ୍ଭୁଛନ୍ଦ)

ଓଡ଼ିଆ ବୀରମାନେ ଯେ କେବଳ ସମ୍ମୁଖ ସଂଗ୍ରାମରେ ପାରଦର୍ଶୀ ଥିଲେ ତାହା ନୁହେଁ ନାନାପ୍ରକାର ରଣ କୌଶଳରେ ମଧ୍ୟ ସେମାନେ ଥିଲେ ପ୍ରବୀଣ । ବିଶେଷକରି ଗରିଲା ଯୁଦ୍ଧ ପ୍ରଣାଳୀ ସେମାନେ ଚମତ୍କାର ଭାବରେ ଆୟତ୍ତ କରିଥିଲେ । ସୁଦୀର୍ଘ ସୁଦୀର୍ଘ ଅଠର ଦିନ ବ୍ୟାପି ମରହଟ୍ଟା ସୈନ୍ୟମାନେ ଢେଙ୍କାନାଳ ଦୁର୍ଗ ଅବରୋଧ କଲେ । ସେମାନଙ୍କ ସନ୍ଧି ପ୍ରସ୍ତାବ ଢେଙ୍କାନାଳ ରାଜାକର୍ତ୍ତୃକ ଗ୍ରହଣୀୟ ହେଲା ନାହିଁ । ପରନ୍ତୁ, ଢେଙ୍କାନାଳର ସୈନ୍ୟ ଗରିଲା ଆକ୍ରମଣ କରି ମରହଟ୍ଟା ସୈନ୍ୟମାନଙ୍କୁ ଏପରି ବ୍ୟସ୍ତ ଓ ବିବ୍ରତ କରଦେଲେ ଯେ ଛନଛନ ହୋଇ ପଳାଇ ଯିବାକୁ ସୁଦ୍ଧା ସେମାନଙ୍କର ତର ସହିଲା ନାହିଁ । କବି ବ୍ରଜନାଥ ଏହାର ଏକ ଜୀବନ୍ତ ବର୍ଣ୍ଣନା ଲେଖିଛନ୍ତି—

ଯେଉଁଣେ ବାହାରିଲେ କଟେ ହେଲେ କାଣ୍ଡ
ଗଲା ବାଜି ପଡ଼ି ମରଇ
ହଗିଗଲାବେଳେ ଜଗି ବସିଥାନ୍ତି ସାନ୍ତ
ସାବେଲୀ କରେ ନେଇ ।
ଦଶିଲେ, ଚଢ଼ି ବୁଦା ତାଙ୍କୁ ଉହାଡ଼
ଗାଧୋଇଲାଠାରେ ଧରିଥାନ୍ତି ଡରେ ଲୁହା
ଠେଙ୍ଗା ଭାଲ ଦୁଅଡ଼ ।"
(୪ର୍ଥ ଛନ୍ଦ)

ଦେଶର ସ୍ୱାଧୀନତା ରକ୍ଷା ଓ ଆତ୍ମ ବଳିଦାନ ସଂଗ୍ରାମୀ ସୈନିକର ପରମ ଧ୍ୟେୟ । 'ସମର ତରଙ୍ଗ'ରେ ସେହି ବାଣୀ ପରୋକ୍ଷ ଭାବରେ ଅଭିବ୍ୟକ୍ତିତ ହୋଇଉଠିଛି । ବିଶେଷ କରି ରାଜା ତ୍ରିଲୋଚନଙ୍କର, ତାଙ୍କର ସୈନ୍ୟମାନଙ୍କୁ ଦେଇଥିବା ଉଦ୍‌ବୋଧନ, ଦୁର୍ଦ୍ଧର୍ଷ ପୁରୁଷକାରର ଏକ ଚିରନ୍ତନ ଶିଳ୍ପସାକ୍ଷୀ ।

ହତିଆର ବାନ୍ଧିବା ଲୋକର
ମରିବାକୁ ଯେବେ ହୋଇବ ଡ଼ର
ହତିଆର ଛାଡ଼ି ଯେ ତ କମାଉ
ତେବେ ତାହାକୁ କହିବାକୁ ଆଉ
କି କ୍ଷତ୍ରିୟ ଜୀଇଁବା
ଛତ୍ରିଙ୍କ ଶୋଭା ରଣେ ପ୍ରାଣ ଦେବା । (୫ମ ଛନ୍ଦ)

ପରବର୍ତ୍ତୀ କାଳରେ ରାଧାନାଥଙ୍କ 'ମହାଯାତ୍ରା'ର ଅର୍ଜୁନ ଓ ଶିବାଜୀଙ୍କ ଉତ୍ସାହ ବାକ୍ୟରେ ଶିବାଜୀଙ୍କ କଣ୍ଠରେ ଏହିପରି ଉଦାତ୍ତ ବାଣୀ ଶୁଣିବାକୁ ମିଳେ । ସମରର ଭୟାବହତା ଭିତରେ ମଧ୍ୟ, ଜାତି-ପ୍ରେମ-ବହ୍ନିର ଏପରି ପ୍ରଜ୍ୱଳନ, କବି ବ୍ରଜନାଥଙ୍କର ପ୍ରଚଣ୍ଡ ଜାତୀୟତାର ପରିଚୟ ଦେଇଥାଏ । ଓଡ଼ିଆ ଜାତୀୟତା ସେଦିନ ଶତ ଆକ୍ରମଣ ଓ ଲାଞ୍ଛନା ମଧ୍ୟରେ ଯେପରି ବିପର୍ଯ୍ୟସ୍ତ ହୋଇ ଉଠିଥିଲା, ସେଠାରେ ଶୃଙ୍ଗାରିକତା ଅପେକ୍ଷା ବୀରତ୍ୱର ଆବଶ୍ୟକତା ଥିଲା ବେଶି । ନାରୀର ପରିତ ବାହୁ ତଳେ ରତି ବିଳାସର ସଖ୍ୟାହୀନ ସ୍ୱପ୍ନ ଦେଖି କୌଣସି ଜାତି ସ୍ୱାଧୀନ ଭାବରେ ବଞ୍ଚି ନ ପାରେ । ଜାତିକୁ ବଞ୍ଚାଇବାପାଇଁ ହେଲେ ଦରକାର ପୁରୁଷକାର । କାମଯୁଦ୍ଧ ନୁହେଁ, ସମ୍ମୁଖ ସଂଗ୍ରାମ । ସେଥିପାଇଁ ଦରକାର ପୁରୁଷପଣିଆ । ବ୍ରଜନାଥ ସମ୍ଭବତଃ ଏ ଜାତିର ଏଇ ଐତିହାସିକ ଆବଶ୍ୟକତାକୁ ଲକ୍ଷ୍ୟକରି ତାଙ୍କର 'ସମର ତରଙ୍ଗ'କୁ ଉତ୍ସର୍ଗ କରିଛନ୍ତି । ସେହିମାନଙ୍କୁ—

"ସମର ତରଙ୍ଗ ଏ ଗୀତର ନାମ
ଯେ ମରଦ ଲୋକ ସେ ଏହା ଯୋଗ୍ୟ ।"

ବୀର ରସଭରା ସମର ତରଙ୍ଗ ଯେ ଯଥାର୍ଥରେ ଏକ ନିର୍ଦ୍ଦିଷ୍ଟ ପାଠକ ଗୋଷ୍ଠୀର ଅପେକ୍ଷା ରଖେ, ଏଥିରେ ସନ୍ଦେହ ନାହିଁ ।

ଇତିହାସର ପରିବର୍ତ୍ତିତ ପରିପ୍ରେକ୍ଷୀରେ ସେଦିନ ଢେଙ୍କାନାଳର ମାନଚିତ୍ର ଉପରେ ବୋଧ ଅବୋଧ ଅନେକ ଜଟିଳ ରେଖା ଟାଣି ହୋଇଯାଇଥିଲା । ଢେଙ୍କାନାଳର ବୁକୁ ଉପରେ ଉଠିଥିଲା ଅସୁମାରି ସମରର ତରଙ୍ଗ । କବି ବ୍ରଜନାଥ ଖୁବ୍ ନିକଟରୁ ଦେଖିଥିଲେ ଗର୍ଜମାନ ସେହି ତରଙ୍ଗର ଉନ୍ମତ୍ତ ତାଣ୍ଡବ । ଜାତୀୟ ଦାୟିତ୍ୱ ସମ୍ପାଦନର ମହାନ ପୃଷ୍ଠଭୂମିରେ ଠିଆହୋଇ କବି ବ୍ରଜନାଥ, ସେ ତାଣ୍ଡବକୁ କେବଳ ପ୍ରତ୍ୟକ୍ଷ କରି ନ ଥିଲେ, ଚିତ୍ତବୃତ୍ତିର ସକଳ ଐଶ୍ୱର୍ଯ୍ୟ ନେଇ ତାହାକୁ ଅନୁଭବ ମଧ୍ୟ କରିଥିଲେ । ସମର ତରଙ୍ଗ ସେହି ଅନୁଭବର ଶାଶ୍ୱତ ଶିଳ୍ପରୂପ ଆଉ ଓଡ଼ିଶାର ସମର ସାହିତ୍ୟକୁ ତାହା ହିଁ ହେଉଛି କବି ବ୍ରଜନାଥଙ୍କ କୋଣରକା ଦାନ ।



# ଚତୁର୍ଥ ଖଣ୍ଡ

## ପ୍ରକୀର୍ଣ୍ଣକ

- ଯୁଗ ଓ ସାହିତ୍ୟ
- ଭଞ୍ଜ ସାହିତ୍ୟର ପୃଷ୍ଠଭୂମି
- ଭଞ୍ଜ ସାହିତ୍ୟରେ ନାୟିକା ବର୍ଣ୍ଣନା
- ଭଞ୍ଜ ସାହିତ୍ୟରେ ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା
- ପାରଳାଖେମୁଣ୍ଡିର ସଙ୍ଗୀତ ଚର୍ଚ୍ଚା
- ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ବସନ୍ତ ବର୍ଣ୍ଣନା

# ଯୁଗ ଓ ସାହିତ୍ୟ

ଯୁଗ ଓ ସାହିତ୍ୟର ଅଙ୍ଗାଙ୍ଗୀ ଗଢ ରହିଛି । ଧର୍ମ ଓ ସାହିତ୍ୟର ଅବିଚ୍ଛିନ୍ନ ସମ୍ବନ୍ଧ ଭଳି ଯୁଗ ଓ ସାହିତ୍ୟର ସମ୍ବନ୍ଧ ଅବିଚ୍ଛେଦ୍ୟ । ଯେକୌଣସି ଯୁଗର ସାହିତ୍ୟ ଅନୁଶୀଳନ କଲେ ସେଯୁଗର ରୁଚି, ସେ ଯୁଗର ଧର୍ମବୋଧ ଓ ସମାଜଚିନ୍ତ ଏକାଧାରରେ ସାହିତ୍ୟମୁକୁରରେ ପ୍ରତିଫଳିତ ହୋଇଥାଏ । ସର୍ବୋପରି ସାମାଜିକ ଜୀବନର ବହୁବିଧ ଚିନ୍ତ ନାନା ଆକାରରେ ସେଯୁଗର ସାହିତ୍ୟରେ ବିକଶିତ ହୋଇଥାଏ । ଜୀବନ ଯେଉଁଠି ମିୟମାଣ, ସାହିତ୍ୟ ସେଇଠି ନିସ୍ପ୍ରଭ । ତେଣୁ ସବୁଯୁଗରେ ଜୀବନର ଉପାଦାନ ନେଇ ସାହିତ୍ୟ ସୁଗଠିତ ଓ ବିକଶିତ, ପୁଣି ଜୀବନକୁ ଉନ୍ନତ କରିବାପାଇଁ ସାହିତ୍ୟର ପ୍ରଚେଷ୍ଟା । ସବୁ ଯୁଗର ସାହିତ୍ୟରେ ଉନ୍ନତ ଜୀବନ କଳା ବା କୃଷ୍ଟିର ପରିଚୟ ମିଳେ ନାହିଁ । ତେଣୁ ଯେକୌଣସି ଯୁଗର ସାହିତ୍ୟକୁ ବିଚାର କରିବାକୁ ଗଲେ ସେହି ଯୁଗର ପୃଷ୍ଠଭୂମି, ଜୀବନଦର୍ଶନ, ସଭ୍ୟତା ଓ କୃଷ୍ଟି ସମ୍ବନ୍ଧରେ ଜାଣିବାକୁ ହେବ । କାରଣ ମାନବର କଳାବୋଧ, ଜୀବନବୋଧ ଓ ସାହିତ୍ୟବୋଧ ସମସ୍ତ କୃଷ୍ଟିର ଅନ୍ତର୍ଗତ । ତେଣୁ ବିଭିନ୍ନ ଯୁଗର କୃଷ୍ଟିର ଅଙ୍ଗ ହିସାବରେ ଆମ ସାହିତ୍ୟ କିପରି କୃଷ୍ଟିକୁ ଉନ୍ନତ ଓ ପୁଷ୍ଟ କରିଛି ଓ ତାର ବିକାଶରେ ସହାୟକ ହୋଇଛି ଏବଂ ଅନ୍ୟ ଦିଗରେ କୃଷ୍ଟି ବିଭିନ୍ନ ଯୁଗରେ ସାହିତ୍ୟଧାରାକୁ କିପରି ନିୟନ୍ତ୍ରଣ କରିଛି, ତାହା ହିଁ ଆଲୋଚ୍ୟ ବିଷୟ ।

ମାନବର ଧର୍ମବୋଧ ମୁକ୍ତିର ପରିକଳ୍ପନା—ମୁକ୍ତି ଦାତାରୂପେ ସେଠାରେ ଭଗବାନ ହିଁ ଲକ୍ଷ୍ୟବସ୍ତୁ । ଏହି ମୁକ୍ତିର ପରିକଳ୍ପନା ମାନବକୁ ତାର ଧର୍ମବୋଧ ସୃଷ୍ଟିରେ ସାହାଯ୍ୟ କରିଛି । ସେ ଧର୍ମବୋଧ ପୁଣି ଆମ କଳା, ଜୀବନ ଓ ସାହିତ୍ୟକୁ ନିୟନ୍ତ୍ରଣ କରିଛି । ତେଣୁ ଧର୍ମବୋଧକୁ ଜାଗ୍ରତ କରିବା ପାଇଁ ସକଳ ପ୍ରକାର ଶିଳ୍ପର ପ୍ରଚେଷ୍ଟା । ତେଣୁ ଓଡ଼ିଆ ସାହିତ୍ୟ ସେହି ଧର୍ମବୋଧଦ୍ୱାରା ବିଭିନ୍ନ ଯୁଗରେ ନିୟନ୍ତ୍ରିତ ଓ ତାର ବିକାଶର ସହାୟକ ହୋଇଅଛି ।

ଉଦାହରଣ ସ୍ୱରୂପ ବିଭିନ୍ନ ଯୁଗର ଓଡ଼ିଆ ସାହିତ୍ୟକୁ ଅନୁଧ୍ୟାନ କଲେ ଦେଖାଯାଏ ଯେ, ସେ ସାହିତ୍ୟ ସେହି ଯୁଗର ଯୁଗଧର୍ମଦ୍ୱାରା ପ୍ରଭାବିତ

ହୋଇଅଛି । ସମଗ୍ର ଓଡ଼ିଆ ସାହିତ୍ୟକୁ ସମାଲୋଚକମାନେ ନାନା ଭାଗରେ ବିଭକ୍ତ କରିଅଛନ୍ତି । କେହି ବା ଯୁଗର ଧର୍ମ ନେଇ ସାହିତ୍ୟର ନାମକରଣ କରିଅଛନ୍ତି—ଯେପରି ବୌଦ୍ଧଯୁଗ ଓ ଶୈବଯୁଗ । ଆଉ ବା କେହି ସେହି ଯୁଗର କୌଣସି ବିଶିଷ୍ଟ ସାହିତ୍ୟ-ରଥୀର ନାମାନୁସାରେ ସେ ଯୁଗର ସାହିତ୍ୟର ନାମକରଣ କରିଥାଆନ୍ତି— ଯେପରି ସାରଳାଯୁଗ, ପଞ୍ଚସଖାଯୁଗ ଓ ଭଞ୍ଜଯୁଗ ଇତ୍ୟାଦି ।

୧୦ମ ଶତାବ୍ଦୀର ବୌଦ୍ଧଗାନ ଦୋହା ହିଁ ଆମ ଓଡ଼ିଆ ସାହିତ୍ୟର ଆଦ୍ୟ-ଭୂମିକାରୂପେ ସମ୍ମାନ ଲାଭ କରିଅଛି । ଏହି ବୌଦ୍ଧଗାନ ଦୋହାକୁ ବୌଦ୍ଧଯୁଗର ସାହିତ୍ୟ ବୋଲି ଗ୍ରହଣ କରାଯାଉଛି । ଏଥିରେ ଚୌରାଅଶୀ ସିଦ୍ଧଙ୍କ ପ୍ରଣୀତ ବହୁ ଗାଥାର ପରିଚୟ ମିଳେ । ଏଗୁଡ଼ିକୁ ଆଲୋଚନା କଲେ ଦେଖାଯାଏ ଯେ, ଏଥିରେ ବୌଦ୍ଧଧର୍ମର ଅଧଃପତିତ ଅବସ୍ଥାର ଚିତ୍ର ପ୍ରଦତ୍ତ ହୋଇଅଛି । ସିଦ୍ଧାଚାର୍ଯ୍ୟମାନେ ନିର୍ବାଣ ଓ ଅଦ୍ୱୟ ସୁଖର ସନ୍ଧାନ କରିଅଛନ୍ତି । ଏଥିରେ ସହଜଯାନ କଥା, ତାନ୍ତ୍ରିକ କ୍ରିୟାର ପ୍ରଭାବ ମଧ୍ୟ ସୁସ୍ପଷ୍ଟ । ଏହି ସିଦ୍ଧାଚାର୍ଯ୍ୟମାନଙ୍କ ମଧ୍ୟରୁ ଅନେକେ ଏହି ଓଡ଼ିଶାର ସାଧକ । ଏଥିରୁ ଯେଉଁ ସାମାଜିକ ଚିତ୍ର ମିଳେ, ତାହା ଦେଖିଲେ ମନେହୁଏ ତତ୍କାଳୀନ ସମାଜର ବିଧି ବ୍ୟବସ୍ଥାରେ ବିଶୃଙ୍ଖଳା ଦେଖା ଦେଇଥିଲା । କେବଳ ସାମାଜିକ ବିଧି ବ୍ୟବସ୍ଥା ନୁହେଁ, ପରନ୍ତୁ ଧର୍ମ ଓ ଚର୍ଯ୍ୟା-ଚର୍ଯ୍ୟାରେ ମଧ୍ୟ ଘୋର ବିଶୃଙ୍ଖଳା ଦେଖା ଦେଇଥିଲା; ଯାହା ଫଳରେ ସେତେବେଳେ ବଙ୍ଗଦେଶରେ ନାନାବିଧ ଯାନର ସୃଷ୍ଟି ହୋଇଥିଲା । ସାଧକମାନେ ଗୁହ୍ୟ ସାଧନାର ବଶବର୍ତ୍ତୀ ହୋଇ ପିଣ୍ଡବ୍ରହ୍ମାଣ୍ଡତତ୍ତ୍ୱର ବ୍ୟାଖ୍ୟାନରେ ମନ ବଳାଇଥିଲେ । ଅତି ସହଜରେ କିପରି ନିର୍ବାଣ ସୁଖ ଲାଭ ହେବ, ତାର ସନ୍ଧାନରେ ସାଧକମାନେ ଧାବମାନ ହେଉଥିଲେ। ହଠଯୋଗ ସେମାନଙ୍କର ସାଧନା-ମାର୍ଗର ଅନ୍ୟତମ ପବିତ୍ର ପନ୍ଥା ବୋଲି ବିବେଚିତ ହେଲେ ହେଁ ସହଜିଆ ମାର୍ଗର ନାନାବିଧ ତାନ୍ତ୍ରିକ ପ୍ରକ୍ରିୟା ସେମାନଙ୍କର ସାଧନାର ଭିତ୍ତିଭୂମିକୁ ଦୁର୍ବଳ, ଶିଥିଳ କରି-ଦେଇଥିଲା । ଓଡ଼ିଶାରେ କିନ୍ତୁ ସେହି ଧର୍ମର ଅନିଷ୍ଟକାରୀ ପ୍ରଭାବ ପଡ଼ିପାରିନି ନାହିଁ । ବଙ୍ଗ ଓ ଆସାମ ପ୍ରଭୃତି ପ୍ରଦେଶରେ ସାଧକମାନେ କାୟା ସାଧନାର ମହତ୍ତ୍ୱ ଉପ-ଲବ୍ଧି କରି ସାଧନସଙ୍ଗିନୀର ସାହାଯ୍ୟରେ ନିର୍ବାଣ ସୁଖ ଲାଭ କରିବାକୁ ଲାଗିଲେ । ତେଣୁ ଅଘଟମର ଲୀଳା ଦେଖାଦେଲା । ଏହି ଲୀଳାରେ ସମଗ୍ର ବଙ୍ଗ ପ୍ରଦେଶ ହେଲା ମୁଖରିତ । ତେଣୁ ଦ୍ୱାଦଶ ଯାନର ସୃଷ୍ଟି କେବଳ ବଙ୍ଗରେ ହିଁ ସମ୍ଭବପର ହେଲା । ଓଡ଼ିଶାରେ ତାର ପ୍ରଭାବ ଅତି କ୍ଷୀଣ । ତାର କାରଣ ଖ୍ରୀଷ୍ଟୀୟ ୮ମ ଶତକ ଠାରୁ ଆରମ୍ଭ କରି ୧୩ଶ ଶତକ ପର୍ଯ୍ୟନ୍ତ ଓଡ଼ିଶା ତାର ନୌବାଣିଜ୍ୟର ସମୃଦ୍ଧି ତଥା ସ୍ଥାପତ୍ୟ, କଳାନୈପୁଣ୍ୟ, ଆନ୍ତଃପ୍ରାଦେଶିକ ବାଣିଜ୍ୟର ଉନ୍ନତିରେ ମନ ବଳାଇଥିଲା । ପୁନଶ୍ଚ ଏହି ଜାତି ବହୁଦିନ ଧରି ସାମୁଦ୍ରିକ ବାଣିଜ୍ୟରେ ଉନ୍ନତି ଲାଭ କରି

ବିଭିବର ଦୁଃସାହସିକ କଳ୍ପନା କରି ଆସିଥିଲା । ବାଣିଜ୍ୟ ବ୍ୟବସାୟ ସୂତ୍ରରେ ବିଦେଶ ଗମନ କଲେ ବ୍ୟକ୍ତି ବା ଜାତି ସାହସୀ ହୁଏ, ହୃଦୟ ପ୍ରଶସ୍ତ ହୁଏ । ବହୁ ଦେଶାଗତ ଆଚାର, ବ୍ୟବହାର, ସଭ୍ୟତା, ସଂସ୍କୃତି, ସାହିତ୍ୟ, ଜାତୀୟ ସଭ୍ୟତା ଓ ସଂସ୍କୃତିର ତୁଳନା କରି ଯାହା ଗ୍ରହଣୀୟ ଓ ଉତ୍କୃଷ୍ଟ ବୋଲି ବିବେଚନା କରେ ତାକୁ ହିଁ ଗ୍ରହଣ କରି ସେ ହୁଏ ସମୃଦ୍ଧ—କଳ୍ପନା ତାର ବିରାଟ ରୂପ ଧାରଣ କରେ । ତେଣୁ ଏହି ସମୟରେ ହିଁ ଓଡ଼ିଶାରେ ଗଗନସ୍ପର୍ଶୀ ଉତ୍ତୁଙ୍ଗ କାରୁକାର୍ଯ୍ୟପୂର୍ଣ୍ଣ ମନ୍ଦିର ନିର୍ମାଣ ସମ୍ଭବପର ହୋଇଅଛି । ଜନସାଧାରଣ ବୌଦ୍ଧଧର୍ମବୋଧଦ୍ୱାରା ସେପରି ପ୍ରଭାବିତ ନ ହୋଇ ଶିଳ୍ପବାଣିଜ୍ୟ ଓ ମନ୍ଦିରନିର୍ମାଣକଳାରେ ମନ ବଳାଇଥିଲେ । ତେଣୁ ଯେଉଁ ଧର୍ମଭାବ ବଙ୍ଗୀୟ ସାଧକମଣ୍ଡଳୀ ତଥା ଜନସାଧାରଣଙ୍କୁ ଆକୃଷ୍ଟ କରିଥିଲା, ମୁଷ୍ଟିମେୟ ଭକ୍ତଙ୍କୁ ଛାଡ଼ିଦେଲେ ଆମ ଦେଶର ଜନସାଧାରଣ ଏହି ଧର୍ମକୁ ଆନ୍ତରିକ ଅଭ୍ୟର୍ଥନା ଜଣାଇ ନ ଥିଲେ । ଗଙ୍ଗବଂଶୀୟ ଓ ସୂର୍ଯ୍ୟବଂଶୀୟ ରାଜାମାନେ ମଧ୍ୟ ମନ୍ଦିର ନିର୍ମାଣରେ ମନ ବଳାଇ ଥିଲେ । ଅଷ୍ଟମ ଠାରୁ ତ୍ରୟୋଦଶ ଶତକ ପର୍ଯ୍ୟନ୍ତ-ଓଡ଼ିଶାର ଶିଳ୍ପଯୁଗର ବିକାଶ ହୋଇ-ଅଛି । ବୌଦ୍ଧଗାନ ଦୋହାପରେ ଏବେ ଶିଶୁଦେବ ନାମରେ ଏକ ଗ୍ରନ୍ଥ ଆବିଷ୍କୃତ ହୋଇଅଛି । ଏଥିରେ ମଧ୍ୟ ସେହି ପିଣ୍ଡ ବ୍ରହ୍ମାଣ୍ଡର ଓ ନିର୍ବାଣର ସ୍ୱରୂପ ବର୍ଣ୍ଣିତ ହୋଇଅଛି । ମୋଟ ଉପରେ ସେଯୁଗର ସାଧକମାନେ କାୟା ସାଧନାରେ ମାତିଥିଲେ । କ୍ରମେ କ୍ରମେ ବୌଦ୍ଧ ସହଜିଆ ଧର୍ମ ପ୍ରତି ବଙ୍ଗରେ ବି ବିଦ୍ୱେଷ ଓ ଘୃଣାଭାବ ଦେଖା ଦେଇଥିଲା । କୃଷ୍ଣଦାସ କବିରାଜଙ୍କ "ଚୈତନ୍ୟଚରିତାମୃତ"ରେ ବୌଦ୍ଧ ସାଧକମାନଙ୍କୁ ପାଷାଣ୍ଡ ବୋଲି ନାମିତ କରାଯାଇଅଛି । ଏଣେ ଓଡ଼ିଶାରେ ମଧ୍ୟ ସେମାନେ ବହୁବାର ଅତ୍ୟାଚାରିତ ହୋଇ ଏ ଭୂମି ପରିତ୍ୟାଗ କରି ଅନ୍ୟତ୍ର ଗମନ କରିବାକୁ ବାଧ୍ୟ ହୋଇ-ଥିଲେ । କ୍ରମେ କ୍ରମେ ବ୍ରାହ୍ମଣ୍ୟ ଧର୍ମ ମସ୍ତକୋତ୍ତୋଳନ କରିବାକୁ ଲାଗିଲା । ସ୍ମାର୍ତ୍ତ ଧର୍ମର ବିକାଶ ପରିଦୃଷ୍ଟ ହେଲା—ଅବଶ୍ୟ ତତ୍ପୂର୍ବରୁ ଆମ ଦେଶରେ ଶୈବଧର୍ମର ଆବିର୍ଭାବ ଘଟିଛି । ଆମ ସାହିତ୍ୟର ଚଉତିଶା ଯୁଗରେ ଯେଉଁ କେତୋଟି ଚଉତିଶା ଦେଖାଯାଏ, ସେଥିରୁ ଅଧିକାଂଶ ଶିବପାର୍ବତୀଙ୍କର ଲୀଳା ନେଇ ରଚିତ । କେତେକ ବ୍ରତ କଥାରେ ମଧ୍ୟ ଶୈବଧର୍ମର ପ୍ରଭାବ ପରିଦୃଷ୍ଟ । ବତ୍ସା ଦାସଙ୍କ କଳସା ଚଉତିଶା ଓ ସୋମନାଥବ୍ରତ କଥା, ନାରାୟଣ ଅବଧୂତ ଗୋସ୍ୱାମୀଙ୍କ ରଚିତ ରୁଦ୍ରସୁଧାନିଧିକୁ ଉଦାହରଣ ନିଆଯାଇପାରେ । ଏ ଯୁଗରେ ପୁଣି ଉଚ୍ଚକୋଟୀର ଗଦ୍ୟର ବିକାଶ ପରିଲକ୍ଷିତ । ରୁଦ୍ରସୁଧାନିଧିର ଗଦ୍ୟ ଅତ୍ୟନ୍ତ ବଳିଷ୍ଠ ।

ଚଉତିଶା ଯୁଗ ପରେ ଶାରଳା ଯୁଗ ବା ମହାକାବ୍ୟ ଯୁଗର ଅଭ୍ୟୁଦୟ ଘଟିଛି । ଏହାକୁ କେହି ପୌରାଣିକ ଯୁଗ ବୋଲି ମଧ୍ୟ ନାମିତ କରିଥାନ୍ତି । ଏ ଯୁଗର ବରେଣ୍ୟ କବି ଶୂଦ୍ରମୁନି ଶାରଳା ଦାସ । ମହାଭାରତ, ଚଣ୍ଡୀପୁରାଣ ଓ ବିଲଙ୍କାରାମାୟଣ ତାଙ୍କର

ଅନବଦ୍ୟ ଦାନ । ଓଡ଼ିଶାରେ ସୂର୍ଯ୍ୟବଂଶର ଆବର୍ତ୍ତବ ଫଳରେ ସାହିତ୍ୟର ସର୍ବବିଧ ବିକାଶ ଓ ସାହିତ୍ୟର ସମ୍ପ୍ରୀତିବିଧାନରେ ରାଜପୋଷକତା ରହିଥିଲା ।

ଏ ଯୁଗର ସାହିତ୍ୟରେ ଶାକ୍ତ ଧର୍ମର ପ୍ରଭାବ ପରିଦୃଷ୍ଟ । ମାତ୍ର ଶାକ୍ତ ଧର୍ମର ପ୍ରାଧାନ୍ୟ ଥିଲେ ହେଁ ସର୍ବଧର୍ମର ସମନ୍ୱୟ ଏ ସାହିତ୍ୟରେ ଘଟିଛି । ଶାରଳା ଦାସ ଅନ୍ତରରେ ଶାକ୍ତ ଥିଲେ ହେଁ ବିଭିନ୍ନ ଧର୍ମର ଦେବଦେବୀଙ୍କୁ ସମାନ ଶ୍ରଦ୍ଧା ଓ ଓ ସମ୍ମାନ ଦେଖାଇଅଛନ୍ତି । ଏହି ସମୟରେ ବଙ୍ଗ ଦେଶରେ ଯେଉଁ ଯେଉଁ ସାହିତ୍ୟର ପରିଚୟ ମିଳେ, ସେ ସାହିତ୍ୟରେ କେବଳ ଦେବୀର କଳ୍ପନା କରାଯାଇଅଛି । ବଙ୍ଗଳାର ଧର୍ମାନୁଷ୍ଠାନରେ ଏବଂ ସାହିତ୍ୟ କ୍ଷେତ୍ରରେ ଦେବୀର ପ୍ରାଧାନ୍ୟ, ମାତ୍ର ଆମ ସାହିତ୍ୟ କ୍ଷେତ୍ରରେ ଓ ଧର୍ମାନୁଷ୍ଠାନରେ ଦେବଦେବୀ ଉଭୟଙ୍କୁ ଗ୍ରହଣ କରାଯାଇଅଛି । ସମସ୍ତଙ୍କର ଆସନ ସମାନ ଭାବରେ ପଡ଼ିଛି । ଏହି ସମୟରେ ବ୍ରାହ୍ମଣ୍ୟ ଧର୍ମର ପୁନରୁତ୍ଥାନ ଯୋଗୁ ପଞ୍ଚଦେବତାର ପୂଜା ଅନୁସୃତ ହୋଇଅଛି । ତେଣୁ ଶାରଳା ଦାସ ଶାକ୍ତଧର୍ମର ପ୍ରଧାନ ପୃଷ୍ଠପୋଷକ ହେଲେ ହେଁ ଅନ୍ୟାନ୍ୟ ଧର୍ମକୁ ସ୍ଥାନ ଦେଇଅଛନ୍ତି । ସ୍ୱୀ ଜାତିର ମହତ୍ତ୍ୱ ବିଧାନ, ଓଡ଼ିଆ ଜାତୀୟ ଜୀବନର ପ୍ରାଣପ୍ରତିଷ୍ଠା ତାଙ୍କର ମୁଖ୍ୟତମ ଉଦ୍ଦେଶ୍ୟ ଥିଲା । ଭାରତୀୟ କୌଳିନ୍ୟର ବିଲୋପ ସାଧନ କରିବାକୁ ସେ ପ୍ରୟାସୀ ହୋଇଥିଲେ । ନୂତନ ସଂସ୍କୃତିର ସଂବାହକ ରୂପେ ଦେଖାଦେଲେ ଶାରଳା ଦାସ । ଜ୍ୟୋତିଷ ବିଦ୍ୟାଠାରୁ ଆରମ୍ଭ କରି ଗୁଣି ଗାରେଡ଼ି ଶକୁନ ବିଦ୍ୟାର ପରିଚୟ ମିଳେ ତାଙ୍କ ମହାଭାରତରୁ । ପୌରାଣିକ ଯୁଗର ପରମ୍ପରା ରକ୍ଷା କରି କବି ଜନସଂସ୍କୃତି, ସ୍ୱତନ୍ତ୍ର ଜନଧର୍ମ ଓ ଭାଷାରେ ସୃଷ୍ଟି କରାଯାଇଅଛନ୍ତି । ଏକ କଥାରେ କହିବାକୁ ଗଲେ ବୁଝାଯିବ ଯେ ଶାରଳା-ମହାଭାରତ ହିଁ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ବେଦ । ଜନ ସଂସ୍କୃତିର ଅନୁରୂପ ଗଣ ସାହିତ୍ୟର ବିକାଶ ଘଟିଛି ତାଙ୍କ ସୃଷ୍ଟିରେ । ସଂସ୍କୃତ ରାମାୟଣ, ମହାଭାରତ ଜାତକ କଥା, ହିତୋପଦେଶ ତାଙ୍କ କବି କଳ୍ପନାର ପୃଷ୍ଠଭୂମି ହେଲେ ମଧ୍ୟ ଶାରଳା ଦାସ ସ୍ୱୀୟ କଳ୍ପନାରୁ ବହୁ ବିଷୟ ସନ୍ନିବେଶିତ କରିଅଛନ୍ତି । ତାନ୍ତ୍ରିକ, ବୌଦ୍ଧ, ଶାକ୍ତ, ସନ୍ନ୍ୟାସ ଧର୍ମର ସଙ୍କେତ ପୁଣି ଗ୍ରାମ ଦେବଦେବୀ, ପର୍ବପର୍ବାଣି ଓ ଓଷା କଥାର ସଂକ୍ଷିପ୍ତ ପରିଚୟ ଦେବାକୁ ସେ କୁଣ୍ଠାବୋଧ କରି ନାହାନ୍ତି । ଜଣେ ଶୂଦ୍ର ପକ୍ଷରେ ମୁନି ଆଖ୍ୟା ଲାଭ କରିବା କମ ଗୌରବର ବିଷୟ ନୁହେଁ । ଏହା ସେ ଯୁଗରେ ହିଁ ସମ୍ଭବ ହୋଇଥିଲା । ଜାତିଭେଦ ପ୍ରଥାର ବିଲୋପ ସାଧନରେ ସେ ଚେଷ୍ଟିତ ଥିଲେ । ଶାସ୍ତ୍ରାଧିକାରରେ ସକଳ ଶ୍ରେଣୀର ଭକ୍ତର ସମାନ ଅଧିକାର । ସାମନ୍ତଶ୍ରେଣୀ ଯେତେ-ବେଳେ ମୁସଲମାନ ଆକ୍ରମଣରେ ଭୟଭୀତ, ସେତେବେଳେ ଜାତିକୁ ଉଦ୍‌ବୋଧନ ଦେବାକୁ ସେ ଲେଖିଲେ ଚଣ୍ଡୀପୁରାଣ । ମହିଷାସୁରର ଦିଗ୍‌ବିଜୟ ସେହି ମୁସଲମାନ ଆକ୍ରମଣରେ ଯଙ୍କେତ । ଶକ୍ତି ସଞ୍ଚୟ କଲେ ହିଁ ଶତ୍ରୁ ନାଶ ହେବ । ତେଣୁ ଶକ୍ତି ସ୍ୱରୂପିଣୀ ଚଣ୍ଡୀଙ୍କର ବିକାଶ ।

ସାରଳା ଯୁଗରେ ସାହିତ୍ୟ ଥିଲେ ହେଁ, ବାସ୍ତବ ଚରିତଚିତ୍ରଣ ଥିଲେ ହେଁ, ସମାଜଚିତ୍ର, ଧର୍ମ ଓ ସଂସ୍କୃତି ମୁଖ୍ୟ ସ୍ଥାନ ଅଧିକାର କରିଅଛି । ତାଙ୍କ ଯୁଗରେ ସାହିତ୍ୟ ଗୌଣ, ବୀର ରସର ପ୍ରଧାନ୍ୟ ଥିଲା ଓ ଓଡ଼ିଆ ରାଷ୍ଟ୍ର ଶକ୍ତିର ପ୍ରାବଲ୍ୟରେ ଅନ୍ୟ ଦେଶ ଭସ୍ମୀଭୂତ ଓ ପରାଜିତ ।

ଶାରଳା ଯୁଗ ପରେ ପଞ୍ଚସଖା ଯୁଗର ଆବିର୍ଭାବ ଘଟିଛି । ଏ ଯୁଗର ସାହିତ୍ୟ ଅନୁଧ୍ୟାନ କଲେ ଜଣାଯାଏ ଯେ, ଏ ଯୁଗରେ ସାହିତ୍ୟ ନାହିଁ କହିଲେ ଚଳେ । ଅବଶ୍ୟ ସଂସ୍କୃତ ଭାଗବତ ଓ ହରିବଂଶର ଅନୁବାଦ ହୋଇଅଛି । ଜଗନ୍ନାଥଙ୍କ ଲେଖନୀରେ ଭାଗବତ ପୁରାଣ ହୋଇ ନାହିଁ । ସେ ହୋଇଛି ସତେ କି କାବ୍ୟ । ତଥାପି ଏ ଯୁଗର ସମଗ୍ର ଦାନର ପରିମାଣ ଦେଖିଲେ ମନେହୁଏ, ସାହିତ୍ୟ ଅପେକ୍ଷା ଧର୍ମ ଓ ଭକ୍ତି ମୁଖ୍ୟ ସ୍ଥାନ ଅଧିକାର କରିଛି । ସମାଜ ଚିତ୍ର ସାମାନ୍ୟ ଭାବରେ ରହିଛି । ଧର୍ମଭିତ୍ତି ସଂସ୍କୃତି ମଧ୍ୟ ସମାଦର ଲାଭ କରିଅଛି । କିନ୍ତୁ ସାହିତ୍ୟ ଗୌଣ ସ୍ଥାନ ପ୍ରାପ୍ତ ହୋଇଅଛି । ଏ ଯୁଗରେ ତନ୍ତ୍ର ମନ୍ତ୍ର ଯନ୍ତ୍ର ଓ ଯୋଗର ପ୍ରଭାବ ପରିଦୃଷ୍ଟ । ଜଗନ୍ନାଥ ଧର୍ମର ବିକାଶ ଓ ମହତ୍ତ୍ୱ ପ୍ରକଟିତ ହୋଇଅଛି । ଏ ଯୁଗକୁ ମଧ୍ୟ କେହି ପୌରାଣିକ ଯୁଗ ବୋଲି ନାମିତ କରିଥାନ୍ତି । ମାତ୍ର ଏହାକୁ ପଞ୍ଚସଖା ଯୁଗ କହିବା ହିଁ ସମୀଚୀନ । ଏ ଯୁଗର କବି-ସମାଜ ସଙ୍ଗଠନର ଦାୟିତ୍ୱ ଉପଲବ୍ଧି କରିଅଛନ୍ତି । ଶାରଳା ଯୁଗ ଭଳି ଏ ଯୁଗର ସାହିତ୍ୟ ମଧ୍ୟ ଜନତାଶ୍ରୟୀ ହେବାକୁ ଚେଷ୍ଟା କରିଅଛି ।

ହିନ୍ଦୁ-ମୁସଲମାନ ଧର୍ମର ସମନ୍ୱୟ, ଉଚ୍ଚ ନୀଚ ଭେଦର ବିଲୋପ ସାଧନରେ କବିଙ୍କର ପ୍ରଚେଷ୍ଟା ଏବଂ ସବ ଧର୍ମ ସମନ୍ୱୟର ଗୋଟିଏ ଚେଷ୍ଟା ଅନ୍ତର୍ଗର୍ଭିତ । ଷୋଡ଼ଶ ଶତାବ୍ଦୀରେ ଆକବରଙ୍କ "ଦୀନ-ଇଲାହି ଧର୍ମ" ଜନସାଧାରଣଙ୍କ ହୃଦୟରେ ବିଶ୍ୱାସ ସୃଷ୍ଟି କରିଥିଲା । କ୍ରମେ କ୍ରମେ ସାହିତ୍ୟରେ ବୀରରସ ପରିବର୍ତ୍ତେ ଭକ୍ତିରସର ଆବିର୍ଭାବ ଘଟେ । ସଙ୍ଗେ ସଙ୍ଗେ ପ୍ରେମର ଭୂମିକା ସୃଷ୍ଟି ହୁଏ । ଏ ଧର୍ମ କହେ ହିନ୍ଦୁ ମୁସଲମାନ ଏକ । ଏହି ବାଣୀ ସେତେବେଳେ ଦେଶର ସମସ୍ତ ପ୍ରଦେଶରେ ବିକର୍ଷିତ ହେବାକୁ ଲାଗିଲା, ଯାହାର ପ୍ରଭାବ ସମସ୍ତ ପ୍ରାଦେଶିକ ସାହିତ୍ୟରେ ପରିଦୃଷ୍ଟ ହେଲା । ଭାରତୀୟ କୌଳିନ୍ୟର ବିଲୋପ ସାଧନ କରି ଏହା ଜନଚେତନାକୁ ଆଚ୍ଛନ୍ନ କରିପକାଇଲା ।

ସେହି ସମୟରେ ( ୧୬ଶ ଶତକରେ ) ଓ ତତ୍ପୂର୍ବରୁ ଚଣ୍ଡୀଦାସ କହିଥିଲେ —

> "ଶୁନରେ ମାନୁଷ ଭାଇ
> ସବାର ଉପରେ ମାନୁଷ ସତ୍ୟ
> ତାହାର ଉପର ନାଇଁ"

ପଞ୍ଚସଖା ଯୁଗରେ ( ୧୬ଶ ଶତକ ) ଅଚ୍ୟୁତାନନ୍ଦ ସେହି କଥାକୁ ଅନ୍ୟ ଭାବରେ କହିଲେ—

"ହିନ୍ଦୁ ଭଜେ ଅଲେଖ
ତୁରୁକ ଭଜେ ଅଲେଫ"

ମହାରାଷ୍ଟ୍ରର ନାମଦେବ କହିଲେ—

"ହିନ୍ଦୁ ପୂଜେ ଦେହରା
ମୁସଲମାନ ମସିଦ୍
ନାମା ସେଇ ସେ ହିଆ ଦେହରା ନ ମସିଦ ।"

ଏହିପରି ସନାତନବାଣୀ ଏ ଯୁଗର ସାହିତ୍ୟରେ ନିନାଦିତ ହୋଇଅଛି । ଜଗନ୍ନାଥ, ବଳରାମ, ଅଚ୍ୟୁତାନନ୍ଦ, ଯଶୋବନ୍ତ ଓ ଶିଶୁଅନନ୍ତ— ଏହି ପଞ୍ଚସଖାମାନେ ସ୍ୱ ସ୍ୱ ଲେଖାରେ ଏକ ସ୍ୱତନ୍ତ୍ର ଧର୍ମ ସୃଷ୍ଟି କରିଥିଲେ ମଧ୍ୟ ଚୈତନ୍ୟଙ୍କ ପ୍ରଭାବରୁ ନିଜ ନିଜକୁ ମୁକ୍ତ କରିପାରି ନାହାନ୍ତି । ଚୈତନ୍ୟ ଜଗନ୍ନାଥ ଦାସଙ୍କ ଅପୂର୍ବ ପ୍ରତିଭା ଦେଖି ତାଙ୍କୁ ଅତିବଡ଼ୀ ଆଖ୍ୟାରେ ଆଖ୍ୟାୟିତ କରିଥିଲେ । ପଞ୍ଚସଖାମାନେ ମୈତ୍ରୀଦେବ ଜଗନ୍ନାଥଙ୍କର ଅବତାରତ୍ୱ ଓ ଜ୍ଞାନମିଶ୍ରା ଭକ୍ତିର ପରାକାଷ୍ଠା ଦେଖାଇ ଶେଷରେ ଚୈତନ୍ୟଙ୍କ ପ୍ରବର୍ତ୍ତିତ ଶୁଦ୍ଧା ଭକ୍ତି ପ୍ରତି ଆକୃଷ୍ଟ ହୋଇଥିଲେ ବୋଲି ଅନେକ ମତପୋଷଣ କରିଥାନ୍ତି । ଏମାନଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ସ୍ୱୀୟ ଗ୍ରନ୍ଥ "ଶୂନ୍ୟସଂହିତା"ରେ ଉତ୍କଳୀୟ ବୈଶିଷ୍ଟ୍ୟ ସକାଶେ ଚୈତନ୍ୟଙ୍କ ଧର୍ମ ଗ୍ରହଣ କରିଥିଲେ ମଧ୍ୟ ଶେଷରେ ତାହା ପରିତ୍ୟାଗ କରିଛନ୍ତି ବୋଲି ଘୋଷଣା କରିଅଛନ୍ତି ।

କ୍ରମେ କ୍ରମେ ଗୌଡ଼ୀୟ ବୈଷ୍ଣବଧର୍ମ ସାହିତ୍ୟର ସୃଷ୍ଟି ଓ ଓଡ଼ିଆ ସାହିତ୍ୟରେ ତାର ପ୍ରଭାବ ପରିଦୃଷ୍ଟ ହେଲା । ଭକ୍ତଙ୍କ ଆବିର୍ଭାବ ପର୍ଯ୍ୟନ୍ତ ବହୁ ବିଶିଷ୍ଟ କବି ପଞ୍ଚସଖାଯୁଗ ପରେ ଓଡ଼ିଆରେ ଶୁଦ୍ଧାଭକ୍ତିର ନିଦର୍ଶନ ଦେଖାଇ କୃଷ୍ଣଲୀଳାର ବର୍ଣ୍ଣନା କରିଯାଇଅଛନ୍ତି । ଷୋଡ଼ଶ ଶତକର ପ୍ରଥମଭାଗଠାରୁ ଆରମ୍ଭ କରି ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗ ପର୍ଯ୍ୟନ୍ତ ଅର୍ଥାତ୍ କାବ୍ୟଯୁଗର ଆରମ୍ଭ ପର୍ଯ୍ୟନ୍ତ ଯେଉଁମାନେ ଶୁଦ୍ଧାଭକ୍ତିସମ୍ବଳିତ କାବ୍ୟକବିତା ଲେଖିଛନ୍ତି, ସେମାନଙ୍କ ମଧ୍ୟରୁ ରାୟ ରାମାନନ୍ଦ, ମାଧବୀ ଦାସୀ, ଶିଶୁଶଙ୍କର ଦାସ, ଈଶ୍ୱର ଦାସ ମହାଦେବ ଦାସ ପ୍ରଭୃତି ଭକ୍ତ କବିଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଏମାନଙ୍କ ବ୍ୟତୀତ ବହୁ କବି କାଳ୍ପନିକ ପୌରାଣିକ କାବ୍ୟ ଲେଖିବାରେ ପ୍ରଯତ୍ନ କରିଅଛନ୍ତି । ଏ ସମୟରେ ବି ଅନୁବାଦ ସାହିତ୍ୟ ସୃଷ୍ଟି ହୋଇଅଛି । ଅଧ୍ୟାତ୍ମରାମାୟଣ, ହରିବଂଶ ଓ ମହାଭାରତର ଅନୁବାଦ ଏ ସମୟରେ ଦେଖିବାକୁ ମିଳେ । ରାଧାକୃଷ୍ଣ ଓ ରାମସୀତାଙ୍କ ପ୍ରେମ କାହାଣୀକୁ ଉପଜୀବ୍ୟ କରି ବହୁ କାବ୍ୟ ଓ କବିତା ମଧ୍ୟ ରଚିତ ହୋଇଅଛି ।

ଅଷ୍ଟାଦଶ ଶତାବ୍ଦୀର ପ୍ରଥମ ଭାଗଠାରୁ କାବ୍ୟଯୁଗର ଆରମ୍ଭ ଘଟିଅଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଏ ଯୁଗର ସର୍ବଶ୍ରେଷ୍ଠ କବି ହେଉଅଛନ୍ତି ଉପେନ୍ଦ୍ର ଭଞ୍ଜ । ତେଣୁ ଏହି ଯୁଗକୁ ଭଞ୍ଜଯୁଗ ବା ରୀତିଯୁଗ ବୋଲି କୁହାଯାଇଅଛି । ରୀତିଯୁଗର ପରମ୍ପରାକୁ ନେଇ ଏ ଯୁଗର ସାହିତ୍ୟ ପରିବର୍ଦ୍ଧିତ ଓ ବିଶୋଭିତ ହୋଇଥିବାରୁ ଏ ଯୁଗର ସାହିତ୍ୟକୁ ରୀତିଯୁଗର ସାହିତ୍ୟ କହିଲେ ଅସଙ୍ଗତ ହେବ ନାହିଁ । ଏ ଯୁଗର କାବ୍ୟସରଣୀ ଏକ ଏକ ସ୍ୱତନ୍ତ୍ର ରୂପ ଗ୍ରହଣ କରିଛି । ରାମୋପାସକ କବି ଭଞ୍ଜ ରାମ ସୀତାଙ୍କର ପ୍ରେମ, ମିଳନ, ବିରହ, କାବ୍ୟ ଲେଖିଲେ ଓ ନାମ ଦେଲେ "ବୈଦେହୀଶବିଳାସ" । ଏହା ବ୍ୟତୀତ ଭଞ୍ଜ ଲାବଣ୍ୟବତୀ, କୋଟିବ୍ରହ୍ମାଣ୍ଡସୁନ୍ଦରୀ, ରସିକ-ହାରାବଳୀ ପ୍ରଭୃତି ବହୁ କାଳ୍ପନିକ କାବ୍ୟ ଆଲଙ୍କାରିକଛଟାରେ ଓ ଅଭୁତ କଳ୍ପନାଛଟା ସାହାଯ୍ୟରେ ରଚନା କରିଅଛନ୍ତି । ତାଙ୍କ ପୂର୍ବରୁ ତାଙ୍କର ବଂଶଧର ଧନଞ୍ଜୟ ଭଞ୍ଜ, ତ୍ରିବିକ୍ରମ ଭଞ୍ଜ, ଘନ ଭଞ୍ଜ ଓ ଲୋକନାଥ ଦାସ, ଦୀନକୃଷ୍ଣ ଦାସ ପ୍ରଭୃତି କବିମାନେ ଅନୁରୂପ କାବ୍ୟ ଲେଖିଯାଇଅଛନ୍ତି । ଭଞ୍ଜଙ୍କ ଉପରେ ଏମାନଙ୍କର ପ୍ରଭାବ ଉପେକ୍ଷଣୀୟ ନୁହେଁ । ତେବେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ସ୍ୱୀୟ ଅସାମାନ୍ୟ ପ୍ରତିଭା ବଳରେ ବହୁ କାବ୍ୟ ଲେଖି ନିଜର ବୈଶିଷ୍ଟ୍ୟ ଓ ମୌଳିକତା ରକ୍ଷା କରି ଯାଇଅଛନ୍ତି ।

ଅନେକେ ଅନୁମାନ କରନ୍ତି ଯେ, ଉପେନ୍ଦ୍ର ଭଞ୍ଜ ଗୌଡ଼ୀୟ ବୈଷ୍ଣବ ଭାବଧାରା ବିରୁଦ୍ଧରେ ପ୍ରବଳ ସଂଗ୍ରାମ ଚଳାଇବାକୁ ବଦ୍ଧପରିକର ହୋଇ ଏହିପରି କାଳ୍ପନିକ ଓ ଶୃଙ୍ଗାରାତ୍ମକ କାବ୍ୟ ଲେଖି ଜନସାଧାରଣଙ୍କୁ କାବ୍ୟରସ ଆସ୍ୱାଦନରେ ସାହାଯ୍ୟ କରିଥିଲେ । ଦିବ୍ୟ ବା ସ୍ୱର୍ଗୀୟ ନାୟକ ନାୟିକା ଆଣି ସେମାନଙ୍କର ପ୍ରେମ, ବିରହ ବର୍ଣ୍ଣନାରେ ଅତ୍ୟଧିକ ଶୃଙ୍ଗାରରସର ପରିଚୟ ପ୍ରଦାନପୂର୍ବକ କାବ୍ୟ ଲେଖିଲେ । ସାଧାରଣ ପାଠକ ନାସିକା କୁଞ୍ଚନ କରିପାରନ୍ତି, ଏହା ମନେକରି ଭଞ୍ଜ ଅଦିବ୍ୟ ଅର୍ଥାତ୍ ପାର୍ଥିବ ତଥା ସାଂସାରିକ ନାୟକ ନାୟିକା ଆଣି ସେମାନଙ୍କ ପ୍ରେମ, ମିଳନ ଓ ବିରହ ବର୍ଣ୍ଣନାରେ ଅତ୍ୟଧିକ ଶୃଙ୍ଗାରରସର ପରିଚୟ ଦେଲେ । ଅଥବା ଅନ୍ୟଦିଗରୁ ବିଚାର କଲେ ଏହା ସ୍ପଷ୍ଟ ହେବ ଯେ, ସଂସ୍କୃତ ଆଲଙ୍କାରିକମାନେ କାବ୍ୟରସ ପର୍ଯ୍ୟାୟରେ ଶୃଙ୍ଗାରରସକୁ ପ୍ରାଧାନ୍ୟ ଦେଇଥିବାରୁ ସେତେବେଳେ ଯେ କୌଣସି କାବ୍ୟ ରଚନା କରାଯାଉଥିଲେ ମଧ୍ୟ ସେଥିରେ କାବ୍ୟରସ ପୂର୍ଣ୍ଣ ସକାଶେ ଶୃଙ୍ଗାର ରସକୁ ହିଁ ସର୍ବାଗ୍ରେ ଗ୍ରହଣ କରୁଥିଲେ; ଅଥବା ଭଞ୍ଜ ରାଜ୍ୟଭ୍ରଷ୍ଟ ହେବାରୁ ପରାଧୀନ ମନୋବୃତ୍ତି ନେଇ ମନବିନୋଦନ ସକାଶେ କେବଳ ଶୃଙ୍ଗାରାତ୍ମକ କାବ୍ୟ ଲେଖିଗଲେ । ତେଣୁ ତାଙ୍କ କାବ୍ୟରେ କୌଣସି ଚିରନ୍ତନବାଣୀ ଆମେ ପାଉନା ବା ବର୍ଣ୍ଣନା ପ୍ରସଙ୍ଗରେ ଗତାନୁଗତିକତାକୁ ପରିହାର କରି ଭଞ୍ଜ ଏକ ନୂତନ ଦୃଷ୍ଟିକୋଣ ଦେଖାଇ ନାହାନ୍ତି ।

ଯୁଗଧର୍ମାନୁଯାୟୀ କବି ଏହିପରି କାବ୍ୟ ଲେଖିବାକୁ ବାଧ୍ୟ ହେଲେ । ଏହିପରି ନାନାବିଧ କାରଣ ସମାଲୋଚକମାନେ ଉପସ୍ଥାପିତ କରିଥାନ୍ତି । ଇତିହାସ ଆଲୋଚନା କଲେ ଜଣାଯାଏ ଯେ, ଏହିପରି ରୀତିଯୁଗର କାବ୍ୟପରମ୍ପରାର ପରିଚୟ ଅନ୍ୟ ପ୍ରାଦେଶିକ ସାହିତ୍ୟରେ ମଧ୍ୟ ପରିଦୃଷ୍ଟ ହୁଏ । ହିନ୍ଦିସାହିତ୍ୟର ଦେବ, ସୁରତି ମିଶ୍ର, କେଶବ ମିଶ୍ର, ଚିନ୍ତାମଣି, ପୁନଶ୍ଚ ମହାରାଷ୍ଟ୍ରର ଜ୍ଞାନଦେବ ପ୍ରଭୃତିଙ୍କ ସାହିତ୍ୟରେ ରୀତିଯୁଗର ଛାୟା ଦେଖିବାକୁ ମିଳେ । ପୁଣି କେହି କେହି ଦକ୍ଷିଣ ଭାରତୀୟ ତାମିଲ ସାହିତ୍ୟରେ ଏହି ରୀତିଯୁଗୀୟ ସାହିତ୍ୟର ଛାୟା ଦେଖିବାକୁ ମିଳେ ବୋଲି ମତପୋଷଣ କରୁଅଛନ୍ତି । ଦୁଇ ଦୁଇ ଅର୍ଥରେ କାବ୍ୟ କବିତା ଲେଖିବା ପୁଣି ଅଳଙ୍କାରର ସମାବେଶ କରାଇ କାବ୍ୟକୁ କ୍ଲିଷ୍ଟ କରିଦେବା ସତେକି ସେ ଯୁଗର ଲକ୍ଷଣ । ବଙ୍ଗଦେଶରେ ରୀତିଯୁଗର ପରମ୍ପରା ରକ୍ଷିତ ହୋଇ ନାହିଁ । ସବୁ ପ୍ରଦେଶ ଅପେକ୍ଷା ଓଡ଼ିଶାରେ ହିଁ ରୀତିଯୁଗର ପରମ୍ପରା ସୁରକ୍ଷିତ ଓ ପରିବର୍ଦ୍ଧିତ । ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନଙ୍କ ମତରେ ଭଞ୍ଜଙ୍କର ପୂର୍ବପୁରୁଷମାନେ ରାଜପୁତନାର କ୍ଷତ୍ରିୟ ବଂଶଜ ଅଟନ୍ତି । ରାଜପୁତନାର କ୍ଷତ୍ରିୟ ଓ ରାଜପୁତମାନେ ରୀତିଯୁଗର ଛାୟାରେ କାବ୍ୟ କବିତା ଲେଖିଥିଲେ । ଦରବାରୀ ବା ସୌଖୀନ ସାହିତ୍ୟ ସୃଷ୍ଟିରେ ସେମାନେ ମନ ବଳାଇଥିଲେ ।

ଓଡ଼ିଶାର ସାମନ୍ତ ରାଜାଙ୍କ ସହିତ ସେହି ରାଜପୁତମାନଙ୍କର ବୈବାହିକ ସମ୍ବନ୍ଧ ଥିଲା । ମୁସଲମାନ ଆକ୍ରମଣରେ ଭୟଭୀତ ଓ ପରାଜିତ ହୋଇ ସେହି ରାଜପୁତମାନେ ଓଡ଼ିଶାକୁ ପ୍ରାଣଭୟରେ ପଳାଇ ଆସିଲେ ଏବଂ ସେମାନଙ୍କ ସଙ୍ଗରେ ସେହି ପରମ୍ପରା ବା କାବ୍ୟ-ସୃଷ୍ଟିର ଧାରାକୁ ନେଇ ଆସିଥିଲେ । ରାଜପୁତ କ୍ଷତ୍ରିୟମାନେ ସାହିତ୍ୟାନୁରାଗୀ ଥିଲେ । ସେମାନଙ୍କ ଦରବାରରେ ଯେଉଁ ଚିତ୍ରାଙ୍କନ ( Paintings ବା Muslim Paintings ) ଅଛି, ସେଗୁଡ଼ିକ ଦେଖିଲେ ମନେହୁଏ ସ୍ତ୍ରୀମାନଙ୍କର ରୂପ ବର୍ଣ୍ଣନ ଏବଂ ଅଳଙ୍କାର ବିନ୍ୟାସ ଠିକ୍ ରୀତିଯୁଗର ଅନୁରୂପ । ତେଣୁ ଓଡ଼ିଶାକୁ ଆସି ମଧ୍ୟ ସେମାନେ ସେହିପରି କାବ୍ୟ ରଚନା କରିବାକୁ ଲାଗିଲେ । ଭଞ୍ଜ ବୋଧହୁଏ ସେହି ରାଜପୁତ କ୍ଷତ୍ରିୟ ବଂଶଜ । ପଞ୍ଚଦଶ ଓ ଷୋଡ଼ଶ ଶତକରେ ରାଜପୁତନାରେ ଯେଉଁ "ପିଙ୍ଗଳ" ସାହିତ୍ୟର ପରିଚୟ ମିଳେ, ସେଥିରେ ମଧ୍ୟ ରୀତିଯୁଗର ଛାୟା ପଡ଼ିଥିବାର ଅନୁମିତ ହୁଏ । ରାଜପୁତ-ମାନେ ଓଡ଼ିଶାକୁ ପଳାଇ ଆସି ରୀତିଯୁଗର ଯେଉଁ ପରମ୍ପରା ବହନ କରି ଆଣିଲେ, ସେଥିରେ ପ୍ରେମ ହିଁ ପ୍ରାଧାନ୍ୟ ଲାଭ କଲା— ଭକ୍ତି ବଦଳରେ ପ୍ରେମର ବିକାଶ କାବ୍ୟରେ ଦେଖା ଦେଲା । ଶୃଙ୍ଗାରରସପୂର୍ଣ୍ଣ କାବ୍ୟ କବିତାରେ ଏ ଯୁଗ ମୁଖରିତ । ରୀତିଯୁଗରେ କାବ୍ୟ ଅନୁଶୀଳନ କଲେ ନିମ୍ନଲିଖିତ ଲକ୍ଷଣ ପରିଲକ୍ଷିତ ହୁଏ ।

(୧) ସଂସ୍କୃତ ସାହିତ୍ୟର ପ୍ରଭାବ ବିଶେଷତଃ (ନୈଷଧକାବ୍ୟ )

(୨) ଶୃଙ୍ଗାର ରସର ଆଧିକ୍ୟ

(୩)ସୌଖୀନ ଦରବାରୀ ସାହିତ୍ୟ

(୪)ସାଧାରଣ ସମାଜ ବା ମାନବ ଚରିତ୍ର ଚିତ୍ରଣରେ ଅଭାବ

(୫) ସନାତନୀ ବାଣୀର ଅଭାବ

(୬) କ୍ଲିଷ୍ଟଭାବ, କ୍ଲିଷ୍ଟ ଶୈଳୀ, କୃତ୍ରିମ ଆଳଙ୍କାରିକ, ଅସ୍ପଷ୍ଟ ଓ ଅବାସ୍ତବ ବର୍ଣ୍ଣନା

(୭) ପ୍ରକୃତିର ଶୃଙ୍ଗାରାତ୍ମକ ବର୍ଣ୍ଣନା

(୮) ଧର୍ମ ସ୍ଥାନରେ ଧର୍ମାଭାସ

(୯) ଧର୍ମ କେବଳ ମାନସିକ ପୃଷ୍ଠଭୂମି

(୧୦) ଜ୍ୟୋତିଷ ବିଦ୍ୟାର ପ୍ରଭାବ

(୧୧) ରୂପ ବର୍ଣ୍ଣନାରେ ସଂଯମର ଅଭାବ ଓ ଗତାନୁଗତିକତା

(୧୨) ଅଧଃପତିତ ସମାଜର ସୂଚନାତ୍ମକ ଚିତ୍ର

(୧୩) ଋତୁ ବର୍ଣ୍ଣନା ଓ ପ୍ରକୃତି ବର୍ଣ୍ଣନାରେ ମଧ୍ୟ ଅଶ୍ଳୀଳତା ଓ ଶୃଙ୍ଗାରିକତା

(୧୪) ଶୃଙ୍ଗାର ଚିତ୍ରକୁ ପୂର୍ଣ୍ଣାଙ୍ଗ କରିବା ପାଇଁ ତଥା ସାର୍ଥକ କରିବା ପାଇଁ ନାନାପ୍ରକାର ଉପମା ଅଳଙ୍କାରର ସାହାଯ୍ୟ—

ଉଦାହରଣ ସ୍ୱରୂପ—

କୁବଳୟ ଦଳ ସିନ୍ଦୂରରେ ମେଳ ହେଲା ପ୍ରାୟ କାହା ନେତ୍ର<br>
କାର ଚଞ୍ଚୁଘାତ ବିମ୍ବ ଫଳ ଖ୍ୟାତ ପୁରିଗ ଦଶନ ପତ୍ର ।<br>
ସେ ଯୁଗର କବିତା ଦର୍ଶନ ଦେଖିଲେ ପାଠକ ଆଶ୍ଚର୍ଯ୍ୟ ହେବେ ।

ଭଞ୍ଜ କବି ଲେଖିଲେ—

"ଯେ କବି ଅର୍ଥୀ ପଣ୍ଡିତ ସୁହୃଦ<br>
ରସିକ ଯେହୁ ଘେନିବ ଏ ଗ୍ରନ୍ଥ<br>
ବ୍ୟସ୍ତ ଅଳଙ୍କାର ମଣ୍ଡନ ବିଧି ନିର୍ଦ୍ଦୋଷ ବିସ୍ତର ।"

କିମ୍ବା ଲାବଣ୍ୟବତୀରେ—

"ପଦ ସରଳ ଧ୍ୱନିରେ ମାନସ ମୋହିବ"

ରସକଲ୍ଲୋଳରେ—

କେତେ କଷ୍ଟ ହୁଏ ଗୀତ ନାହିଁ ଏ ବିସ୍ତର<br>
କରନ୍ତି ନାହିଁ ସେ ଭଲ କଥାରେ ଆଦର ।

କମ୍ବା କଅ ଅକ୍ଷରେ ହୋଇଛୁ ନିସ୍ବମ
କଥା ନୁହେ ଦ୍ରବ୍ୟ ଅଦ୍ରବ୍ୟ ସମ ।
କେତେ କଇତୁକ ଅଛନ୍ତ ଏଥି
କେବଳ କ୍ଷୀର ସିନ୍ଧୁ ପ୍ରାୟେ ମନ୍ଥି
କର ରସ ଜାତ
କର ଧୀଷଣା ମନ୍ଦର ପର୍ବତ ।

ସଂକ୍ଷେପରେ କହିବାକୁ ଗଲେ କୁହାଯିବ ଯେ—ରୀତଯୁଗର ସାହିତ୍ୟରେ ଧର୍ମ ସ୍ଥାନରେ ଧର୍ମାଭାସ, ରସସ୍ଥାନରେ ରସିକତା, ସାହିତ୍ୟ ନାମରେ ଶୃଙ୍ଗାରିକତାର ଚର୍ଚ୍ଚା ମିଳେ ।

ଉକ୍ତ ଚରିତ୍ରଚର୍ଯ୍ୟଣ ଖୁବ୍ ସ୍ୱଚ୍ଛନ୍ଦ ଅଟେ । ଗୌଡ଼ୀୟ ଧର୍ମ ବିରୁଦ୍ଧରେ ତାଙ୍କର ପ୍ରତିକ୍ରିୟା—ରୀତଯୁଗକୁ ପୁନରସ୍ତ ଦୁଇ ଭାଗରେ ବିଭକ୍ତ କରାଯାଇ ପାରେ । (୧) ଭଞ୍ଜଯୁଗ (୨) ପଦ୍ୟାବଳୀ ଯୁଗ । ଭଞ୍ଜ ଯୁଗ ପରେ ପଦ୍ୟାବଳୀ ଯୁଗର ପରିଚୟ ମିଳେ । ଏହି ପଦ୍ୟାବଳୀ ଯୁଗରେ ପ୍ରେମ ବଦଳରେ ପ୍ରେମ ଭକ୍ତିର ନିଦର୍ଶନ ମିଳିଥାଏ । ଶୁଦ୍ଧାଭକ୍ତିର ଦୃଷ୍ଟାନ୍ତରେ ଏ ଯୁଗର ସାହିତ୍ୟ ମୁଖରିତ ।

ଭଞ୍ଜଙ୍କ ପୂର୍ବରୁ କେହି କେହି ପଦ୍ୟାବଳୀ ସାହିତ୍ୟ ସୃଷ୍ଟିରେ ମନ ବଳାଇଥିଲେ । ମାତ୍ର ବିଧିବଦ୍ଧଭାବରେ ଅଭିମନ୍ୟୁ, ବନମାଳୀ, କବିସୂର୍ଯ୍ୟ, ଗୋପାଳକୃଷ୍ଣ ପ୍ରଭୃତି ବୈଷ୍ଣବ କବିମାନେ ପଦ୍ୟାବଳୀ ସାହିତ୍ୟ ସୃଷ୍ଟି କରିବାକୁ ଲାଗିଲେ । ଅବଶ୍ୟ ରାୟ ରାମାନନ୍ଦ, ମାଧବୀ ଦାସୀ, ହରିହର, ଦେବଦୁର୍ଲ୍ଲଭ, ବୃନ୍ଦାବତୀଦାସୀ, ଜଗବନ୍ଧୁ ପ୍ରଭୃତି ଏ ଦିଗରେ ହସ୍ତକ୍ଷେପ କରିଥିଲେ, ମାତ୍ର ଏହାର ପରିପୂର୍ଣ୍ଣ ବିକାଶ ପରିଦୃଷ୍ଟ ହେଲା ପୂର୍ବୋକ୍ତ ବୈଷ୍ଣବ କବିମାନଙ୍କ ଲେଖନୀରେ । ପଦ୍ୟାବଳୀ ସାହିତ୍ୟ ଓଡ଼ିଶାରେ ଯଥେଷ୍ଟ ଲୋକ ପ୍ରିୟତା ଅର୍ଜନ କରିଅଛି । ତାର କାରଣ କବିମାନଙ୍କର ଭାବପ୍ରବଣତା, ଉଚ୍ଛ୍ୱାସ, ଭକ୍ତିଭାବ ବର୍ଣ୍ଣନାର ଆନ୍ତରିକତା, ସଙ୍ଗୀତଧର୍ମ, ଗତିସ୍ୱାଚ୍ଛନ୍ଦ୍ୟ, ସମ୍ବେଦନଶୀଳତା ମାନବିକ ଆବେଦନ, ହୃଦୟର ବିସ୍ତୃତ ଅନୁଭୂତିର ବ୍ୟାପକତା ଓ ଧର୍ମାନୁରାଗ ପ୍ରଭୃତି ।

ଏଗୁଡ଼ିକ ପଞ୍ଚସଖା ଯୁଗରେ ନ ଥିଲା । ଭଞ୍ଜ ଯୁଗରେ ଏହାର ସାମାନ୍ୟ ସଙ୍କେତ ମିଳେ । କିନ୍ତୁ ପରିସର ଖୁବ୍ ସଂକୀର୍ଣ୍ଣ; ମାତ୍ର ପଦ୍ୟାବଳୀ ସାହିତ୍ୟରେ ଏହାର ପୂର୍ଣ୍ଣ ବିକାଶ—ଏ ଯୁଗରେ ଧର୍ମ ଗୌଣ, ସାହିତ୍ୟ ମୁଖ୍ୟ । ଉନ୍ନତ ଓ ସାର୍ବଜନୀନ ଚିନ୍ତାର ବିକାଶ ମନସ୍ତାତ୍ତ୍ୱିକ ପ୍ରକ୍ରିୟାର ବିଶ୍ଳେଷଣ ଓ ନାନାବିଧ ଭାବର ବିକାଶ ହିଁ ଏ ସାହିତ୍ୟକୁ ଚିରନ୍ତନ କରିଅଛି ।

ଭକ୍ତିଭାବସମ୍ବଳିତ ଗୀତଧର୍ମୀ କବିତାକୁ ପଦ୍ୟାବଳୀ ସାହିତ୍ୟ ବୋଲିଯାଏ— ଏହାର ତିନୋଟି ଧାରା ଅଛି ।

(୧) ସାହିତ୍ୟିକ ଧାରା ।
(୨) ଧର୍ମ ଧାରା ।
(୩) ଦର୍ଶନ ଧାରା ।

ଓଡ଼ିଆ ପଦ୍ୟାବଳୀ ସାହିତ୍ୟ ଏହି ତିନିଧାରା ଦ୍ୱାରା ବିକଶିତ ଓ ପରିପୁଷ୍ଟି । ସମସ୍ତ ସମୟରେ ଏହି ଭକ୍ତିଭାବସମ୍ବଳିତ କବି ବ୍ୟଞ୍ଜନାରେ ମଧ୍ୟ ଶୃଙ୍ଗାରିକତାର ପରିଚୟ ମିଳେ ।

ଅବଶ୍ୟ ଯୁଗଧର୍ମ ଦ୍ୱାରା ଏହା ସମର୍ଥିତ ବୋଲି କେହି କେହି ମତ ବାଢ଼ିଥାନ୍ତି ।

ବୈଷ୍ଣବ ଯୁଗରେ ଏ ଯେଉଁ ବୈଷ୍ଣବ ସାହିତ୍ୟ ସୃଷ୍ଟି କରାଗଲା, ଏଥିରେ ରାଧା କୃଷ୍ଣଙ୍କର ପ୍ରଣୟ ଲୀଳା ପ୍ରଦତ୍ତ ହୋଇଅଛି । ତଥାପି ସେଗୁଡ଼ିକ ପାଠ କଲେ ମନେହୁଏ, ଯେ ସତେକି କବିମାନେ ସେମାନଙ୍କ କାବ୍ୟ ଜଗତରେ ପାର୍ଥିବ ପ୍ରେମର ନିଦର୍ଶନ ମଧ୍ୟ ଦେଇଅଛନ୍ତି । ତେଣୁ ଏ ଯୁଗର ବିଶିଷ୍ଟ କବି ରବୀନ୍ଦ୍ରନାଥ ସେ ଯୁଗର କବିଙ୍କୁ ଲକ୍ଷ୍ୟ କରି କହିଛନ୍ତି—

"ଶୁଧୁ ବୈକୁଣ୍ଠେର ତରେ ବୈଷ୍ଣବେର ଗାନ
ପୂର୍ବରାଗ ଅନୁରାଗ ମାନ ଅଭିମାନ
ଅଭିସାର ପ୍ରେମଲୀଳା ବିରହ ମିଳନ
ଏ କି ଶୁଧୁ ଦେବତାର; ଏ ସଙ୍ଗୀତ ରସ ଧାରା
ନହେ ମିଟାବାର; ଦୀନ ମର୍ତ୍ତ୍ୟବାସୀ ଏଇ ନରନାରୀଦେର
ପ୍ରତି ରଜନୀର ଆର ପ୍ରତିଦିବସେର ତୃପ୍ତ ତୃଷା ।

ବୈଷ୍ଣବ ସାହିତ୍ୟ ଏହି ରାଧାକୃଷ୍ଣଙ୍କର ପ୍ରଣୟ ଲୀଳା ବୋଲି ବୁଝିଲେ ଠିକ୍ ହେବ ନାହିଁ, ଏଥିରେ ସାଧାରଣ ନରନାରୀଙ୍କର ପାର୍ଥିବ ପ୍ରେମ ଉଚ୍ଚାରିତ । ରାଧାକୃଷ୍ଣ କେବଳ ଉପଲକ୍ଷ୍ୟ ମାତ୍ର । ମର୍ତ୍ତ୍ୟବାସୀ ନରନାରୀଙ୍କର ତୃପ୍ତ ଅତୃପ୍ତ ପ୍ରେମତୃଷା ଏଥିରେ ଭାଷା ପାଇ ଜୀବନ୍ତ ହୋଇଉଠିଛି । ଓଡ଼ିଆ ବୈଷ୍ଣବ ପଦ୍ୟାବଳୀ ସାହିତ୍ୟରେ ସେହିପରି ବହୁ କବିତା ଅଛି, ଯେଉଁଥିରେ ସବୁ କାଳର ସବୁ ଦେଶର ପ୍ରେମିକ ପ୍ରେମିକାର ବାହାର ଓ ଅନ୍ତର୍ଜଗତର ସୌନ୍ଦର୍ଯ୍ୟ ଅପରୂପ ଭାଷା ପାଇ ପ୍ରାଣବନ୍ତ ହୋଇଉଠିଛି । ବନମାଳୀ, କବିସୂର୍ଯ୍ୟ, ଗୋପାଳକୃଷ୍ଣଙ୍କ କବିତା ଏସବୁ ଧର୍ମରେ ଗୌରବାନ୍ୱିତ ।— ଏହି ଯୁଗ ପରେ ଆଧୁନିକ ଯୁଗର ସୂତ୍ରପାତ ।

# ଭଞ୍ଜ ସାହିତ୍ୟର ପୃଷ୍ଠଭୂମି

କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ପୂର୍ବରୁ ଯେଉଁ ପ୍ରକାର ସାହିତ୍ୟିକ ପରିସ୍ଥିତି ଓ କାବ୍ୟିକ ପରମ୍ପରା ବିଦ୍ୟମାନ ଥିଲା, ତାହାର ସ୍ୱାଭାବିକ ପରିଣତି ହେଉଛି ଭଞ୍ଜଙ୍କ ଦିବ୍ୟ ଲେଖନୀରୁ ବୈଦେହୀଶ ବିଳାସ, ଲାବଣ୍ୟବତୀ ଆଉ କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ ଭଳି ଉଚ୍ଚାଙ୍ଗ କାବ୍ୟର ସୃଷ୍ଟି । ପ୍ରାକ୍ ଭଞ୍ଜ ଯୁଗରେ ଓଡ଼ିଆ ଛାନ୍ଦ ସାହିତ୍ୟର ଉନ୍ମେଷ ସଙ୍ଗେ ନାନାବିଧ ବାଣୀ, ବୃତ୍ତ, ରାଗ, ତାଳ ଛାନ୍ଦାଦିର ସୃଷ୍ଟି କାବ୍ୟ-ଜଗତରେ ହୋଇସାରିଥିଲା । ଜୟଦେବଙ୍କ ଗୀତଗୋବିନ୍ଦର ପ୍ରଭାବ ଓ କ୍ଲାସିକ କାବ୍ୟ-ସାହିତ୍ୟର ଆଦର୍ଶ, ଭାରତୀୟ ସଂସ୍କୃତିର ପରମ୍ପରା, ଲୋକ ବିଶ୍ୱାସ ଓ ପୌରାଣିକତାର ଆଶ୍ରୟ ଗ୍ରହଣ ସେଯୁଗର କାବ୍ୟ-ସାହିତ୍ୟରେ ପରିଲକ୍ଷିତ ହେଲା । ଶିଶୁଶଙ୍କର, ଲୋକନାଥ ଦାସ, ତ୍ରିବିକ୍ରମ ଭଞ୍ଜ, ଅର୍ଜୁନ ଦାସ, ଅଚ୍ୟୁତ ହରିଚନ୍ଦନ ପ୍ରଭୃତିଙ୍କ କୃତିରେ ରୀତିକାବ୍ୟର ଧାରା ଅନନ୍ୟ ରୂପଶ୍ରୀରେ ବିମଣ୍ଡିତ ହୋଇଅଛି ଏବଂ ସଂସ୍କୃତ କାବ୍ୟ ସାହିତ୍ୟରେ ଅଖଣ୍ଡ ପ୍ରତିଷ୍ଠା, ଅଳଙ୍କାର ଓ ସଙ୍ଗୀତ ସାହିତ୍ୟରେ ଅସାଧାରଣ ବ୍ୟୁତ୍ପତ୍ତି ଥିବାରୁ ଭଞ୍ଜଙ୍କ ଲେଖନୀରେ ରୀତିଯୁଗୀୟ କାବ୍ୟାଦର୍ଶର ସମୁଜ୍ଜ ରୂପ ପ୍ରକଟିତ ହେଲା—

ସେ ସମୟରେ ସଂସ୍କୃତ ପଣ୍ଡିତମାନେ ମୁଖ୍ୟତଃ ନୈଷଧାଦି ଷଟ୍‌କାବ୍ୟର ଥିଲେ ପରମ ଉପାସକ । ସଂସ୍କୃତ ସାହିତ୍ୟର ଶାବ୍ଦିକତାରେ ଏମାନେ ଏତେଦୂର ମୁଗ୍ଧ ଥିଲେ ଯେ କବି କୁଳଗୁରୁ କାଳିଦାସଙ୍କ ସରଳ ଅଥଚ ରସାଳ କାବ୍ୟାବଳୀ ଲକ୍ଷ୍ୟରେ ପରିହାସରେ କହୁଥିଲେ, "ରଘୁରୀତିକାବ୍ୟମ୍ ତଦୁପରି ଟୀକା ସାପିଚ ଭାବ୍ୟା", ଅର୍ଥାତ୍ ରଘୁବଂଶ ଭଳି ଗୋଟିଏ କାବ୍ୟ, ତାରି ଉପରେ ପୁଣି ମଲ୍ଲିନାଥଙ୍କ ଟୀକା, ଆଉ ସେହି ଟୀକାକୁ ପୁଣି ପାଠ କରିବାକୁ ପଡ଼ିବ ?

ରାଜଦରବାରରେ ଏହିଭଳି ପଣ୍ଡିତମାନଙ୍କର ସମାଗମ ଓ ପ୍ରଭାବ ଦେଖିଲେ ମନେହେଉଥିଲା ଯେ ସେକାଳର ଓଡ଼ିଶାର ରାଜନ୍ୟମଣ୍ଡଳୀ ପୁଣି ସାହିତ୍ୟିକ କବି ଓ ବିଦ୍ୱଜ୍ଜନମାନଙ୍କର କେବଳ ପୃଷ୍ଠପୋଷକ ନ ଥିଲେ, ବିଦୂଷକ ଭାଷାରେ ଉଦରପୋଷକ ମଧ୍ୟ ଥିଲେ । ଅନ୍ୟ ପକ୍ଷରେ ଏହି ରାଜାମାନଙ୍କର ଦରବାରରେ ସଂସ୍କୃତ ପଣ୍ଡିତମାନଙ୍କର ଅଖଣ୍ଡ ପ୍ରତିଷ୍ଠା ଓ ଅସାଧାରଣ ପ୍ରତିପତ୍ତି ଥିବାରୁ ଓଡ଼ିଶାର ସଂସ୍କୃତ ଅନଭିଜ୍ଞ କବି ଓ

ସାହିତ୍ୟିକମାନେ ଯଥୋଚିତ ପ୍ରେରଣା ଓ ରାଜକୀୟ ପୃଷ୍ଠପୋଷକତା ଲାଭ କରିବାର ସୁଯୋଗରୁ ବଞ୍ଚିତ ହେଉଥିଲେ । ସେହି କାରଣରୁ ଅତୀତରେ ସାରଳା ଦାସଙ୍କ ସ୍ୱୀୟ ମହାକାବ୍ୟରୂପୀ ମହାଭାରତର ଉଦ୍‌ଯୋଗ ପର୍ବର କୌଣସି ଏକ ବର୍ଣ୍ଣନୀୟ ବିଷୟ ଯେପରି ପୁରୀ ମୁକ୍ତିମଣ୍ଡପ ସଭାର ପଣ୍ଡିତମଣ୍ଡଳଙ୍କୁ କୈଫିୟତ ଦେବାକୁ ପଡ଼ିଥିଲା ।

ସେହି କାରଣରୁ ପୁଣି ସୋମନାଥ ଶିଷ୍ୟ ବଳରାମ ଦାସଙ୍କୁ, ବଧୀର ମୂର୍ଖ ହରି ଦାସଙ୍କୁ ଯେପରି ମୁକ୍ତିମଣ୍ଡପସ୍ଥ ପଣ୍ଡିତସମାଜରେ ସ୍ୱୀୟ ଶକ୍ତିମତ୍ତାର ପରିଚୟ ଦେବାକୁ ପଡ଼ିଥିଲା । ପୁଣି ପଣ୍ଡିତ ଜଗନ୍ନାଥ ଦାସଙ୍କ ବିରୁଦ୍ଧରେ ସେବକ ସ୍ୱାର୍ଥସ୍ୱନ୍ଦଗ୍ରାମାନଙ୍କର ସମ୍ପର୍କରେ ପୁରୀର ରାଜାଙ୍କ ନିକଟରେ ଅଭିଯୋଗ ହେବାରୁ ଅନ୍ଧାରୀ ବନ୍ଦେ ଦ୍ୱାରା ତାହାର ପରୀକ୍ଷା କରିବାକୁ ଯାଇ ରାଜା ଘଟଣାର ଅଲୌକିକତାରେ ବିସ୍ମିତ ଓ ଶଙ୍କିତ ହୋଇ ପଡ଼ିଥିଲେ । ଏହିପରି ସଂସ୍କୃତ ସାହିତ୍ୟ ଓ ପ୍ରାକୃତ ସାହିତ୍ୟର ସମର୍ଥକମାନଙ୍କ ମଧ୍ୟରେ ଦ୍ୱନ୍ଦ୍ୱ ଯେପରି ଓଡ଼ିଶାର ଜାନପଦ ସମାଜରେ ପଞ୍ଚସଖା ଯୁଗର କାବ୍ୟକବିତା ତଥା ସାହିତ୍ୟ ଉଚ୍ଛୃଙ୍ଖଳ ହୋଇଉଠିଥିଲା । ଏହିପରି ପରମ୍ପରାର ସମାଧାନ, ଏହି ଦ୍ୱନ୍ଦ୍ୱ ବିଦ୍ୱେଷର ନିରାକରଣ, ପୁଣି ଏହିପରି ସାରସ୍ୱତ ବିଶୃଙ୍ଖଳାର ସମାଧାନ ଓ ସମୀକରଣ ଲାଗି ବିଭୁ ପ୍ରେରିତରୂପେ ଭୂମିଷ୍ଠ ହେଲେ କବିସମ୍ରାଟ ଉପେନ୍ଦ୍ର ଭଞ୍ଜ ।

ଭଞ୍ଜଙ୍କ ଆତ୍ମଜୀବନୀର ସଙ୍କେତ ତାଙ୍କର ଅଧିକାଂଶ କାବ୍ୟରେ ପ୍ରତିଫଳିତ । ପିତାମହଙ୍କର ଈର୍ଷାପୂର୍ଣ୍ଣ ସ୍ୱଗୌରବ ଗାନ ଓ ତାହାର ପ୍ରତିକ୍ରିୟା ମୂଳକ ପ୍ରଚେଷ୍ଟାରେ 'ବୈଦେହୀଶ ବିଳାସ'ର ସୃଷ୍ଟି । ସତ୍ୟ ହେଉ ବା ମିଥ୍ୟା ହେଉ ଏହା ଅନୁମାନ କରାଯାଉଛି ଯେ ସେତେବେଳେ ଭାରତର ପ୍ରାଚ୍ୟ ଭୂଖଣ୍ଡ ବା ଅଞ୍ଚଳରେ ଧାର୍ମିକ ସଂସ୍କୃତି ଯେପରି ଦ୍ୱିବିଧ ଚିନ୍ତାଧାରା ପ୍ରବାହିତ ହେଉଥିଲା । ଗୋଟିଏ ଶ୍ରୀକୃଷ୍ଣ, ଅନ୍ୟଟି ଶ୍ରୀରାମଙ୍କୁ ଯେପରି ସାମ୍ପ୍ରଦାୟିକ ଭିତ୍ତିରେ ପ୍ରତିଷ୍ଠିତ ହେଉଥିଲା । ଅଧଃପତିତ ବୌଦ୍ଧଧର୍ମ କାଳକ୍ରମେ ବୈଷ୍ଣବ ସମ୍ପ୍ରଦାୟର ଅଙ୍ଗୀଭୂତ ହୋଇ ବଙ୍ଗ ପ୍ରଭୃତି ଅଞ୍ଚଳରେ ଶ୍ରୀକୃଷ୍ଣ ଉପାସନା ମାଧ୍ୟମରେ ସୁପ୍ରତିଷ୍ଠିତ ହେବାରୁ ବୋଧହୁଏ ପରକୀୟା ପ୍ରୀତିଜନିତ ବ୍ୟଭିଚାରରୁ ସମାଜକୁ ରକ୍ଷା କରିବା ପାଇଁ ଶ୍ରୀରାମୋପାସନାମୂଳକ ସ୍ୱକୀୟା ଧର୍ମର ଉଦ୍ଭବ ହେଲା ।

ଓଡ଼ିଶାର ପ୍ରାକୃତିକ ସୀମା ଓ ପରିସ୍ଥିତି ଉପରେ ଦୃଷ୍ଟିପାତ କଲେ ଏହା ହିଁ ପ୍ରତୀୟମାନ ହୁଏ ଯେ ବାଲେଶ୍ୱର, କଟକ, ପୁରୀ ପ୍ରଭୃତି ଅଞ୍ଚଳରେ ବୈଷ୍ଣବ ଧର୍ମର ଅଖଣ୍ଡ ପ୍ରତିଷ୍ଠାର ପ୍ରତିକ୍ରିୟା ରୂପେ ମୟୂରଭଞ୍ଜଠାରୁ କେନ୍ଦୁଝର ଓ ବଉଦ ବାଟେ ଗଞ୍ଜାମ ଘୁମୁସର ପର୍ଯ୍ୟନ୍ତ ଶ୍ରୀରାମ ଧର୍ମର ପ୍ରବଳ ଉପାସନା ସ୍ରୋତ ପ୍ରବାହିତ ହେଲା । ଏବେ ମଧ୍ୟ ଦେଖାଯାଏ ଯେ ରାମ ବିଷୟକ ଅଧିକାଂଶ କାବ୍ୟ ଏ ସମସ୍ତ ଅଞ୍ଚଳରେ ବିଶେଷ କରି ଗଞ୍ଜାମ ପ୍ରଭୃତି ଅଞ୍ଚଳରେ ଅଧିକ ଭାବରେ ପ୍ରକାଶମାନ । ଧନଞ୍ଜୟ, ଉପେନ୍ଦ୍ର, କୃଷ୍ଣଚରଣ,

କୃପାସିନ୍ଧୁ (ସିନ୍ଧୁ ରମାୟଣ), କେଶବ ପଟ୍ଟନାୟକ, ସୂର୍ଯ୍ୟମଣି ଚୀଖ୍ଯ ପଟ୍ଟନାୟକ (ଅଧ୍ୟାତ୍ମ ରମାୟଣ) ପ୍ରମୁଖ ବହୁ ସୁଖ୍ୟାତ, ବଶିଷ୍ଟ କବି ଗଞ୍ଜାମ ବା ତତ୍ ସୀମାନ୍ତ ଅଞ୍ଚଳର ।

କିନ୍ତୁ ଶୈଳୀ ବିଚାରରେ ଓଡ଼ିଶାର ଆଲଂକାରିକ ପରମ୍ପରା ସର୍ବଥା ସ୍ମରଣୀୟ । ଓଡ଼ିଶାର ଅନ୍ଧକାର ଯୁଗ ଉପରେ ଆଲୋକ ସମ୍ପାତ କରିବା ସଙ୍ଗେ ସଙ୍ଗେ ସ୍ୱର୍ଗତ ପଣ୍ଡିତ ବିନାୟକ ମିଶ୍ର ଶିଳାଲେଖର ସାହଚର୍ଯ୍ୟରେ ଏ ଦେଶର ସ୍ୱଭାବ ସୁଲଭ ଆଡ଼ମ୍ବରପୂର୍ଣ୍ଣ ଶୈଳୀ ପ୍ରତି ଆମର ଦୃଷ୍ଟି ଆକର୍ଷଣ କରିଛନ୍ତି । ସଂସ୍କୃତ ଆଲଙ୍କାରିକମାନେ ମଧ୍ୟ କହିଛନ୍ତି, **"ଗୌଡ଼େ ସ୍ୱାକ୍ଷରଡମ୍ବରଃ"** ଅର୍ଥାତ୍ ଗୌଡ଼ ଦେଶମାନଙ୍କରେ (ଉତ୍କଳ ତଦନ୍ତର୍ଗତ) କାବ୍ୟ କବିତାରେ ବର୍ଣ୍ଣାବଳୀର ଆଡ଼ମ୍ବର ପ୍ରତି ଅଧିକତର ଦୃଷ୍ଟି ଦିଆଯାଇଥାଏ । କାବ୍ୟଯୁଗର ଉନ୍ମେଷ ସଙ୍ଗେ ସଙ୍ଗେ ଏହି ଅକ୍ଷରାଡ଼ମ୍ବର ପ୍ରତି ଉତ୍କଳରେ ନୈଷଧର ସମାଦର ବିଶେଷ ଭାବରେ ପରିଦୃଷ୍ଟ । ମୌଳିକ ଭାବଭୂମିରେ, ବର୍ଣ୍ଣର ବନ୍ଧ-ବିନ୍ୟାସରେ, ବିବିଧ ଅଲଙ୍କାରର ବିଚିତ୍ର ବିଳାସରେ ଲଳିତ ପଦ-କଦମ୍ବର ମଧୁର ପ୍ରୟୋଗରେ ନୈଷଧ ସମଗ୍ର ସଂସ୍କୃତ ସାହିତ୍ୟ ରାଜ୍ୟରେ ମୁକୁଟମଣି । ସେଥିପାଇଁ ଉଷାଭିଳାଷ ଠାରୁ ଆରମ୍ଭ କରି ବିଦଗ୍ଧଚିନ୍ତାମଣି ଅର୍ଥାତ କାବ୍ୟଯୁଗର ଶେଷାର୍ଦ୍ଧ ପର୍ଯ୍ୟନ୍ତ ନୈଷଧୀୟ ଶୈଳୀର ସ୍ପଷ୍ଟ ରେଖାପାତ ଦେଖିବାକୁ ମିଳେ ।

ଆଲଙ୍କାରିକ ଆଦର୍ଶବାଦ ଦୃଷ୍ଟିରୁ ବିଚାର କଲେ ଉତ୍କଳୀୟ କବି ସମାଜ ଏକ ସମନ୍ୱୟ ସମ୍ପାଦନ କରିବାକୁ ଚେଷ୍ଟା କରିଛନ୍ତି । ଅଥବା ପ୍ରସିଦ୍ଧ ଆଲଙ୍କାରିକ ମତବାଦକୁ ଯଥୋଚିତ ସମ୍ମାନ ଦେବାକୁ କୁଣ୍ଠାବୋଧ କରିନାହାନ୍ତି । ତେଣୁ ସେମାନଙ୍କର କାବ୍ୟ ସୃଷ୍ଟିରେ ଓ କାବ୍ୟର ସ୍ୱରୂପ ବର୍ଣ୍ଣନାରେ ମଧ୍ୟ ଔଚିତ୍ୟବାଦ,ଧ୍ୱନିବାଦ, ରସବାଦ, ରୀତିବାଦ ଅଲଙ୍କାରବାଦ ଓ ବକ୍ରୋକ୍ତିବାଦର ସୂଚନା ଦେଖିବାକୁ ମିଳେ । ଉଦାହରଣ ସ୍ୱରୂପ ରସକଲ୍ଲୋଳରେ ଦୀନକୃଷ୍ଣ ସ୍ୱୀୟ ରସକଲ୍ଲୋଳ କାବ୍ୟର ସପ୍ତମ ଛାନ୍ଦରେ ଉଚିତଙ୍କ ଓ ଆଦର୍ଶ କାବ୍ୟର ଧର୍ମ ଓ ସ୍ୱରୂପ ସମ୍ପର୍କରେ କହିବାକୁ ଯାଇ ପାଠକସମାଜ ରସକଲ୍ଲୋଳ ରୂପ କାବ୍ୟାଙ୍ଗନାକୁ କିପରି ଗ୍ରହଣ କରିବେ, ପ୍ରକାରାନ୍ତରେ ତାହା ନିର୍ଦ୍ଦେଶ କରିଯାଇଅଛନ୍ତି । ସମଗ୍ର ପ୍ରାଚୀନ ଓଡ଼ିଆ କାବ୍ୟ ରାଜ୍ୟରେ କାବ୍ୟାଙ୍ଗନା ସମ୍ବନ୍ଧରେ ଏ ରୂପ ଉକ୍ତି ଅପୂର୍ବ ଓ ଅନନ୍ୟ । ଏଥିରୁ କବିଙ୍କର ପାଣ୍ଡିତ୍ୟ, ଆଲଙ୍କାରିକତା ଓ ରସିକତାର ପୂର୍ଣ୍ଣ ପରିଚୟ ମିଳେ ।

କବି ଲେଖିଛନ୍ତି :—

"**କନ୍ଦର୍ପ କଳାକୁଶଳା** ହୋଇଥିବ ବାଳା,
କରୁଥିବ ଗତି ଭ୍ରୂଭଙ୍ଗ କଟାକ୍ଷ ଲୀଳା ।

**କର୍ଣ୍ଣରେ କୁଣ୍ଡଳ** ହେଉଥିବ ଦୋଲାୟିତ,
କଲେ ତା' ଦର୍ଶନ ନୋହେଁ କେଉଁ ସୁଖ ଜାତ ।

**କଣିଆଇ ଚାହୁଁ ଥିବ** ନାସିକା ପଲ୍ଲଇ,
**କହୁଥିବ ବକ୍ରବାଣୀ** ଅଳପ ଗେଲଇ ।

କର୍ଣ୍ଣ ତାହା ଶୁଣୁଥିବ ଦେଖୁଥିବ ନେତ୍ର,
କଲେ ତାରତମ ସ୍ୱର୍ଗ ସୁଖ କେତେ ମାତ୍ର ।

**କେବଳ ହିଁ ନୋହୁଥିବ ଅତ୍ୟନ୍ତ ଉଦ୍ଧତ,**
କେତେବେଳେ ନୋହୁଥିବ ଅତି ଲଜ୍ଜାବନ୍ତ ।

କହିବାକୁ କହୁଥିବ **ସ୍ନେହ ଗର୍ଭ ବାଣୀ,**
କି କରିବ ଇନ୍ଦ୍ର ସୁଖ କର୍ଣ୍ଣ ତାହା ଶୁଣି ।

ପ୍ରକାଶ ଥାଉ କି ଗୋଟିଏ ଗୋଟିଏ ପଦରେ ଗୋଟିଏ ଗୋଟିଏ ଅଳଙ୍କାରବାଦ ସୂଚିତ ଓ ଲକ୍ଷିତ ହେଉଅଛି । କନ୍ଦର୍ପ କଳାକୁଶଳା—ଏହି ଉକ୍ତିରେ **ରସବାଦ,** କର୍ଣ୍ଣରେ କୁଣ୍ଡଳ ହେଉଥିବ ଦୋଲାୟିତରେ **ଅଳଙ୍କାରବାଦ,** କଣିଆଇ ଚାହୁଁଥିବ ଏବଂ କହୁଥିବ ବକ୍ରବାଣୀ ଅଳପ ଗେଲଇରେ **ବକ୍ରୋକ୍ତିବାଦ,** କରୁଥିବ ଗଢ ଭ୍ରୂଭଙ୍ଗ କଟାକ୍ଷ ଲୀଳାରେ **ଔଚିତ୍ୟବାଦ,** କେବଳ ହିଁ ନୋହୁଥିବ ଅତ୍ୟନ୍ତ ଉଦ୍ଧତ ଏବଂ କେତେବେଳେ ନୋହୁଥିବ ଅତି ଲଜ୍ଜାବନ୍ତରେ **ରୀତିବାଦ** ଆଉ କହିବାକୁ କହୁଥିବ ସ୍ନେହ ଗର୍ଭ ବାଣୀ, କି କରିବ ଇନ୍ଦ୍ର ସୁଖ କର୍ଣ୍ଣ ତାହା ଶୁଣିରେ **ଧ୍ୱନିବାଦ** ଅତି ସୁନ୍ଦର ଓ କୌଶଳ ସହକାରେ କବି ଗୁମ୍ଫିତ କରିଅଛନ୍ତି ।

ଏହି ଭାବରେ ଅନୁପ୍ରାଣିତ ହୋଇ ଭଞ୍ଜ ସ୍ତ୍ରୀସ୍ୱ ଲାବଣ୍ୟବତୀରେ ଅନୁରୂପ ବର୍ଣ୍ଣନାର ସମାବେଶ ପୂର୍ବକ କବିତା ସୁନ୍ଦରୀର ଧର୍ମ ଲକ୍ଷଣ ସମ୍ପର୍କରେ ସ୍ୱମତ ପ୍ରଦାନ-ପୂର୍ବକ ସେହିପରି ପ୍ରଚଳିତ ଆଳଙ୍କାରିକ ମତବାଦର ସ୍ପଷ୍ଟ ଉଲ୍ଲେଖ କରିଅଛନ୍ତି ଏବଂ ତଦ୍ୱାରା କାବ୍ୟ ସୃଷ୍ଟିରେ ବିଭିନ୍ନ ଅଳଙ୍କାରବାଦର ସମନ୍ୱୟ ସମ୍ପାଦନ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଆମ ଦେଶର କାବ୍ୟ ପରମ୍ପରାରେ ଏହି ସମନ୍ୱୟବାଦ ହିଁ ପ୍ରାଧାନ୍ୟ ଲାଭ କରିଛି । ସେଥିଯୋଗୁ ଭଞ୍ଜ କହିଛନ୍ତି—"ମୂର୍ତ୍ତିମନ୍ତ କରି ମୃଦୁ ଗୀତ ବିସ୍ତାରଇ, ଏଣୁକରି ଥିବ ଅଳଙ୍କାର ଯୁକ୍ତ ହୋଇ । ପଦ ସରଳ ଧ୍ୱନିରେ ମାନସ ମୋହିବ, **ଅର୍ଥୀ**ଜନ ପ୍ରକରକୁ ଆନନ୍ଦ ହୋଇବ ।"

ଦୀନକୃଷ୍ଣଙ୍କ ପଦାଙ୍କ ଅନୁସରଣ କରି ଭଞ୍ଜେ ମୂର୍ତ୍ତିମନ୍ତ କରି ମୃଦୁଗୀତ ବିସ୍ତାରିବାରେ **ରସବାଦ,** ଏଣୁ କରିଥିବ ଅଳଙ୍କାରଯୁକ୍ତ ହୋଇ ସେ **ଅଳଙ୍କାରବାଦ,**

ପଦ ସରଳରେ **ରୀତିବାଦ**, ଧ୍ୱନିରେ ମାନସ ମୋହିବରେ **ଧ୍ୱନିବାଦ** ଏବଂ ଅର୍ଥୀଜନ ପ୍ରବରକୁ ଆନନ୍ଦ ହୋଇବରେ **ବକ୍ରୋକ୍ତିବାଦର** ସୂଚନା ଦେଇଅଛନ୍ତି ।

ଏହିପରି ଆଂଶିକ ବସ୍ତୁର ବ୍ୟଞ୍ଜିତ ଆଭ୍ୟନ୍ତରୀଣ ବା ଆତ୍ମିକ ବସ୍ତୁରରେ ବା ବିଶ୍ଳେଷଣରେ ବାତ୍ସାୟନ କାମସୂତ୍ରର ସର୍ବଗ୍ରାସୀ ପ୍ରଭାବ ଭଞ୍ଜ ସାହିତ୍ୟରେ ପରିଦୃଷ୍ଟ । କାମସୂତ୍ରରେ ସୁନ୍ଦର, ସଯତ୍ତ ଓ ଆଦର୍ଶ ଦାମ୍ପତ୍ୟ ଜୀବନଯାପନ ପ୍ରଣାଳୀ ପ୍ରଦର୍ଶିତ । କନ୍ୟାର ରୂପ ଯୌବନ ବର୍ଣ୍ଣନଠାରୁ ମଧୁମନ୍ଦର ବା ମଧୁଶଯ୍ୟା ବା କେଳି ମନ୍ଦିର ମାର୍ଗରେ ସନ୍ତାନ ପ୍ରସବ ପର୍ଯ୍ୟନ୍ତ ଗାର୍ହସ୍ଥ୍ୟ ଜୀବନର ବିଭିନ୍ନ ସ୍ତର ଓ ଅବସ୍ଥା ସଙ୍କଳିତ ଭାବରେ ବର୍ଣ୍ଣିତ । ତଦ୍ଭିରେ ଚତୁଃଷଷ୍ଠୀ ବନ୍ଧ ବିଧାନରେ ନାରୀର ଯୋଗ୍ୟତା ଓ ବୁଦ୍ଧିମତ୍ତା କେବଳ ପର୍ଯ୍ୟବସିତ ନୁହେଁ, ପରନ୍ତୁ ନାନାବିଧ ଚାରୁକଳା ଓ ଲଳିତକଳା ଗର୍ଭିତ ଚତୁଃଷଷ୍ଠୀ କଳାଶିକ୍ଷା ଦିଗରେ ମଧ୍ୟ ସୁପ୍ରସାରିତ । ସେଥିଲାଗି ଲାବଣ୍ୟବତୀର ଷଷ୍ଠ ଛାନ୍ଦରେ "ଦେଖିରେ ନଳିନୀ ନଳିନୀ" କିମ୍ବା "କବି ବିଗୁଣଲି" ପ୍ରଭୃତି ସ୍ଥଳରେ ବୁଦ୍ଧି ବିସ୍ତର ମୂଳକ ପ୍ରହେଳିକା ସୃଷ୍ଟିରେ ଭଞ୍ଜଙ୍କର ସମାଧାନ ପନ୍ଥା ଅନ୍ତର୍ଗର୍ଭିତ । ପ୍ରାଚୀନ ଯୁଗୀୟ କାବ୍ୟ ସାହିତ୍ୟରେ ବିଦୂଷୀ ନାରୀମାନଙ୍କର କୋଷାଦି ଗ୍ରନ୍ଥ ଅଧ୍ୟୟନ ସର୍ବତ୍ର ସ୍ୱୀକୃତ । କବିସମ୍ରାଟ ଭଞ୍ଜଙ୍କ ଅସାଧାରଣ ଶବ୍ଦ ପାଣ୍ଡିତ୍ୟ ତଦ୍ଭିରେ ପୁଣି ମଧ୍ୟ ଯୁଗରେ ବିଶେଷତଃ ମନ୍ଦିର ଗାତ୍ରରେ ଚାରୁକଳା ପୂର୍ଣ୍ଣ ଉତ୍କଳର ମନ୍ଦିରେଶ୍ୱର ଯୁଗରେ କାମକଳା ବିଳାସର ଅସାଧାରଣ ପ୍ରତିପତ୍ତି ହେତୁ ସ୍ୱ ପ୍ରଣୀତ ବିବିଧ କାବ୍ୟ ସେହି ରସରେ ହିଁ ରସାଣିତ ହୋଇଅଛି ।

ଚରିତ୍ର ଗଠନ ଦିଗରେ କବିମାନଙ୍କର ଦାୟିତ୍ୱ ଓ ଦକ୍ଷତା ଦେଶକାଳ ପାତ୍ର ନିର୍ବିଶେଷରେ ସର୍ବତ୍ର ସ୍ୱୀକୃତ । ମଧ୍ୟ ଯୁଗରେ ମଧ୍ୟ ଏ ନୀତି ପରୀକ୍ଷଣୀୟ । ସମାଜର ସକଳ ସ୍ତରର ବ୍ୟକ୍ତି ଯଦିଓ ଆଧୁନିକ ଦୃଷ୍ଟି କୋଣରୁ ପ୍ରାଚୀନ ବା ମଧ୍ୟ ଯୁଗର ସାହିତ୍ୟରେ ସ୍ଥାନ ଲାଭ କରିନାହାନ୍ତି ତଥାପି ଯେଉଁ ଧୀରୋଦାତ୍ତ ଓ ଧୀରୋଦ୍ଧତ ପ୍ରଭୃତି ନାୟକ ଚତୁଷ୍ଟୟ ସେ ଯୁଗରେ ଚର୍ଚ୍ଚିତ ହୋଇଅଛନ୍ତି ସେମାନଙ୍କର ଆଚାର ବ୍ୟବହାର, କ୍ରିୟାକଳାପ ଏବଂ ବ୍ୟକ୍ତିଗତ ତଥା ସାମାଜିକ ବିଧି ବିଧାନରେ ପାଠକ ମଣ୍ଡଳୀର ଚରିତ୍ର ଗଠନକ୍ଷମ ନୀତି-ଉପାଦାନମାନ ବିସ୍ତୃତ ଭାବରେ ସଞ୍ଚିତ ହୋଇରହିଅଛି ।

ଆଦର୍ଶ ନାୟିକା, ଆଦର୍ଶ ପିତା, ଆଦର୍ଶ ଶୃଙ୍ଗାରିନାୟିକା, ସହାୟକ ମିତ୍ର ଏବଂ ପ୍ରାଣପ୍ରତିମ ସହଚରୀ ପରିପାର୍ଶ୍ୱର ଉପଭୋଗ୍ୟ ଧାର୍ମିକ ତଥା ନୈତିକ ଜୀବନର ଉଦ୍-ବୋଧନ ପ୍ରଭୃତିରେ ପ୍ରାଚୀନ ଓ ମଧ୍ୟଯୁଗୀୟ ସାହିତ୍ୟର ପ୍ରାଚୁର୍ଯ୍ୟ ହିଁ ଆଲୋଚକର ବିଶେଷ ଦୃଷ୍ଟି ଆକର୍ଷଣ କରେ । କିନ୍ତୁ ଏସବୁ ସତ୍ତ୍ୱେ ମଧ୍ୟଯୁଗୀୟ ସାହିତ୍ୟ ଗୀତସାହିତ୍ୟରେ ହିଁ ପର୍ଯ୍ୟବସିତ ହୋଇଥାନ୍ତି, ଯଦି ଗୀତମାନସର ଚିତ୍ତ ଶୃଙ୍ଖଳକର ସାଙ୍ଗୀତିକ ସ୍ୱରମାଧୁର୍ଯ୍ୟର ସାହଚର୍ଯ୍ୟରେ ରସ ପରିବେଷଣ କରିବାର ଉଦ୍ୟମ କରିଯାଇ ନଥାନ୍ତି । ବହୁ ବର୍ଷ ଧରି

ଦକ୍ଷିଣ ଭାରତର ପ୍ରଭାବରେ ଓଡ଼ିଶାର ସଂସ୍କୃତି ପରିପୁଷ୍ଟ । ପୁଣି କର୍ଣ୍ଣାଟକୀ ସଙ୍ଗୀତର ମଧୁର ଝଂକୃତରେ ଉତ୍କଳର ସଙ୍ଗୀତ ତଥା ସାହିତ୍ୟ ଦିବ୍ୟ ଜୀବନରେ ଦୀପିତ; କିନ୍ତୁ ମଧ୍ୟ ଯୁଗୀୟ ଛାନ୍ଦ ସାହିତ୍ୟ କେବଳ ଖାଣ୍ଟି ସାହିତ୍ୟ ନୁହେଁ । ସଙ୍ଗୀତର ଶ୍ରୁତି ଶ୍ରାବ୍ୟତା ଓ ମନୋରଞ୍ଜକତା ଯେଉଁ ପରିମାଣରେ ଆହାର୍ଯ୍ୟ କେବଳ ସେତିକି ପର୍ଯ୍ୟନ୍ତ କବିମାନେ ସଙ୍ଗୀତର ସାହାଯ୍ୟ ଗ୍ରହଣ କରିଅଛନ୍ତି ।

ଓଡ଼ିଶାର ସଂସ୍କୃତି ଯଥାର୍ଥରେ ଧାର୍ମିକ ସଂସ୍କୃତି । ସାରଳାଦାସଙ୍କ ସମୟରେ ଓଡ଼ିଶାର ଅସଂସ୍କୃତଜ୍ଞ ଅନଭିଜ୍ଞ କବିମାନେ ପଞ୍ଚଦେବତାର ଉପାସନାରେ ବ୍ୟଗ୍ର ଥିଲେ । ପଞ୍ଚସଖା ଯୁଗ ତଥା ଶ୍ରୀ ଚୈତନ୍ୟଙ୍କ ଆଗମନ ସମୟରୁ ବିଷ୍ଣୁ ବା କୃଷ୍ଣ ଉପାସନାର ପ୍ରାବଲ୍ୟରେ ପଞ୍ଚଦେବତାର ଉଦାର ଉପାସନା କ୍ରମେ ସଙ୍କୁଚିତ ହୋଇ ଉଠିଲା । ବୋଧହୁଏ ସେହି କାରଣରୁ ଓଡ଼ିଶାର ପଞ୍ଚଦେବୀର ଉପାସକ ପ୍ରତିପତ୍ତିଶାଳୀ ଶାସନୀ ସ୍ମାର୍ତ୍ତ ପଣ୍ଡିତ ମଣ୍ଡଳୀ କେବଳ ମାତ୍ର ବିଷ୍ଣୁ ଉପାସକ ଓଡ଼ିଆ କବିମାନଙ୍କ ବିରୁଦ୍ଧରେ ଖଡ଼୍ଗହସ୍ତ ହେବାକୁ ଦ୍ୱିଧା ବୋଧ କରିନଥିଲେ ।

କିନ୍ତୁ ରାଜକବି ଉପେନ୍ଦ୍ର ମନୁସ୍ମୃତିର ବ୍ରାହ୍ମଣ ଓ କ୍ଷତ୍ରିୟ ସାହଚର୍ଯ୍ୟ ନୀତିକୁ କାର୍ଯ୍ୟକାରୀ କରିପାରି ସ୍ମାର୍ତ୍ତ ବ୍ରାହ୍ମଣମାନଙ୍କର ଉଦାର ସର୍ବଦେବ ଉପାସନା ସଙ୍ଗେ କ୍ଷତ୍ରିୟ ଶାସକର ସମନ୍ୱୟବାଦିତା ସଂଯୋଗ କରି ପୁଣି ଥରେ ସର୍ବଦେବ ଉପାସନା ସାହିତ୍ୟ ମାଧ୍ୟମରେ ସ୍ୱକାବ୍ୟରେ ପ୍ରତିଷ୍ଠା କଲେ । ଫଳରେ 'ଲାବଣ୍ୟବତୀ'ରେ ରାମ ଓ ବିଷ୍ଣୁଙ୍କଠାରୁ ଦୁର୍ଗାଙ୍କ ପର୍ଯ୍ୟନ୍ତ ଉପାସନାର ସୂତ୍ରପାତ ହୋଇଅଛି । ଏହି ଧାର୍ମିକ ସଂସ୍କୃତି ଯଥାର୍ଥରେ ଜଗନ୍ନାଥ ସଂସ୍କୃତିର ଅବିଚ୍ଛେଦ୍ୟ ଅଙ୍ଗ । ସୁତରାଂ ଭଞ୍ଜ ତଥା ତାଙ୍କର ବହୁ ଅନୁବର୍ତ୍ତୀ ଛାନ୍ଦକାର କ୍ରମେ ସମଭାବରେ ବହୁ ଦେବଉପାସନାର ମାର୍ଗ ପରିଷ୍କାର ପୂର୍ବକ ଉତ୍କଳରେ ପ୍ରାଚୀନ ସଂସ୍କୃତିର ଏକ ପ୍ରକାର ପୁନରୁଦ୍ଧାର କରିବାକୁ ଚେଷ୍ଟା କରିଥିଲେ ।



# ଭଞ୍ଜସାହିତ୍ୟରେ ନାୟିକା ବର୍ଣ୍ଣନା

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟାକାଶରେ ଉଜ୍ଜ୍ୱଳତମ ଜ୍ୟୋତିଷ୍କ ରୂପେ ଆବିର୍ଭୂତ ହୋଇ ଭଞ୍ଜ ନିଜର ଅଲୌକିକ ପ୍ରତିଭା, ଅସାମାନ୍ୟ ସୂକ୍ଷ୍ମବୁଦ୍ଧି ଓ ଅସାଧାରଣ ଶାସ୍ତ୍ରଜ୍ଞାନ ବଳରେ ଉତ୍କଳ-ସାହିତ୍ୟଭଣ୍ଡାରକୁ ଚିରକାଳ ସକାଶେ ଦୀପ୍ତିମନ୍ତ କରିଗଲେ । ଭଞ୍ଜଙ୍କ ପୂର୍ବରୁ ଓଡ଼ିଆ ସାହିତ୍ୟରେ ଏକ ଉଜ୍ଜ୍ୱଳମାନ ପରମ୍ପରା ବିଦ୍ୟମାନ ଥିଲା । ଯେଉଁ ପାରିପାର୍ଶ୍ୱିକ ଅବସ୍ଥାରେ ଭଞ୍ଜଙ୍କର କବିତ୍ୱ ଶକ୍ତିର ଉନ୍ମେଷ ହୋଇଥିଲା, ସେହି ପରିବେଶ ସୃଷ୍ଟିରେ ଭଞ୍ଜଙ୍କର ପୂର୍ବବର୍ତ୍ତୀ କବିଗଣ ଓ ତାଙ୍କର ସୁଯୋଗ୍ୟ ପିତାମହ ଯଥେଷ୍ଟ ସହାୟତା କରିଥିଲେ । ପିତାମହଙ୍କ ଉତ୍ସାହବାଣୀ ଓ ଶିକ୍ଷାଦାନରେ ତତ୍ପରତା ଏବଂ ପୂର୍ବ ଦେଦୀପ୍ୟମାନ ପରମ୍ପରା ଯୋଗୁଁ ଆମେ ଏପରି ଏକ ଭାସ୍ୱାନ ପ୍ରତିଭାର ପରିଚୟ ପାଇଛୁଁ । ପଞ୍ଚଦଶ ଶତାବ୍ଦୀଠାରୁ ଭଞ୍ଜଯୁଗ ପର୍ଯ୍ୟନ୍ତ ସାହିତ୍ୟ ସାଧାରଣତଃ ସରଳ ସାବଲୀଳ ଗତିରେ ଧାବିତ ହୋଇଥିଲା । ସରଳ ଭାବ ପ୍ରକାଶନରେ ବିଚକ୍ଷଣତା ଦର୍ଶାଇ ସରଳ ପଦ ଓ ଅଳଙ୍କାର ଯୋଜନାରେ ଅଧିକାଂଶ କବି ସେମାନଙ୍କର ଶକ୍ତି ବିନିଯୋଗ କରିଥିଲେ । ମାତ୍ର ଦୀନକୃଷ୍ଣଙ୍କଠାରୁ ଧନଞ୍ଜୟ ଭଞ୍ଜଙ୍କ ପର୍ଯ୍ୟନ୍ତ ରସ ଓ ଅଳଙ୍କାର ଆଡ଼ମ୍ବରରେ ଓ କ୍ଲିଷ୍ଟ କଳ୍ପନାର ଆଧିକ୍ୟରେ ତତ୍କାଳୀନ ସାହିତ୍ୟ କିଛିଟା ଭାରାକ୍ରାନ୍ତ ହୋଇଉଠିଲା । କି ରସପ୍ରୟୋଗ, କି ଅଳଙ୍କାର ପ୍ରୟୋଗ କି ପଦଯୋଜନା, କି ନାୟକନାୟିକା ବର୍ଣ୍ଣନା—ସବୁ ବିଷୟରେ କବିମାନେ ସଂସ୍କୃତ ସାହିତ୍ୟର ଆଶ୍ରୟ ନେଇଥିଲେ । ସେହି ପ୍ରଭାବ ବହୁଳ ପରିମାଣରେ ଉପେନ୍ଦ୍ର ଭଞ୍ଜଙ୍କୁ ପ୍ରଭାବିତ କଲା । ଚମତ୍କାରକ ମନ୍ତ୍ରବଳରେ ଯୁଗାନ୍ତକାରୀ କବିତ୍ୱଶକ୍ତି ଅର୍ଜନ କରି ଭଞ୍ଜ ବହୁ ଶାସ୍ତ୍ରଦର୍ଶୀ ହୋଇ ପାରିଥିଲେ । ଉତ୍କଳର ଶିଳ୍ପସମ୍ପଦ ପରି ତାଙ୍କ ରଚିତ କାବ୍ୟସମ୍ପଦ ରସମଣ୍ଡିତ, ଭାବଗୁମ୍ଫିତ ଏବଂ ମଞ୍ଜୁଳ । ଭାଷା ସ୍ୱାଭାବିକ ଗୌରବରେ ଗରୀୟାନ୍, କମନୀୟତାରେ ପରିପୂର୍ଣ୍ଣ । ନିଜର ଗଭୀର ଅନୁଭୂତିସମ୍ପନ୍ନ ସାଂସାରିକ ଜ୍ଞାନ ମନୁଷ୍ୟ ହୃଦୟର ଗଭୀର ଭାବଧାରା ଗ୍ରହଣ କରିବାରେ ଅସାମାନ୍ୟ ନିପୁଣତା ଭାଷା ଓ ଶବ୍ଦରାଜ୍ୟରେ ତାଙ୍କର ଅନୁପମ ପାରଗତା ତାଙ୍କୁ ଯଶସ୍ୱୀ କରାଇଅଛି । ବିଶେଷତଃ ତାଙ୍କ ଅନୁଭୂତିରେ ରସାଳ ଅଭିବ୍ୟକ୍ତି ଓ ନାୟକନାୟିକା ବର୍ଣ୍ଣନାରେ ଆସାଧାରଣ କୃଶଳତା ଦେଖିଲେ ପାଠକ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ସଂସ୍କୃତ ସାହିତ୍ୟ ଅଧ୍ୟୟନ ଓ

ଆଲୋଚନା ଏବଂ ସେଥିରେ ପାଣ୍ଡିତ୍ୟ ଲାଭ ତାଙ୍କ ଜ୍ଞାନଭଣ୍ଡାରକୁ ପରିପୂର୍ଣ୍ଣ କରିଛି । ତାଙ୍କ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିଛି । ଶୁଣାଯାଏ, ଭଞ୍ଜ "ମେଦିନୀକୋଷ"ର ସମସ୍ତ ଅଂଶ ଆୟତ୍ତ କରିଥିଲେ । ସଂସ୍କୃତ ସାହିତ୍ୟର ଅନୁପମ କାବ୍ୟ, କବିତା, ନାଟକ, ମହାକାବ୍ୟ ଓ ଅଳଙ୍କାର ଶାସ୍ତ୍ରାଦି ଅତି ଉତ୍ତମ ରୂପେ ଅଧ୍ୟୟନ କରି ଭଞ୍ଜ ସେଥିରେ ଯାହା ଲୋଭନୀୟ, ଶୋଭନୀୟ ଓ ଗ୍ରହଣୀୟ ବୋଲି ବିବେଚନା କରିଥିଲେ, ତାହା ଗ୍ରହଣ କରିଥିଲେ । ବିଶେଷତଃ ଶ୍ରୀହର୍ଷଙ୍କ ନୈଷଧ ନିକଟରେ ଭଞ୍ଜ ଚିରଋଣୀ ।

ଭଞ୍ଜଙ୍କର ଅଧିକାଂଶ କାବ୍ୟ ପ୍ରେମମୂଳକ । ନାୟକନାୟିକାର ପ୍ରେମ, ମିଳନ ଓ ବିରହ ମଧ୍ୟ ଦେଇ ସେ ପାଇଥିଲେ ଜୀବନର ବିସ୍ମୟ, ଜୀବନର ଧ୍ୱନିର ସନ୍ଧାନ । ତେଣୁ ଅଧିକାଂଶ ପ୍ରେମମୂଳକ କାବ୍ୟ ରଚନାରେ ସେ ମନ ବଳାଇଥିଲେ । ନାରୀମୁଖୀ ପ୍ରତିଭା ନେଇ ଜନ୍ମଗ୍ରହଣ କରିଥିଲେ ବୋଲି ଭଞ୍ଜ ଯେଉଁଠାରେ ନାୟିକା ବର୍ଣ୍ଣନା କରିବାକୁ ସୁଯୋଗ ପାଇଛନ୍ତି, ସେଠାରେ ଉକ୍ତ ବର୍ଣ୍ଣନାରେ ସିଦ୍ଧହସ୍ତତା ଅର୍ଜନ କରିଅଛନ୍ତି—ସେଠାରେ ତାଙ୍କର ସୌନ୍ଦର୍ଯ୍ୟ ଜ୍ଞାନ, ଅପୂର୍ବ ସୃଷ୍ଟି-କୌଶଳ, ମୌଳିକତା, କଳ୍ପନାର ଉଦାରତା, ସରସ ପ୍ରାଣତା, ରସିକତା, ସୌନ୍ଦର୍ଯ୍ୟଗ୍ରାହିତା, ଦିବ୍ୟଦୃଷ୍ଟି, ରସ ସମାବେଶରେ କୁଶଳତା, ଛନ୍ଦ ପ୍ରୟୋଗରେ ନିପୁଣତା ଉତ୍ତମରୂପେ ଫୁଟିଉଠିଛି । ନାୟିକାର ଆପାଦମସ୍ତକ ବର୍ଣ୍ଣନାରେ କବି ମନପ୍ରାଣ ଢାଳି ଦେଇଛନ୍ତି ।

ସାହିତ୍ୟରେ ନାୟିକାକୁ କବିମାନେ ନାନା ଭାବରେ କଳ୍ପନା କରି ବର୍ଣ୍ଣନା ଶକ୍ତିର ପରିଚୟ ଦେଇଛନ୍ତି । ଉଦାହରଣ ସ୍ୱରୂପ ରସିକଭକ୍ତ କବି ଦୀନକୃଷ୍ଣ ତାଙ୍କ ଅମରକାବ୍ୟ ରସକଲ୍ଲୋଳରେ ନାୟିକାକୁ ସରୋବର ରୂପେ କଳ୍ପନା କରିଛନ୍ତି । କବି ଲେଖିଲେ କୃଷ୍ଣ କହୁଛନ୍ତି—

"କେଉଁ ଗୋପୀ ମୂର୍ତ୍ତି ଅନାଇ ବୋଲନ୍ତି ତୋ ଅଙ୍ଗ କାମଂ-ସରୋବର
କାନ୍ତି ସ୍ୱଚ୍ଛ ଜଳ କେଶ ଶଇବାଳ ବଦନ କମଳ ପ୍ରକାର ।
କମଳା,—ନୟନଯୁଗଳ ସଫରୀ,
କୁଚ ଚକ୍ରବାକ ନଖ କହ୍ଲାରକ ସକଳ ଜନ ମନୋହାରୀ ।

ସଂସ୍କୃତ ସାହିତ୍ୟରେ ଅନୁରୂପ ବର୍ଣ୍ଣନା ପରିଦୃଷ୍ଟ ହୁଏ—

"ବାହୂ ଦ୍ୱୌଚ ମୃଣାଳମାସ୍ୟକମଲଂ ଲାବଣ୍ୟଲୀଳାଜଳମ୍
ଶ୍ରୋଣୀ ତୀର୍ଥଶିଳା ଚ ନେତ୍ରଶଫରୀ ଧମ୍ମିଲ୍ଲଶୈବାଳକମ୍
କାନ୍ତାୟାଃ ସ୍ତନଚକ୍ରବାକଯୁଗଳଂ କନ୍ଦର୍ପ ବାଣାନଲୈ-
ର୍ଦଗ୍ଧା ନାମାବଗାହନାୟ ବିଧିନା ରମ୍ୟ ସରୋ ନିର୍ମିତମ୍ ।

ଉକ୍ତ ଶ୍ଳୋକର ଓଡ଼ିଆ ଅନୁବାଦ ରସକଲ୍ଲୋଳରେ ତାଙ୍କ କାବ୍ୟରେ ଉଦ୍ଧାର କରିଛନ୍ତି । ଆଧୁନିକ କବି ଗୋଳକ ପ୍ରଧାନ ତାଙ୍କ ରଚିତ ଇନ୍ଦୁରେଖା କାବ୍ୟରେ ନାୟିକାକୁ ନଦୀ ରୂପରେ କଳ୍ପନା କରିଛନ୍ତି । କବି କହିଲେ—

ଅଙ୍ଗନା ହୋଇଲା ସରିତ ସରି
ଅଶେଷ ରସ ତହିଁ ଅଛି ପୂରି
କରଗୀତ ତାର ଅତି ସୁନ୍ଦର
ଶୋଭା ସୁଭଉଁରି କି ମନୋହର
କୋକସ୍ତନୀ ଯହିଁ—ଚେଳ ଖସୁଁ ଜଳ ମଧ୍ୟୁ ଦିଶଇ ।

ଆହୁରି—ବାଲମାନ ପରି ଭାବେ ମାନସେ
ବସନ ଉଡ଼ି ବାମା ଜାନୁ ଦିଶେ
ମୀନନେତ୍ର ସଲିଳରେ ଖେଳଇ
ଅନଙ୍ଗ ମକର ବସଇ ଯହିଁ
ବଙ୍କନିରୀକ୍ଷଣ—କରି କରେ ସେ ମନ୍ଥର ଗମନ ।

ଯୁଗ-ଧର୍ମର ପ୍ରଭାବକୁ ଏହି ଆଧୁନିକ କବି ମଧ୍ୟଯୁଗୀୟ କବିମାନଙ୍କ ଭଳି ନାୟିକାବର୍ଣ୍ଣନାର ନିଦର୍ଶନ ଦେଲେ – ଏହା ହିଁ ବିଚିତ୍ର । ଯାହାହେଉ ଉପରୋକ୍ତ ଦୁଇପ୍ରକାର ନାୟିକା ବର୍ଣ୍ଣନାରେ ଆମେ ରସର ପରିଚୟ ପାଇଲେ ମଧ୍ୟ ନାରୀର ନଗ୍ନ ସୌନ୍ଦର୍ଯ୍ୟ ବର୍ଣ୍ଣନାଜନିତ ସାମାନ୍ୟ ଅଶ୍ଳୀଳତା ଦୋଷରୁ ବର୍ଣ୍ଣନା ତାର ସ୍ୱାଭାବିକ ସ୍ନିଗ୍ଧତା ହରାଇଅଛି । ମାତ୍ର ଭଞ୍ଜ ତାଙ୍କ ନାୟିକା ବର୍ଣ୍ଣନାରେ ଯଥାସମ୍ଭବ ଭାବରେ ନିଜର ମୌଳିକତା ସୌନ୍ଦର୍ଯ୍ୟଜ୍ଞାନ ଓ କବିତ୍ୱଚାତୁର୍ଯ୍ୟ ରକ୍ଷା କରିଅଛନ୍ତି । ସୁଭଦ୍ରା-ପରିଣୟରେ ସୁଭଦ୍ରାଙ୍କୁ ଲତା ରୂପରେ କଳ୍ପନା କରି ଭଞ୍ଜ ଲେଖିଲେ—

ସର୍ପପୁରେ ଯାଇ ପଚାରିତ କହିଲେ ମହାଜାତ ହେମମଞ୍ଜରୀ
ସୁଗନ୍ଧବତୀ ସ୍ୱଇଚ୍ଛାରେ ଚଳିତ ପତ୍ରାବଳୀରେ କି ମାଧୁରୀ
ସଫୁଲ—ତହିଁ ପୁଣି ଫୁଲ ଏତେକ
ସରୋରୁହ ଚମ୍ପା କୁମୁଦ ପାଟଳୀ ନିଆଳୀ ଶିରୀଷ ଅଶୋକ । (୧)

ସଫଳ ଆମ୍ବ ଡାଳିମ୍ବ ବିମ୍ବ ଦ୍ରାକ୍ଷା ରୁମ୍ବୀ ନାରଙ୍ଗ ମାତୁଳଙ୍ଗ
ସାରଙ୍ଗ ଖଞ୍ଜନ ଚକୋର ମୟୂର ଶୁକ କପୋତ ହଂସ ସଙ୍ଗ
ସ୍ୱରୂପେ—ମହା ଅଦ୍ଭୁତ କଥା ଏହି,
ସପତ ଜାତି ଫଳ ଫୁଲ ବିହଙ୍ଗ ଲତାକେ ଥିବା ଶୁଣା ନାହିଁ । (୨)

ଭଞ୍ଜଙ୍କ ନାୟିକା ନଦୀ ନୁହେଁ, ସରୋବର ନୁହେଁ, ମାତ୍ର ସେ ଲତା—ସେ ପୁଣି ସ୍ୱର୍ଣ୍ଣଲତା; ସ୍ୱଗମନବତୀ ଗମନଶୀଳା ସ୍ୱର୍ଣ୍ଣଲତା—ସେ ଲତାରେ ସାତ ପ୍ରକାର ଫୁଲ, ସାତ ପ୍ରକାର ଫଳ ଆଉ ସାତ ପ୍ରକାର ବିହଙ୍ଗମ ଅଛୁ । ଧନ୍ୟ ଧନ୍ୟ କବି କଳ୍ପନା । କି ଅପୂର୍ବ ସ୍ୱରୂପ । ଏହିଠାରେ ଭଞ୍ଜଙ୍କ ବୈଶିଷ୍ଟ୍ୟ ଗୌରବାନ୍ୱିତ । ପାତାଳପୁରରେ ପର୍ବତ ଋଷି ସାଇଁ କହିଲେ ଯେ, ମହୀରେ ଗୋଟାଏ ସ୍ୱର୍ଣ୍ଣଲତା ଜନ୍ମଗ୍ରହଣ କରିଛି । ସେ ଲତାରେ ସରୋରୁହମୁଖ, ଚମ୍ପାଦେହ, କୁମୁଦଦାମ, ପାଟଳୀଶ୍ରବଣ, ନଳିନୀ କରତଳ, ଶିରୀଷ ଦେହ, ଅଶୋକ ପଦାଙ୍ଗୁଳି, ଆମ୍ବ ଅଙ୍ଗ ବା ଦେହ, ଡାଳିମ୍ବ ଦନ୍ତ, ବିମ୍ବଅଧର, ଦ୍ରାକ୍ଷା କୃଷ୍ଣସ୍ତନ, ତୁମ୍ବୀସ୍ମିତ, ନାରଙ୍ଗସ୍ତନ, ମାତୁଲଙ୍ଗ ଖୋଷା, ସାରଙ୍ଗବଚନ, ଖଞ୍ଜନନେତ୍ର, ଚକୋରସ୍ତନ, ମୟୂରକେଶ, ଶୁକନାକ, କପୋତ ଗଳଦେଶ, ହଂସଗମନ ପ୍ରଭୃତି କଳ୍ପନା କରାଯାଇଛି ।

ନାୟିକାକୁ ଲତାରୂପରେ କଳ୍ପନା କରି ବର୍ଣ୍ଣନା କରିବା ସମଗ୍ର ସଂସ୍କୃତ କାବ୍ୟରେ ଦ୍ରଷ୍ଟବ୍ୟ । ଭଟ୍ଟୀକାବ୍ୟରେ କବି ଲେଖିଲେ—

"ହିରଣ୍ମୟୀ ଶାଲଲତେବ ଜଙ୍ଗମା<br>
ଚ୍ୟୁତାଦିବଃ ସ୍ଥାସ୍ନୁରିବାଚିରପ୍ରଭା<br>
ଶଶାଙ୍କକାନ୍ତେରଧିଦେବତା କୃତିଃ<br>
ସୁତାଦଦେତସ୍ୟ ସୁତାୟ ମୈଥିଲୀ—"

ଗମନଶୀଳା ସ୍ୱର୍ଣ୍ଣମୟୀ ଶାଲଲତା ପରି ଅଚିରପ୍ରଭା ବିଦ୍ୟୁତ୍ ତୁଲ୍ୟ ଚନ୍ଦ୍ରକାନ୍ତ ସଦୃଶ ଅଧିଦେବତାକୃତି ମିଥିଳାଦେଶର ରାଜସୁତା ସୀତାଦେବୀଙ୍କୁ ଦଶରଥଙ୍କ ପୁତ୍ର ରାମଚନ୍ଦ୍ରଙ୍କ ସହିତ ବିବାହ କରିଦେଲେ ।

ହିରଣ୍ମୟୀ ଲତାକୁ ଭଞ୍ଜ ହେମମଞ୍ଜରୀ ରୂପେ ଗ୍ରହଣ କରି ନିଜର ଶବ୍ଦଯୋଜନାର ବିଶେଷତ୍ୱ ଦର୍ଶାଇ ଅଛନ୍ତି । ନାୟିକାର ମୁଖ, ନେତ୍ର, ଅଧର, ନାସିକା, କର୍ଣ୍ଣ, ଗଳଦେଶ କୁଚ, ନେତ୍ରପ୍ରାନ୍ତ, ଗଣ୍ଡଦେଶ, ଜଙ୍ଘ, ପାଦ ଓ କେଶ ବର୍ଣ୍ଣନାରେ କବିସମ୍ରାଟ ଭଞ୍ଜ ସଂସ୍କୃତ ସାହିତ୍ୟର ଆଶ୍ରୟ ନେଇ ମଧ୍ୟ ନିଜର ମୌଳିକତା ବଜାୟ ରଖିଅଛନ୍ତି । ବିଶେଷତଃ ମୁଖ ଓ କେଶ ବର୍ଣ୍ଣନାରେ କବି କିପରି ଦକ୍ଷତା ଅର୍ଜନ କରିଛନ୍ତି, ତାହା କେତେକ ଉଦାହରଣରୁ ସ୍ପଷ୍ଟ ପ୍ରତୀୟମାନ ହେବ । ଭଞ୍ଜ ତାଙ୍କ ଲାବଣ୍ୟବତୀ, ରସିକହାରାବଳୀ ସୁଭଦ୍ରାପରିଣୟ, କୋଟିବ୍ରହ୍ମାଣ୍ଡସୁନ୍ଦରୀ ଓ ବୈଦେହୀଶବିଳାସରେ ପ୍ରାୟ ଏକ ପ୍ରକାର ବର୍ଣ୍ଣନା ଦେଖାଇଅଛନ୍ତି । ଏଠାରେ ଭଞ୍ଜ ଗତାନୁଗତିକତାର ଆଶ୍ରୟ ନେଇଛନ୍ତି । ଭଞ୍ଜଙ୍କର ପରବର୍ତ୍ତୀ କବିମାନେ ବିଶେଷ କରି ବ୍ରଜନାଥ କବି ଅଭିମନ୍ୟୁ ଭଞ୍ଜଙ୍କର ବର୍ଣ୍ଣନାରୀତିକୁ ଆଶ୍ରୟ କରିଅଛନ୍ତି । ମଧ୍ୟଯୁଗୀୟ କବିମାନେ ପ୍ରାୟ ସମସ୍ତେ

ଭଞ୍ଜଙ୍କ ପଦାଙ୍କ ଅନୁସରଣ କରିଅଛନ୍ତି । କି ବର୍ଣ୍ଣନାଛବି, କି ଛନ୍ଦପ୍ରୟୋଗ, କି ଅଳଙ୍କାର ସମାବେଶ, ସବୁ ଦିଗରେ ଅଧିକାଂଶ କବି ଏପରି କି ଆଧୁନିକ ଓଡ଼ିଆ ସାହିତ୍ୟର ପୁରୋଧା ରାଧାନାଥ ମଧ୍ୟ ଭଞ୍ଜଙ୍କୁ ଅନୁସରଣ କରିଛନ୍ତି । ଭଞ୍ଜ ସଂସ୍କୃତ ସାହିତ୍ୟ ମନ୍ଥନ କରି ଯେଉଁ ସୁଧା ଆହରଣ କଲେ, ସେହି ସୁଧା ପାନ କରି ଭଞ୍ଜଯୁଗର ଅଧିକାଂଶ କବି ନିଜ ନିଜକୁ ଧନ୍ୟ ମଣିଲେ । ଭଞ୍ଜ ତାଙ୍କ ସୁଭଦ୍ରା ପରିଣୟରେ କେଶ ବର୍ଣ୍ଣନାର ରୂପରେଖ ଦେଇ ରଚିଲେ—

ସୁକୁନ୍ତଳା ସୁକୁନ୍ତଳ, ନୀଳକୁଟିଳ ଗହଳ
ଚିକ୍କଣ ଲମ୍ବ ବିଭିନ୍ନ ବାସ ନିବାସ,
ସୁହୃଦ ମୂଢ଼ ବରହୀ ପୁଚ୍ଛ ଲକ୍ଷ୍ୟ ହେବା ପାଇଁ
ଗଲଥା ପାଇଲା ଯାଇଁ ଲୋକେଶ ପାଶ ।
ସେ ଚିହ୍ନ ଚନ୍ଦ୍ରିକା ପ୍ରମାଣ
ସଭୟ ହୋଇଲେ ପୁଣି ଉପମାଗଣ ।୧।
ଶୀକର ଅଶ୍ରୁନିକର ମୁଚି କାଳେ ଜଳଧର
ଉଦେ ହୋଇ ଅନୁକ୍ଷଣେ କରେ ଯା ଘୋଷା,
ଶୁଣାଇ ସବୁଙ୍କୁ କହି ମୁଁ କେଶ ସମାନ ନୋହି
ଘେନକେଶୀ ବୋଲିବାର କବିଙ୍କ ଦୋଷ
ସହୃଦତା କଜ୍ଜଳ କଲା,
ସଦଳିତ ହୋଇ ନେତ୍ରେ ଅଞ୍ଜନ ହେଲା ।୨।

ସୁକୁନ୍ତଳା ସୁଭଦ୍ରାଙ୍କ ନୀଳ କୁଟିଳ ଗହଳ ଚିକ୍କଣ ସୁକୁନ୍ତଳ ସଙ୍ଗରେ ସମାନ ହେବାପାଇଁ ମୂଢ଼ ମୟୂର ତାର ପୁଚ୍ଛ ଦେଖାନ୍ତେ ବ୍ରହ୍ମା ଗୋଟାଏ ଗଲଥା ଦେଲେ । ସେହି ଗଲଥାର ଚିହ୍ନ ସ୍ୱରୂପ ମୟୂର ପୁଚ୍ଛରେ ଚନ୍ଦ୍ରିକା ଦେଖାଯାଉଛି । ଅନ୍ୟ ଉପମାମାନେ ଭୟ ପାଇଲେ । ମେଘ ତାଙ୍କ କେଶ ସହିତ ସମାନ ନ ହୋଇ ସର୍ବଦା ଆକାଶରେ ଉଦେ ହୋଇ ଅଶ୍ରୁନିକର ତ୍ୟାଗ କରୁଛି ଏବଂ ସେ ଯେ ସମାନ ନୁହେଁ, ଏକଥା ସାଧାରଣରେ ତାର ଘୋଷଦ୍ୱାରା ଜଣାଉଅଛି । ଅଞ୍ଜନ ସମାନ ନ ହୋଇ ପାରି ଗ୍ରେଜ ଦଳିତ ହୋଇ ନେତ୍ରରେ ରହିଲା । ବୈଦେହୀଶ ବିଳାସରେ କବି କେଶ ବର୍ଣ୍ଣନାରେ କହୁଛନ୍ତି—

ବ୍ୟକ୍ତ ଲକ୍ଷଣମାନଙ୍କ ଊଣା ମୁଖ ମଣ୍ଡଳେ କରୁଁ
ବଳାପି ଶିଗ୍ର ଚମରୁ ଦେଉ କହନ୍ତି କେଶଗୁରୁ
ବରହୀ ଏଣୀ ପୁଚ୍ଛକୁ ଆଣି ଉତ୍ପାଟି ଛେଦ କନେ
ବିକ ଏଥିକ ମୂଲ୍ୟ ବୋଲି କି ଦେଖାଉ ଏ ଭୁବନେ

ବକର୍ତ୍ତିନକା ଯେ ସମେ ମନ୍ଥା ୱାଚ କୁଞ୍ଚକେ ଶ୍ରେଣୀ
ବଷା ଯେ କଳା ସଙ୍ଗମେ ମେଳା କାଳେ କାଳୀୟ ବଢ଼
ବ୍ୟୋମ ଧୂମକୁ ଛାହା ସମକୁ ଲକ୍ଷିବା କ ମାନସେ
ବଗ୍ରବ କର ଦେହେଁ ମୁଁ ସର ବୋଲି ଉଦୟ କାଳେ

ଏକ ପ୍ରକାର ବର୍ଣ୍ଣନା—ଯେହ ମେଘ, ଏଣୀ; ମୟୂରମାନେ ସୀତାଙ୍କ କେଶ ସହିତ ତୁଳନୀୟ ନୁହନ୍ତି । ଏଠାରେ ମଧ୍ୟ ମେଘ ସମାନ ନୁହେଁ ବୋଲି ମହାଶବ୍ଦ କରୁଛି ।

କୋଟି ବ୍ରହ୍ମାଣ୍ଡସୁନ୍ଦରୀରେ କେଶ ବର୍ଣ୍ଣନା ମଧ୍ୟ ଉପରୋକ୍ତ ପ୍ରକାରର—

ନୀଳ ଚକ୍କଣ କୁଟିଳ କୋମଳ
ପ୍ରଲମ୍ବ ଗହ୍ୱଳ ସୁଗନ୍ଧସ୍ଥଳ
ଏମନ୍ତ କେଶେ କ ତୁଲ ସମ୍ବାଦ
ଏତେ ଗୁଣେ ଅଛୁ କାଳିନ୍ଦୀ ନଦୀ ସେ ।
ରମ୍ୟ ଭୟଙ୍କର ସ୍ଥାନ ଯେ
ଯେନ ଉରୁଗୁରୁ ପାଇବ ୱାବଟି ଦେଖାଇ ଦେଲା ପୁଳକ ।

ଏହିପରି ବର୍ଣ୍ଣନାର ଭୂରି ଭୂରି ନିଦର୍ଶନ ସଂସ୍କୃତ ସାହିତ୍ୟରେ ପରିଦୃଷ୍ଟ ହୁଏ ।

ନୈଷଧକାର ତାଙ୍କ କାବ୍ୟରେ ଲେଖିଲେ –

ଅସ୍ୟାଃ କଚ୍ଚନାଂ ଶିଖିନଶ୍ଚକନ୍
ବଧ୍ୟଂ କଲାପୌ ବମତେରଗାତାଂ
ତେନାସ୍ୟ ମେଭିଃ କମପୂଜ ପୁଚ୍ଛେ
ପୁଚ୍ଛୈରଭସ୍ତିଦିହ୍ୱାସ କମର୍ଦ୍ଧଚନ୍ଦ୍ରମ୍ ।

ସମ୍ଭବତଃ ଦମୟନ୍ତୀଙ୍କର କେଶପାଶ ସହ ମୟୂର କେଶକୁ ବଧାତା ତୁଳନା କରୁ କରୁ ତାଙ୍କ ମନରେ ଅସୁସ୍ଥ ହେବା ହେତୁ ମୟୂରର ବର୍ହ ଦମୟନ୍ତୀଙ୍କ କେଶ ସହିତ ତୁଳନା ନ ହେବାରୁ ରାଗରେ ନିଜ ହସ୍ତରେ ମୟୂର କେଶରେ ଗୋଟାଏ ଧକ୍କା ଦେଲେ । ସେହି ଧକ୍କାର ଚିହ୍ନ ସ୍ୱରୂପ ମୟୂର ପୁଚ୍ଛରେ ଚନ୍ଦ୍ରକା ଦେଖାଯାଉଛି ବୋଲି କବି କଳ୍ପନା କରିଛନ୍ତି ।

ଆହୁରି—ଚିକୁରପ୍ରକରା ଜୟନ୍ତି ତେ
ବିଦୁଷୀ ମୂର୍ଦ୍ଧନି ଯାନ୍ ବିଭର୍ତ୍ତି ସା ।
ପଶୁନାପ୍ୟପୁରସ୍କୃତେନ ତତ୍
ତୁଳନାମିଚ୍ଛନ୍ତୁ ଚମରେଣ କଃ ।

ଦମୟନ୍ତୀଙ୍କ କେଶ ସହିତ ଚମରୀ ମୃଗର ପୁଚ୍ଛ ସମାନ ନ ହେବାରୁ ବିଧାତା କହିଲେ "ରେ ପଶୁ, ତୁ କଦାପି ତୋର ପୁଚ୍ଛ ଯେନି ଦମୟନ୍ତୀର କେଶ ସହ ସମାନ ହୋଇ ପାରବୁ ନାହିଁ ।"

କୃଷ୍ଣରାମଙ୍କ କବିତାରେ ମଧ୍ୟ କେଶର ବର୍ଣ୍ଣନା ଠିକ୍ ପୂର୍ବପରି ଅଛି ।

"ନ ଜୀମୂତ ଚ୍ଛେଦଃ ସହି ଗଗନଗୃଶ୍ୱ ନ ଚ ତମୋ ।
ନ ତପୋଂଯୋ ମୈଧା ନ ଚ ମଧୁକରଶ୍ରେଣ୍ୟପି ମୁଖରା
ନ ପିଚ୍ଛଂ ତତ୍ତ୍ୱ କେକୀ ନ୍ୟୂଚତମପି ତୋୟଂ ନ ଚ ମଣିଃ
ମୃଦୂହୀାନ୍ତ୍ ବର୍ଦ୍ଧିତ୍ୱଂ ଘନଚକୁରପାଶୋ ମୃଗଦୃଶଃ ।

ମେଘ, ଅନ୍ଧକାର, ଭ୍ରମର, ମୟୂରମଣି ଏମାନେ କୌଣସି କୌଣସି ଗୁଣରେ ନାୟିକାର କେଶଠାରେ ନ୍ୟୂନତା ସ୍ୱୀକାର କରୁଅଛନ୍ତି । ତେଣୁ ଏମାନେ ସମାନ ନୁହନ୍ତି । ଭଞ୍ଜ ଏସବୁ କବିତା ପାଠ କରି ଅବିକଳ ଏହି ଭାବ ବର୍ଣ୍ଣନା, ଶବ୍ଦଯୋଜନା ଦେଇ ନିଜର କାବ୍ୟକୁ ସମୃଦ୍ଧ କରିଅଛନ୍ତି ।

ମୁଖ ବର୍ଣ୍ଣନାରେ ମଧ୍ୟ ଭଞ୍ଜ ସଂସ୍କୃତ ସାହିତ୍ୟଦ୍ୱାରା ପ୍ରଭାବିତ ହୋଇଅଛନ୍ତି । ସୁଭଦ୍ରା ପରିଣୟରେ ଭଞ୍ଜ ବର୍ଣ୍ଣନା କଲେ—

ସଙ୍କରଭ ପୁର ହୋଇଲା ଶରୀର ପଦ୍ମ ଯେ ହାରିଲା ମୁଖେ
ସଙ୍ଗ ତୋ ମୁଖେ ବୁଡ଼ାଇ କି ତା ଦୋଷ ଛଡ଼ାଇ ବହିଲା ସୁଖେ ।

ମୁଖର ସୌରଭରେ ସମାନ ନ ହୋଇ ପଦ୍ମ ହାର ମାନି ଜଳରେ ବୁଡି ତା ଦୋଷ ପ୍ରକ୍ଷାଳନ କରୁଛି ।

ଦମୟନ୍ତୀଙ୍କ ମୁଖ ବର୍ଣ୍ଣନାରେ ଶ୍ରୀହର୍ଷ ଲେଖିଲେ—

ସୁଷମା ବିଷୟେ ପରୀକ୍ଷଣେ
ନିଖିଳଂ ପଦ୍ମମଭଜି ତନ୍ମୁଖାତ୍
ଅଧୁନାପି ନ ଭଙ୍ଗଲକ୍ଷଣଂ ।
ସଲିଲୋନ୍ମଜ୍ଜନ ମୁଜ୍ଝିତଷ୍ଟତ୍ୟମ୍ ।

ସୁଷମା ବିଷୟର ପରୀକ୍ଷା ହେଲାବେଳେ ପଦ୍ମଗୁଡ଼ିକ ଦମୟନ୍ତୀଙ୍କ ମୁଖ ସହିତ ସମାନ ହୋଇ ନ ପାରି ପରାସ୍ତ ହେଲେ । ବର୍ତ୍ତମାନ ମଧ୍ୟ ସେମାନଙ୍କର ପରାଜୟର ଲକ୍ଷଣ ସ୍ୱରୂପ ସେମାନେ ପାଣିରେ ବୁଡ଼ି ନ ରହି ଆଜି ପର୍ଯ୍ୟନ୍ତ ଉପରକୁ ଉଠୁଅଛନ୍ତି ।

ସୀତାଙ୍କ ମୁଖ ବର୍ଣ୍ଣନାରେ ବୈଦେହୀଶ ବିଳାସରେ କବି କହିଲେ—

ବନଜ ଆଦରଣ କି ବାଦ ରଚି ହୁଅନ୍ତେ ଯୋଖ
ବିସ୍ତାରି ଆହା କି ଝଳ ଆହ୍ଲାଦ ସୁବାସ ମୁଖ
ବିଲୋଳ ଚଳ ସୁଧା କଲ୍ଲୋଳ ଲାବଣ୍ୟ ସରିତରେ
ବିକାଶ ହ୍ରାସ କରାଇ ହାସହାସ୍ୟକୁ ନିରନ୍ତରେ ।

ସୀତାଙ୍କ ମୁଖ ସହିତ ପଦ୍ମ ଓ ଦର୍ପଣ ସମାନ ହୋଇ ପାରିଲେ ନାହିଁ ।

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ କବି ଲେଖିଲେ —

ରବିକର କଞ୍ଜ ଛବି ବଦନ
ଦୁଇଗୁଣ କରି ନାହିଁ ସଦନ
କମଳ ଦର୍ପଣ ଚନ୍ଦ୍ର ବଦନା —
ବୋଇଲେ ତେବେ ହେବ ସମ୍ଭାବନା ସେ

ଏ ରୂପ ଲକ୍ଷଣ ଛନ୍ଦ ସେ
କେବଳ ସୁକୃତ ଥିଲାକୁ ଚରଣ ଆଗରେ ପଡ଼ିଛି ପଦ୍ମ ଯେ—

ପଦ୍ମ ତାଙ୍କର ମୁଖକାନ୍ତିକି ସମାନ ନୁହେଁ, କାରଣ ଝଳ ଓ ଆହ୍ଲାଦ ସେଠାରେ ନାହିଁ । ତେଣୁ ସେ ସମାନ ନ ହୋଇ କେବଳ ପୁଣ୍ୟ ଥିବାରୁ ଚରଣ ଆଗରେ ଆସି ପଡ଼ିଛି—(ପଦ୍ମ ସମାନ ପାଦ ) ଦର୍ପଣ ମଧ୍ୟ ସମାନ ନୁହେଁ । ଏହିପରି ମୁଖ ବର୍ଣ୍ଣନା ସମଗ୍ର ଭଞ୍ଜ ସାହିତ୍ୟରେ ପରିଦୃଷ୍ଟ । ପୁଣି ନାୟିକାର କାନ୍ତି ବର୍ଣ୍ଣନାରେ ମଧ୍ୟ ନିଜର ଦକ୍ଷତା ଫୁଟାଇ ଅଛନ୍ତି । ଲାବଣ୍ୟବତୀରେ ସେ ବର୍ଣ୍ଣନା କଲେ—

ଶୁଣ ରସିକେ ନବ ଯଉବନୀ; ହୋଇ ବନିତା ମଣ୍ଡିଲା ଅବନୀ ।
ଏଣୁ ଉପମାଗଣେ ନିରନ୍ତର, କି କରିବା ଭାବି ହେଲେ କାତର ।
ଝଳ କାନ୍ତିରେ ଲଭିଣ ଖିଡକ, କଲା କଣ୍ଟକ ଦୁର୍ଗକୁ କେତକୀ ।
ନାସାପୁଡ଼ା ଫୁଲବାର ଅନାଇଁ, ଷପା ବନ୍ଦେ ଶୁକ ମନ ମନାଇ ।

ସୀତାଙ୍କ କାନ୍ତି ବର୍ଣ୍ଣନାରେ କବି ତାଙ୍କ ବୈଦେହୀଶ ବିଳାସରେ କହିଲେ—

"ବିଗ୍ରହକାନ୍ତି କି ଝଟକନ୍ତି କନକ ଅନାଇଲା
ବାନବଢ଼ାଇ ଅଗ୍ନିରେ ଦଗ୍ଧ ଶିଳେ କଷାଇ ହେଲା
ବଣିକଶ୍ରେଣୀ ଅସମ ଜାଣି ହେଲେ ପ୍ରହାରଦାନୀ
ବସାଇ ତୁଲେ ରତି ଏ ବୋଲେ ତେତିକି ଲକ୍ଷ୍ୟ ଘେନି ।"

ସୀତାଙ୍କ କାନ୍ତି ସହିତ ସମାନ ହେବାପାଇଁ କନକ ଇଚ୍ଛା କଲା । କିନ୍ତୁ ସମାନ ନ ହୋଇ ଅଗ୍ନିରେ ନିତି ଦଗ୍ଧ ହେଉଛି । ଖାଲି ଏତିକି ନୁହେଁ, ବଣିକ-ଶ୍ରେଣୀ ତାକୁ ଅସମାନ ଜାଣି ଶିଳଓର ବସାଇ ପ୍ରହାରଦାନୀ ହେଲେ । ତାପରେ

ସେ ମାଝ ରଚିଏ ଏହା କହି ତାକୁ ତୁଚ୍ଛ କରିଦେଲେ । ଲାବଣ୍ୟବତୀର କାନ୍ତି ସହ ସମାନ ହେବା ପାଇଁ ଉପମାମାନଙ୍କର ସ୍ୱଳେଣି ପଡ଼ିଲା— କେତକୀ ବଳୁଷୀ ଭସ୍ମ କରି କଣ୍ଟକ ଦୁର୍ଗକୁ ଆଶ୍ରା କଲା ।

ଭଞ୍ଜଙ୍କଦ୍ୱାରା ପ୍ରଭାବିତ ହୋଇ ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତସିଂହାରଙ୍କ ଶୋଭା ଓ କାନ୍ତି ବର୍ଣ୍ଣନାରେ ଭଞ୍ଜଙ୍କୁ ଅନୁସରଣ କରିଅଛନ୍ତି । ଅବଶ୍ୟ ସେ ନିଜେ ତାହା ସ୍ୱୀକାର କରି କହିଛନ୍ତି—

"ଉପରିନ୍ଦ୍ର ପଦ ଅଭିମନ୍ୟୁ ମନୁ,
ଉପେକ୍ଷା ସେ ନୋହିବ ତ ବନ୍ଦନୁ ।"

ସେ ଲେଖିଲେ—

ଉପମାମାନେ ଅପମାନେ ପଡ଼ିଲେ, ସୁଷମା ସମ ନୋହିବାରେ
ରମା, ଉମା, ରତି, ବାଣୀ ଆଣି ଖ୍ୟାତି ହୋଇଲା ନାମ ଆଶ୍ରୟରେ—
କାନ୍ତିକି, ଅଲକ୍ଷରେ ଥିଲା ଚମ୍ପକ
କେତକୀ କଣ୍ଟକୀ ଦୁର୍ଗେ ଆଶ୍ରେ କଲା
ଅଗ୍ନିରେ ଦାହିଲା କନକ ।

ନନ୍ଦନ ଆନନ ହାସବାସ ବାହୁ କର ଚରଣ ଉଦରକୁ
ଉପମା ଆଶ୍ରୟେ କବି ଛୁ ଛୁ ସ୍ୱୟେ ମନ ଯେହ୍ନେ ଭ୍ରମରକୁ
ପଙ୍କଜ, ତାପକୁ ସାଧିଲା ବିଷମେ ।
ଜଳ ପ୍ରବଳରେ ବଳେ ବୁଡ଼ିଗଲା ମାନରେ ଧନ୍ୟ କଲେ ହିମେ ।

ଏହିପରି ଅନେକ ଉଦାହରଣ ଦିଆଯାଇ ପାରେ । ପୂର୍ବରୁ କୁହାଯାଇଛି ଯେ, ଖାଲି ଅଭିମନ୍ୟୁ ନୁହନ୍ତି, ଊନବିଂଶ ଶତାବ୍ଦୀର ଅଧିକାଂଶ କବି ଭଞ୍ଜଙ୍କ ପ୍ରଭାବରେ ପ୍ରଭାବାନ୍ୱିତ । ତାଙ୍କର କବି କଳ୍ପନା ଓ ଦିବ୍ୟଦୃଷ୍ଟି ବଳରେ ତାଙ୍କ ସାହିତ୍ୟକୁ ସରସ, ସୁନ୍ଦର ଓ ସାବଲୀଳ କରିଅଛନ୍ତି । ତାଙ୍କର ବହୁତୋମୁଖୀ ପାଣ୍ଡିତ୍ୟ, ବର୍ଣ୍ଣନା କୁଶଳତା, ଭାଷା ପ୍ରୟୋଗରେ ବିଚକ୍ଷଣତା, ଅଳଙ୍କାର ଧୁରୀଣତା, ସଂସ୍କୃତ ସାହିତ୍ୟରେ ତାଙ୍କର ଅପ୍ରତିଦ୍ୱନ୍ଦ୍ୱୀ ପାଣ୍ଡିତ୍ୟ ତାଙ୍କୁ କବି ସମ୍ରାଟ ଆଖ୍ୟାରେ ଆଖ୍ୟାୟିତ କରିଛି । ତାଙ୍କର କାବ୍ୟକବିତା ପାଠକ ଗୋଷ୍ଠୀଙ୍କୁ ମୁଗ୍ଧ ଓ ଚମତ୍କୃତ କରେ । ଜଣେ ସମାଲୋଚକଙ୍କ ମତରେ "ନାନାପ୍ରକାର ରସର ସନ୍ଧାନ କରିବାପାଇଁ" ଆମକୁ ଭଞ୍ଜ ସାହିତ୍ୟ କାନନରେ ପାଦ ଦେବାକୁ ହୁଏ । କାନନରେ କୁସୁମ ଫୁଟେ,

କଣ୍ଟା ମଧ୍ୟ ଥାଏ । ବିଶେଷତଃ ଉପେନ୍ଦ୍ରଙ୍କ ସାହିତ୍ୟ,କାନନରେ କଣ୍ଟା ଅନେକ ଫୁଟେ । ସେଗୁଡ଼ିକ କେବଳ ଆମ ଜ୍ଞାନଦରିଦ୍ରତାକୁ ବିଦ୍ଧକରେ । ପୁଣି ସେହି ଜ୍ଞାନର ଜାଗରଣରେ ସେହି କଣ୍ଟାକୁ କାଢ଼ି ଦେବାକୁ ହୁଏ, କିନ୍ତୁ ଏହି ପ୍ରକାର କଣ୍ଟକର ବିଦ୍ଧ-ବହିଷ୍କରଣ କ୍ରିୟାରେ ଲଭ ହୋଇଥାଏ ଅପୂର୍ବ କାବ୍ୟାନନ୍ଦ । ତାଙ୍କ କାବ୍ୟ ସମ୍ପଦର ଉନ୍ନତ ଭାବଧାରା ଏବଂ ରସର ବିଚିତ୍ର ପ୍ରସ୍ରବଣ ପାଖରେ ପହଞ୍ଚି ମାନବାତ୍ମା ଚିର ଯେଉଁ ଆନନ୍ଦର ଅର୍ଚ୍ଚନା ଲଭ କରେ, ତାହା ହୁଏ ଅନବଦ୍ୟ ଶ୍ଲାଘ୍ୟ ।”



# ଭଞ୍ଜ ସାହିତ୍ୟରେ ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ସର୍ବାଗ୍ରେ କବିକୁଳକଞ୍ଜ ଭଞ୍ଜଙ୍କ ଉପରେ ପାଠକର ଦୃଷ୍ଟି ପଡ଼େ । ଉତ୍କଳ ଭାରତୀଙ୍କ ବରପୁତ୍ର ରୂପେ ଭଞ୍ଜ ତାଙ୍କ ଅମର କାବ୍ୟାବଳୀ ଦ୍ୱାରା ଉତ୍କଳସାହିତ୍ୟ ଭଣ୍ଡାରକୁ ଚିରଦିନ ସକାଶେ ଦୀପ୍ତ ଓ ସମୃଦ୍ଧ କରିଯାଇଅଛନ୍ତି । ଉପଯୁକ୍ତ ଗବେଷକ, ବିଚକ୍ଷଣ ତତ୍ତ୍ୱପ୍ରଖ୍ୟାପକ, ଅଧ୍ୟବସାୟୀ ଓ ଉଚ୍ଚ-କୋଟୀର ସାଧକ ହିଁ ଭଞ୍ଜ ସାହିତ୍ୟର ମର୍ମମନ୍ଥନ କରି ଅପୂର୍ବ ରସ ଉପଲବ୍ଧି କରିପାରିବ । ମନେହୁଏ ଜୀବନବ୍ୟାପୀ ଘୋର ସାଧନାରେ ମଧ୍ୟ ଜଣେ ପାଠକ ସମଗ୍ର ଭଞ୍ଜ ସାହିତ୍ୟକୁ ଆୟତ୍ତ କରି ତାର ଭାବପ୍ରକଟନରେ ସମର୍ଥ ହେବ ନାହିଁ । ଏତେ ବିରାଟ ଓ ବ୍ୟାପକ ସେ ସାହିତ୍ୟ । ଭାବ ଭଣ୍ଡାର ସୁମହାନ୍ ପ୍ରକାଶ ତାଙ୍କ ସାହିତ୍ୟରେ ସୁଲଭ । ଶବ୍ଦ ଯୋଜନା ଓ ରଚନାକୌଶଳ ଭଞ୍ଜସାହିତ୍ୟର ଚୂଡ଼ାନ୍ତ ସ୍ପର୍ଶ କରିଛି । ଭଞ୍ଜ ଓଡ଼ିଆ ସାହିତ୍ୟରେ କାହିଁକି, ବିଶ୍ୱସାହିତ୍ୟରେ ଜଣେ ସର୍ବଶ୍ରେଷ୍ଠ ଶାବ୍ଦିକ ଓ ଆଲଙ୍କାରିକ । ଅନେକ ସମାଲୋଚକ ପ୍ରେମାଳାପ ଓ ରତି ବର୍ଣ୍ଣନା ପ୍ରସଙ୍ଗରେ ତାଙ୍କୁ କଠୋର ଭାବରେ ସମାଲୋଚନା କରନ୍ତି । ସେମାନଙ୍କ ମତରେ ବିଶ୍ୱସାହିତ୍ୟକୁ ଦାନ ଦେଲାଭଳି ସାମଗ୍ରୀ ଭଞ୍ଜ ସାହିତ୍ୟରେ ନାହିଁ । ବିଶ୍ୱଜନୀନ ଭାବ ସେ ସାହିତ୍ୟରେ ଦୁର୍ଲଭ । ସେ ସାହିତ୍ୟ ଚିରନ୍ତନ ସାହିତ୍ୟ ନୁହେଁ । ତାହା କାଳର ସୀମା, କିନ୍ତୁ କଲ୍ପର ନୁହେଁ । ସର୍ବଶ୍ରେଣୀର ନରନାରୀଙ୍କ ହୃଦୟରେ ସେ ସାହିତ୍ୟ ତାର ଦୃଢ଼ ଆସନ ପ୍ରତିଷ୍ଠିତ କରିପାରି ନାହିଁ । କିନ୍ତୁ ଅଭିନିବେଶ ସହକାରେ ଅନୁଧ୍ୟାନ କଲେ ଉକ୍ତ ସମାଲୋଚନା ଯେ ଅନ୍ତଃସାରଶୂନ୍ୟ, ତାହା ଅତି ସହଜରେ ପ୍ରତୀୟମାନ ହେବ । ଯେଉଁ ପରିବେଶରେ ଭଞ୍ଜ ସାହିତ୍ୟର ଜନ୍ମ, ଯେଉଁ ପରମ୍ପରାରେ ସେ ସାହିତ୍ୟ ପରିବର୍ଦ୍ଧିତ ଓ ପରିମାର୍ଜିତ, ଯେଉଁ ଆଦର୍ଶରେ ସେ ସାହିତ୍ୟ ପ୍ରତିଷ୍ଠିତ, ତାହା ଅତି ଉତ୍ତମରୂପେ ହୃଦୟଙ୍ଗମ ନ କଲେ ତାର ସ୍ୱରୂପ ନିର୍ଣ୍ଣୟ କରିବା ଅସମ୍ଭବ । ଯୁଗଧର୍ମର ଅପରିହାର୍ଯ୍ୟ ପ୍ରଭାବ ତାଙ୍କୁ ଅନୁରୂପ ସାହିତ୍ୟ ସୃଷ୍ଟି କରିବାରେ ଯଥେଷ୍ଟ ପ୍ରେରଣା ଦେଇଥିଲା । ଭଞ୍ଜ ସଂସ୍କୃତ ସାହିତ୍ୟର ଶ୍ରେଷ୍ଠ କାବ୍ୟ, ନାଟକ ଓ ଅଳଙ୍କାରାଦି ଗ୍ରନ୍ଥ ସମ୍ୟକ୍ ଅଧ୍ୟୟନ କରି ସେହି ଆଦର୍ଶରେ ନିଜ ସାହିତ୍ୟର ଭିତ୍ତି ପକାଇବାକୁ ମନ ବଳାଇଥିଲେ । ଭାବ ଭାଷାର ଅପୂର୍ବ ସମନ୍ୱୟ, ଶବ୍ଦବିନ୍ୟାସର ପରିପାଟି ଓ ଶବ୍ଦାର୍ଥର

ଉପଯୁକ୍ତ ସ୍ଫୁରଣ ତାଙ୍କ ସାହିତ୍ୟକୁ ସରସ, ସୁନ୍ଦର ଓ ହୃଦ୍ୟ କରିଅଛି । ସେ ଯୁଗରେ ଶବ୍ଦାର୍ଥର ମିଳନ ଓ ପଦବନ୍ଧର ଆଦର୍ଶ କିପରି ଥିଲା, ତାହା ନିମ୍ନୋକ୍ତ ସଂସ୍କୃତ ଶ୍ଳୋକରୁ ପ୍ରତୀୟମାନ ହେବ । ଏକାବଳୀରେ ଲିଖିତ ଅଛି—

"ଶାଣୋଲ୍ଲୀଢମିବୋଜ୍ଜ୍ୱଳଦ୍ୟୁତିପଦଂ ବନ୍ଧୋଽଦ୍ଧିନାଥେଶ୍ୱର-
ଶ୍ଲାଘାଲଂଘନ କାଂଘିକଃ ଦବ ଲସତ୍ ଭିନ୍ନାର୍ଥବାଗ୍‌ଗଂଗଢଃ
ଇଷତ୍ ପୀଡ଼ିତ ଚନ୍ଦ୍ରମଣ୍ଡଳଗଳତ୍ ପୀୟୂଷହୃଦ୍ୟୋରସଃ
ତତ୍‌କିଞ୍ଚିତ୍ କବିକର୍ମମର୍ମନିପୁଣଂ ବଗ୍‌ଭର୍ତ୍ତି ମାଡ଼ମ୍ବରମ୍ ।"

ଶାଣରେ ଉଲ୍ଲୀଢ଼ ହୋଇଥିବା ଉଜ୍ଜ୍ୱଳ ହୀରାଖଣ୍ଡ ଭଳି କାନ୍ତିଳମାନ ପଦବନ୍ଧ ଇଶ୍ୱର ପାର୍ବତୀଙ୍କର ଦୃଢ଼ ବନ୍ଧନ ଅପେକ୍ଷା ଆହୁରି ସୁନ୍ଦର ଓ ଦୃଢ଼ ହୋଇଥିବ । ଆକାଶରେ ବିଦ୍ୟୁତର ସ୍ଫୁରଣ ଭଳି ବିଭିନ୍ନ ଅର୍ଥ ସେଥିରୁ ସ୍ଫୁରିତ ହେଉଥିବ, ପୀୟୂଷ ପରିପୂର୍ଣ୍ଣ ଚନ୍ଦ୍ରମଣ୍ଡଳକୁ ଈଷତ୍ ପୀଡ଼ା ଦେଲେ ଯେପରି ସେଥିରୁ ଅବିରତ ରସର ଭଣ୍ଡାର ନିର୍ଗତ ହୁଏ, ସେହିପରି କବିଙ୍କ କାବ୍ୟାବଳୀରେ ଥିବା ବାକ୍‌ଶୃଙ୍ଖଳାର ସାମାନ୍ୟ ଆଲୋଚନା ମାତ୍ରେ ରସ ଆସ୍ୱାଦିତ ହୋଇଥାଏ ।

ଭଞ୍ଜ ସାହିତ୍ୟର ଆଉ ଏକ ବୈଶିଷ୍ଟ୍ୟ ହେଉଛି ଶୃଙ୍ଗାର ରସର ସୁସମାବେଶ । ସର୍ବତ୍ର ବହୁଳଭାବରେ ସେ ଆଦିରସର ଅବତାରଣା କରିଅଛନ୍ତି । ତାଙ୍କର ଉଦ୍ଦେଶ୍ୟ ମଧୁର ରସର ପ୍ରକାଶ ଦ୍ୱାରା ପାଠକସମାଜର ହୃଦୟରେ ପ୍ରଚୁର ଆନନ୍ଦ ଖେଳାଇ ଦେଇ ପାରିବେ । ସଂସ୍କୃତ ସାହିତ୍ୟରେ ପ୍ରଧାନ ଅଳଙ୍କାର ଗ୍ରନ୍ଥ ଧ୍ୱନ୍ୟାଲୋକରେ ଅଛି—

"ଶୃଙ୍ଗାର ଏବ ମଧୁରଃ ପରପ୍ରହ୍ଲାଦନୋ ରସଃ
ତନ୍ମୟଂ କାବ୍ୟମାଶ୍ରିତ୍ୟ ମାଧୁର୍ଯ୍ୟଂ ପ୍ରତିତିଷ୍ଠତେ ।"

ଶୃଙ୍ଗାର ଏକମାତ୍ର ମଧୁର ଓ ଶ୍ରେଷ୍ଠ ଆନନ୍ଦଦାୟୀ ରସ । ସେହି ରସ କାବ୍ୟକୁ ଆଶ୍ରୟ କରି ମାଧୁର୍ଯ୍ୟ ଗୁଣକୁ ପ୍ରକାଶ କରେ । ପୁଣି ଭୋଜରାଜ କହିଛନ୍ତି—

"ଶୃଙ୍ଗାରୀ ଚେତ୍ କବିଃ କାବ୍ୟେଜାତଂ ରସମୟଂ ଜଗତ୍
ସ ଏବ ବୀତରାଗଶ୍ଚେତ୍ ନୀରସଂ ସର୍ବମେବ ତତ୍ ।"

ରସମୟ କାବ୍ୟ ସୃଷ୍ଟି କରିବାକୁ ହେଲେ କବିକୁ ଶୃଙ୍ଗାରୀ ହେବାକୁ ପଡ଼ିବ । ସେ ବୀତରାଗ ହେଲେ ସମସ୍ତ ନୀରସରେ ପରିଣତ ହୋଇଯିବ ।

ତେଣୁ ଭଞ୍ଜ ସାହିତ୍ୟରେ ଶୃଙ୍ଗାର ପ୍ରାଧାନ୍ୟ ଲାଭ କରିଛି । ସର୍ବତ୍ର ସେ ରସବାରିଧି ସୃଷ୍ଟି କରି ପାରିଛନ୍ତି । ଭଞ୍ଜ ଯେଉଁଠାରେ ନାୟକ ନାୟିକାର ପ୍ରେମ ବର୍ଣ୍ଣନା କରିଛନ୍ତି, ସେଠାରେ ସେ କୃତକାର୍ଯ୍ୟ ହୋଇଛନ୍ତି । ଭଞ୍ଜ ନାୟିକା ରସିକା, ରହସ୍ୟମୟୀ, ଆନନ୍ଦମୟୀ, ଅବଗୁଣ୍ଠନବତୀ, ବିଦଗ୍ଧା ଓ ପତିପରାୟଣା ଗୃହିଣୀ । ଭଞ୍ଜ ନାୟକ ରସିକ, ପ୍ରେମିକ, ବିଦଗ୍ଧ, ଏକପତ୍ନୀସେବୀ । ଭଞ୍ଜ ନାୟକ ନାୟିକାର ମନସ୍ତତ୍ତ୍ୱ ଅତି ଉତ୍ତମରୂପେ ଅଧ୍ୟୟନ କରିଥିଲେ । ବିଶେଷତଃ ନାରୀମନସ୍ତତ୍ତ୍ୱ ଅଧ୍ୟୟନରେ ସେ ସୁଦକ୍ଷ ଥିଲେ । ନାରୀର ଅଙ୍ଗପ୍ରତ୍ୟଙ୍ଗର ଶୋଭାବର୍ଣ୍ଣନାରେ କବି ଅତି ସୁଦକ୍ଷ ଥିଲେ । କବିର ଅଧିକାର ଅଛି ସେ ନାରୀର ଅଙ୍ଗ ପ୍ରତ୍ୟଙ୍ଗର ସୌନ୍ଦର୍ଯ୍ୟ ବର୍ଣ୍ଣନା କରି ପାରିବ । ଏହା ଶାସ୍ତ୍ରୋକ୍ତ ପ୍ରାକୃତ ସପ୍ତଶତୀରେ ଅଛି—

"ଯସ୍ୟ ଯତ୍ରୈବ ପ୍ରଥମଂ ତସ୍ୟା ଅଙ୍ଗେ ନିପତିତାଦୃଷ୍ଟି
ତସ୍ୟ ତତ୍ରୈବ ସ୍ଥିତା ସର୍ବାଙ୍ଗଂ କେନାପି ନ ଦୃଷ୍ଟାଂ ।"
( ପ୍ରକୃତର ସଂସ୍କୃତ ଟୀକା ଶ୍ଳୋକ )

ଯେଉଁ ଯେଉଁଠାରେ କବିର ଦୃଷ୍ଟି ପଡ଼ିବ, ସେ ସେ ସ୍ଥାନ ବର୍ଣ୍ଣନା କରିବାରେ କବିର ଅଧିକାର ସ୍ୱୀକାର୍ଯ୍ୟ, ଏଥିରେ କୌଣସି ଅପରାଧ ନାହିଁ ।

କବିସମ୍ରାଟଙ୍କ ରଚିତ ସାହିତ୍ୟର ଗୋଟିଏ ଗୋଟିଏ ଦିଗ ଆଲୋଚନା କଲେ ତାଙ୍କ ବହୁମୁଖୀ ପ୍ରତିଭାର ପରିଚୟ ମିଳେ । ତାଙ୍କ ସାହିତ୍ୟର ରାଜ୍ୟ ପାଳନା, ନାଗରିକ ଜୀବନ ଓ ଜ୍ୟୋତିଷଶାସ୍ତ୍ରର ଅବତାରଣା, ଅଳଙ୍କାର, ରସ ଭୂଗୋଳ, ପ୍ରକୃତି ବର୍ଣ୍ଣନା, ସନ୍ଧ୍ୟା ଓ ପ୍ରଭାତ ବର୍ଣ୍ଣନା ପାଠ କଲେ କବିଙ୍କ ଅସାମାନ୍ୟ ପାଣ୍ଡିତ୍ୟ ଓ ବହୁଶାସ୍ତ୍ରଦର୍ଶିତାର ପରିଚୟ ମିଳେ ।

ଭଞ୍ଜ ନିଜର ଅଦ୍ଭୁତ କଳ୍ପନାବିଳାସ ଦ୍ୱାରା ଅପରୂପ କାବ୍ୟସୌଧ ନିର୍ମାଣ କରି ଯାଇଛନ୍ତି । ତାଙ୍କ କାବ୍ୟରେ ସନ୍ଧ୍ୟା ଓ ପ୍ରଭାତବର୍ଣ୍ଣନା କିପରି ଭାବରେ ସନ୍ନିବେଶିତ ହୋଇଛି, ତାହାହିଁ ଉଦ୍ଧାର କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । କବିସମ୍ରାଟ କ ପ୍ରକୃତି ବର୍ଣ୍ଣନା, କି ସନ୍ଧ୍ୟା ତଥା ପ୍ରଭାତବର୍ଣ୍ଣନା ସବୁଥିରେ ଶୃଙ୍ଗାର ରସ ସାହାଯ୍ୟରେ ମଧୁର ରସର ସନ୍ଧାନ ଦେଇଯାଇଅଛନ୍ତି ।

କୋଟିବ୍ରହ୍ମାଣ୍ଡସୁନ୍ଦରୀରେ ଭଞ୍ଜ କିପରି ଭାବରେ ପ୍ରଭାତ ବର୍ଣ୍ଣନା କରିଛନ୍ତି, ତାହା ନିମ୍ନୋକ୍ତ ଉଦାହରଣରୁ ପ୍ରତୀୟମାନ ହେବ ।

ହେଲା ନିଶି ନାଶ ଗଲା ଦିଶି ଦିଶି କି ପ୍ରାଚୀ ନାଗରୀବର
ନୀଳଶାଢ଼ୀ ଛାଡ଼ି ଅରୁଣ ସରାଗେ ପିନ୍ଧିଲା ଲୋହିତାମ୍ବର

କ ଝଳ, କଂଜୁଁ ଉଡ଼ିଯିବା ଇଚ୍ଛୁଁ ଅଳ ।
ସେହି ପଦ୍ମ ସୁରସଶାଳୀ—କାନ୍ତ ଉପରକୁ ଦେଲା ତାଳ (୧)

ତାଙ୍କର ଏକାଧାରରେ କବିତ୍ୱ, ରସିକତା, ସୌନ୍ଦର୍ଯ୍ୟବୋଧ ଓ ପ୍ରକୃତପ୍ରୀତି ଫୁଟି ଉଠିଛି । ରାତି ପାହିଲାରୁ ତାରାମାନେ ଦିଶିଲେ । ପ୍ରାଚୀ ନାୟିକାର ନୀଳଶାଢ଼ୀ ଛାଡ଼ି ଅରୁଣ ସୁରଙ୍ଗ ଲୋହିତାମ୍ବର ପିନ୍ଧିଲା— କେଡ଼େ ଶୋଭା ଦିଶିଲା ! ଅଳି ପଦ୍ମରୁ ଉଡ଼ିଯିବାକୁ ଇଚ୍ଛା କରନ୍ତେ ବୋଧ ହେଲା ଯେ ସେହି ପଦ୍ମ ସୁରସଶାଳୀ ରସିକ କାନ୍ତ ସୂର୍ଯ୍ୟ ଉପରକୁ ଭ୍ରମରରୂପକ ଡୋଳା ତାଳ ଗୁଡ଼ିଲା କି ? ଏହିକରେ ଭଞ୍ଜ ପ୍ରାକୃତିକ ଚିତ୍ର ଦେଲେ । ତା' ପରେ ଆସିଲା ଅନ୍ୟାନ୍ୟ ଚିତ୍ର । ବିଶେଷତଃ ପ୍ରଭାତକାଳରେ ମାନବ ସମାଜ ଓ ବିହଙ୍ଗମ ସମାଜରେ ଯା କି ଅବସ୍ଥା ସୃଷ୍ଟି ହୁଏ, ତାର ଗୋଟାଏ ଜୀବନ୍ତ ଚିତ୍ର ଭଞ୍ଜ ଦେବାକୁ ଚେଷ୍ଟା କଲେ । କବି ଲେଖିଲେ—

"ଭୁଜଙ୍ଗ ଅଙ୍ଗ ଦଗାଦ୍ରି ସୁରନ୍ଦରନାଦ ଦରପ୍ରଦ ହୋଇ
ଭୁଜଙ୍ଗ ବନ୍ଧକୀ ବନ୍ଧ ସଂଯୋଗକୁ ଚକ୍ରଯୁଗେ ଗଲେ ଥୋଇ
ସେ ଧନ୍ୟ, ତାଙ୍କଠାରୁ ଘେନଗଲେ ଭିନ୍ନ ।
ବେନି ପ୍ରୀତି କେବେ ନୋହେ ଭିନ୍ନ—ଏହିମତି ପ୍ରୀତି ରାତ୍ର ଦିନ ।୨।

କୈଳାସ ପର୍ବତରେ ଶଙ୍ଖଧ୍ୱନି ହେଲାରୁ ତାହା ଭୟପ୍ରଦ ହେଲା । ବିଟ ପୁରୁଷ ଓ ବିଟପୀ ସ୍ତ୍ରୀ ସେମାନଙ୍କର ମିଳନ ଅବସ୍ଥାକୁ ଚକ୍ରବାକ ଚକ୍ରବାକୀଠାରେ ରଖି ଦେଇଗଲେ (ଦିନରେ ସେମାନଙ୍କର ମିଳନ, ରାତ୍ରରେ ବିଚ୍ଛେଦ ) । ତେଣୁ ସେ ଧନ୍ୟ ହେଲେ । ବିଟପ-ବିଟପୀ, ଚକ୍ରବାକ ଚକ୍ରବାକୀଠାରୁ ବିଚ୍ଛେଦଭାବକୁ ଘେନଗଲେ । ଏମାନଙ୍କର ପ୍ରୀତି କେବେ ଭିନ୍ନ ନୁହେଁ । ପ୍ରତିଦିନ ରାତ୍ରରେ ଏହିପରି ସେ ତାଙ୍କୁ ପୁଣି ତାଙ୍କଠାରୁ ନେଉଅଛନ୍ତି ।

ଏଣିକି ବିଭିନ୍ନ ପ୍ରକାର ନାୟିକାଙ୍କର ଅବସ୍ଥା ବର୍ଣ୍ଣନା କରାଯାଇଛି ।

"କୁକୁଟ କୁଟ ରଟରେ ପଳାୟିତ ଚଉର ଅଭିସାରିକା
ଲଭିଲା ଧନ ଚନ୍ଦ୍ର ବର୍ଣ୍ଣ ଲୁଚ୍ଛିଇ ନିଶାଦରେ କରି ଦକା
ସେ ଭଲେ; ତାରା ବାସକସଜ୍ଜା ଯୁଗଳେ;
ପ୍ରଭାବତୀ ମ୍ଳାନୀ ଏକାବେଳେ, ଭଲ ଘେନାଘେନ ହୋଇଥିଲେ । ୨

କୁକୁଟମାନଙ୍କର କୁଟରଟନରେ ଅଭିସାରିକା ନାରୀ ଚୋରପରି ପଳାଇଲେ । ଚୋର ଧନ ନେଇ ପଳାଇଲା ପରି ଏମାନେ କାନ୍ତଠାରୁ ପ୍ରାପ୍ତ ନଖକ୍ଷତାଦି ଚନ୍ଦ୍ରସ୍ୱରୂପ ଧନକୁ ପାଇ ପଳାଇଲେ । ନିଶାଦର ଅର୍ଥାତ୍ ଚଉକିଆକୁ ଚୋର ଭୟ କଲାପରି ଏମାନେ

ମଧ୍ୟ ନିଶାଚରଙ୍କୁ ଭୟ କଲେ । ଏ ନାୟିକା ଭାଗ୍ୟଙ୍କେ ତୁଳନୀୟ । ତାର ଶ୍ରିୟରେ ପ୍ରଜ୍ଞାବନ୍ତି; ମାତ୍ର ଦିନରେ ମ୍ଳାନ ଭଜେ । ପୁଣି —

ଗୃହକପୋତ ହୁଂକୃତେ ପଥକୋଳୁଁ ନବୀନା ସଙ୍ଗମା ଯାଇ
ଦେଖଇ କର ଆଦର ଆଦରଣେ ସ୍ନେହ ଲଜ୍ଜା ଉପୁଜାଇ
ସେ ବାଳୀ, ଦେଖି ଗଣ୍ଡପର ଶୋଭାବଳୀ;
ଚୁମ୍ବ ଦେବ କ ପୋଛିବ ଭଲି
ଛନ୍ନଚଛି, ମିଳିବାକୁ ଆଳି —

କ ରସମୟ କବିତା ଏ । ଅର୍ଥ ସହଜ ସୁସ୍ପଷ୍ଟ । । ପୁଣି—

ଦ୍ୱାର ଶୀତଳରୁ ବିପ୍ରଲବ୍ଧା ଖରୁ ଯାଚକ କୃପଣଦ୍ୱାରୁ
ନିଗ୍ରଣ ପାଇ ମୀରଶ୍ୱାସକୁ ପକାଇ ବାହୁଡ଼ାଇ ସଙ୍କେତରୁ
ସେ ତହିଁ, ସଙ୍ଗେ ପ୍ରବୁଷ ବଚନ କହି;
ଅଷ୍ଟମଙ୍ଗଳା ବର ମୋ ସେହି
ମୋତେ କ କଲା ଆଶା ଦେଖାଇ ।

ଏଠାରେ କବି ଗୋଟାଏ ସାମାଜିକ ଚିତ୍ର ଦେଇଛନ୍ତି । ଅଷ୍ଟମଙ୍ଗଳା ଦିନ କନ୍ୟା ବରର ମୁଖ ଦେଖେ ନାହିଁ । କେଣ୍ଟି ବର ସେଦିନ କନ୍ୟା ପିତାଘରୁ ବାହାରିଆସେ ।

ମନ୍ଦ ଶବଦେ ସ୍ତବଧ ମନ୍ଦେ ମନ୍ଦେ ସ୍ଥାନକୁ ବିଧି ବାହାର
ପିଣ୍ଡର ଥିଲା ପଥିକ ଭାବେ ମଛି ହେବାରୁ ହୃଦ ତାହାର
ମୁଁ ମଲି; କେଉଁ ବୁଦ୍ଧିରେ ବିଦେଶ କଲି,
ପ୍ରିୟା ଏ ଶୋଭାକୁ ନ ଦେଖିଲି; ତାକୁ ମନମଥ ଶରେ ଦେଲି ।

ଉପଯୁକ୍ତ ରାଗ ପ୍ରୟୋଗରେ ଏ ଛାନ୍ଦ ଅତୀବ ମନୋଜ୍ଞ ହୋଇଅଛି । ଭଞ୍ଜ ସମାଜର ଏକ ବାସ୍ତବ ଚିତ୍ର ଦେବାକୁ ପ୍ରୟାସୀ ହୋଇଅଛନ୍ତି । ରାଗ ସାହାଯ୍ୟରେ ଏ ଛାନ୍ଦ ଗୀତ ହେଲେ ହୃଦୟରେ ଅସୀମ ଆନନ୍ଦ ଜାତ କରେ ।

ରସପଞ୍ଚକରେ ମଧ୍ୟ ଭଞ୍ଜ ଅନୁରୂପ ପ୍ରଭାତବର୍ଣ୍ଣନା କରି ଅଛନ୍ତି—

ପ୍ରାତ ବର୍ଣ୍ଣନ ଶୁଣ ରସିକମାନେ
ପ୍ରତକ୍ଷଣି ନିବାସ କରିବ ମନେ । ୧ ।
ପ୍ରାନ୍ତ ହୋଇବାରୁ କରି ବିଭାବରୀ
ପରକାଶ ରାଗବନ୍ତ ଆଶା ନାରୀ । ୨ ।
ପ୍ରଭା ମଳିନ ଗ୍ଳାନ ତାରକାରାଜି

ପୂର୍ଣ୍ଣ ମୋଦେ ଦ୍ୱିଜେ ବନ୍ଦି ପଦ ଭଜ । ୩ ।
ପ୍ରକମ୍ପିତ ବିଟପ ପବନ ବହେ
ପୁଷ୍ପବତୀ ଛୁଇଁଲା କୋକିଳ କହେ । ୪ ।
ପଦ୍ମସରେ ଏଣୁକରି ସମଞ୍ଜନ
ପରିମଳ ସୁଶୀତଳ ପ୍ରଭଞ୍ଜନ । ୫ ।
ପଦ୍ମଭବ ଦିବାକର ଯେଣୁ ଦିନ
ପଶେ ନଗ କୋଟେ ତମ କଉଶିକ । ୬ ।
ପଳାଇତ ତରବଣେ ତତପର
ପର ସଦନରୁ ତସକର ଜାର । ୭ ।
ପ୍ରଫୁଲ୍ଲିତ ସରୋଜ ହୋଇଲା ଜାଣି
ପ୍ରମଦରେ ବେଢ଼ି ଉଡ଼େ ଭୃଙ୍ଗଶ୍ରେଣୀ । ୮ ।

ସୁଭଦ୍ରାପରିଣୟରେ ଭଞ୍ଜ ଏକ ପଦରେ ପ୍ରଭାତବର୍ଣ୍ଣନା କରିଛନ୍ତି—

ସବିତା ଏହି କାଳେ ଉଦୟ ଗହ୍ୱରେ ଲୁଚେ ତମନିଚୟ
ହୋଇଲା ଜାତ ଉଲୂକଭୟ—କାକ ଡାକିବ ଯେ ।

ଲାବଣ୍ୟବତୀରେ ଭଞ୍ଜ ଠିକ୍ ସେହିପରି ପ୍ରଭାତବର୍ଣ୍ଣନା କରିଛନ୍ତି । ତାଙ୍କ ବର୍ଣ୍ଣନାରେ କାକ, କପୋତ, ଡାହୁକ, କୁକ୍କୁଟ, ବିଭିନ୍ନ ପ୍ରକାର ନାୟିକା, ବିଟ ପୁରୁଷ ଓ ବିଟପୀ ସ୍ତ୍ରୀ, ପେଚ୍ଚ, ଶଙ୍ଖଧ୍ୱନି, ଚୋର, ଚକ୍ରକଥା ଏମାନଙ୍କର ବହୁଳ ପ୍ରକାଶ ପରିଦୃଷ୍ଟ ହୁଏ । ଅଥଚ ପ୍ରାତଃକାଳୀନ ପ୍ରାକୃତିକ ଶୋଭା, ଅର୍କଦେବଙ୍କ ଉଦୟବୈଚିତ୍ର୍ୟ, ସୁଶ୍ୟାମଳ ଶସ୍ୟକ୍ଷେତ୍ର, ନାନାବିଧ ପୁଷ୍ପର ସୁରମ୍ୟ ବିକାଶ ଦର୍ଶାଇବାରେ ଭଞ୍ଜ ସତେ କି ଉଦାସୀନ ହୋଇ ପଡ଼ିଛନ୍ତି । କବି ଗଙ୍ଗାଧରଙ୍କ ପରି ଭଞ୍ଜ ପ୍ରକୃତି ସହିତ ଏକ ହୋଇ ପାରି ନାହାନ୍ତି । କବି ପ୍ରକୃତିଚିତ୍ରଣରେ ପ୍ରକୃତିର ଆତ୍ମା ସହିତ ଆତ୍ମାରମିଳନ ନ ଘଟାଇ ରୂପ ସହିତ ରୂପର ମିଳନ ଘଟାଇ ଅଛନ୍ତି । ଲାବଣ୍ୟବତୀରେ ଭଞ୍ଜ କହିଛନ୍ତି—

ଏଥୁ ଅନନ୍ତରେ ଯେ ଯାମିନୀ ହେଲା ଶେଷ
ବିଚ୍ଛେଦୀ ଚକ୍ର କାମିନୀ ପାଶେ ପରବେଶ ଯେ
କକୁଭ ପ୍ରାଙ୍ଗଣେ ନିଜ ପତି ବିଜେ ବୁଝି
ପଦ୍ମିନୀ ହସିଲା ଦରମୁକୁଳିତ ହୋଇ ଯେ
ଗର୍ଜି ଭୃଙ୍ଗରାଜ କୁମୁଦିନୀ ପାଶୁଁ ଗଲେ
କୁଳଟା ହଟାକୁ ତାର ପରକାଶ କଲେ ଯେ
ବିଟପୀଙ୍କି ଗୁଡ଼ାଅଛି ନିର୍ଲଜ୍ଜ ସ୍ୱଭାବ
ପରେ ପ୍ରକଟ କଲେ ଆପଣା କଳା ଭାବ ।

ଦୀନକୃଷ୍ଣଙ୍କ ପ୍ରଭାତବର୍ଣ୍ଣନା ଭଙ୍ଗୀ ଅତି ଉତ୍ତମ ରୂପେ ପାଠକର ତଦ୍ଦ୍ୱାରା ପ୍ରଭାବିତ ହୋଇଥିଲେ । ଦୀନକୃଷ୍ଣ ଲେଖିଗଲେ—

କ୍ରମେ ରାତ୍ର ହେଲ ପାହାନ୍ତା କରନ୍ତେ ଏହୁ ଲୀଳା
କୁକ୍କୁଟଧ୍ୱନି ପୂରି ଅବନୀ କଲା ଯେ ଲୋକଙ୍କୁ ଲୋଳା
କୋକିଳ କଳ ଡାକ ଚହଳ ଶୁଭିଲ ସବୁଆଡ଼େ
କାକ ମିଥୁନ ମନୁ ବହନ ବିରହ ଦୁଃଖ ଗୁଡ଼େ
କମ୍ବୁ ଶବଦ ଶୁଭିଲ ଦେବମାନଙ୍କ ନିକେତନେ
କଲେ ବ୍ରାହ୍ମଣମାନେ ପ୍ରସ୍ଥାଣ ସ୍ନାନକୁ ତୋଷମନେ
କଳକୂଜିତ କଲେ କପୋତ ରତିକୂଜିତ ପ୍ରାନ୍ତେ
କୋକକୁ ଡରି କାକବଇରୀ କୋଟେ ପ୍ରବେଶ ହୁଏ
କଟୁଆଳଙ୍କ ତସ୍କରଙ୍କ ପ୍ରଭା ପ୍ରଭାତ ନେଲା
କୁଳଟା ନାରୀ ନିଶାଭିସାରୀ ସଞ୍ଚାର ଭଙ୍ଗି ଗଲା
କେ ବାରନାରୀ ପୁରୁଁ ପ୍ରସର ଚଉକଠିକ ଗୃହୁଁ
କରଇ ଗତ କମ୍ପଇ ଗୁଡ଼ ଗତି ଯିବାରୁ ପାନ୍ଥ
କଉଁ ରସିକ ଧୂପ ମଣିକ ପଲ୍ଲବେ ପଳାଇଲା
କାତରତରେ ବେନି ପାଶରେ କଟାକ୍ଷ ଖେଳାଇଲା
କଉଁ ସୁନ୍ଦରୀ ସୁରତି ସାରି ଜାର ପାଶରୁ ଆସେ
କସ୍ତୀମର୍ଦ୍ଦନ ପଦ୍ମ ସମାନ ଅଙ୍ଗ ନୀରସ ଦିଶେ

ମଥୁରାମଙ୍ଗଳରେ ମଧ୍ୟ ଭକ୍ତଦାସ ଅନୁରୂପ ପ୍ରଭାତବର୍ଣ୍ଣନା କରିଛନ୍ତି ।

ଏଥୁ ଅନନ୍ତରେ ରଜନୀ ଶେଷରେ
ପରଭୃତ ଧୀରେ ଭାଷି
ଶମ୍ଭୁ ଆଳେ କମ୍ବୁ ଶବଦ ଶୁଭିଲା
ଜାଣିଲେ ମଥୁରାବାସୀ
ବାୟସ କୁହିଲା କୁକୁଟ ଡାକିଲା
ଦଶ ଦିଶେ ପରିମଳ
କୁଳବତୀ ଲଜ୍ଜା ପଥ ଆବୋରିଲେ
ଶୁଭିଲା ମୁଖ ଚହଳ
ପୁଣ୍ୟ ପ୍ରାଣୀମାନେ ଯମୁନା ତଟକୁ
ଚଳିଲେ ସ୍ନାହାନ ଅର୍ଥେ
ସ୍ୱୈର ବିଟପୀ ଉଲୂକ ନିଶାଚରେ
ଭୟ ଆରମ୍ଭିଲେ ଚିତ୍ତେ

ମଧ୍ୟ ଯୁଗରେ ଯେତେ ପ୍ରଭାତବର୍ଣ୍ଣନା ପରିଦୃଷ୍ଟ ହୁଏ, ସବୁ ଗୁଡ଼ିକ ଏକପ୍ରକାରର । ସେ ଯୁଗର କବି ପ୍ରକୃତିପ୍ରାଣରେ ମାନବତ୍ୱ ଅର୍ପଣ କରିବାକୁ ପ୍ରୟାସ କରି ନାହାନ୍ତି । ଅଚେତନରେ ଚେତନର ଉପଲବ୍ଧି ସେ ଯୁଗରେ ବିରଳ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ଏତ ଗଲା ପ୍ରଭାତବର୍ଣ୍ଣନାର ଚିତ୍ର । ଭଞ୍ଜ ସ୍ୱକୀୟ ସାହିତ୍ୟରେ ସନ୍ଧ୍ୟାକାଳୀନ ବର୍ଣ୍ଣନା ଅତି ଚମତ୍କାରଭାବରେ ସନ୍ନିବେଶିତ କରିଯାଇଅଛନ୍ତି ।

ରସପଞ୍ଚକରେ ଭଞ୍ଜ ଦିନାନ୍ତ ବର୍ଣ୍ଣନା କରି ନିଜର ମହିମ୍ନସୀ କଳ୍ପନାର ରୂପ-ରେଖ ଦେଇଅଛନ୍ତି । ଭଞ୍ଜ ଲେଖିଲେ —

ଚିତ୍ତକୁ ଦେଇ ଦିନାନ୍ତ— ବର୍ଣ୍ଣନା ଶୁଣ ପଣ୍ଡିତ
ବରୁଣ ଦିଗକୁ ରବି ମଣ୍ଡିଲେ ଯାଇ
ଚଳିତ ରକ୍ତ ଚନ୍ଦନ ନିର୍ମିତ ବୋହିତ ଯେନ
କି ଅବା ଆକାଶ ସିନ୍ଧୁ କୂଳକୁ ପାଇ । ୧ ।

ଚରଣ ତଳର ମଞ୍ଜୁ କି ସେ ଖଟାଇଲା ରଞ୍ଜୁ
ସହଜେ ମହା ଲଙ୍ଗଳ ଅସ୍ତ ପର୍ବତ
ଚହଲ ପକ୍ଷୀଙ୍କ ଗୋଳ ହୁଳହୁଳୀ ପୋତପାଳ
ନାଗର ବନ୍ଧାଣେ ଶୂନ୍ୟପଥେ ଗମିତ । ୨ ।

ଚରମାଚଳର ଜ୍ୟୋତି ଜଗତ୍ ବିଖ୍ୟାତ ଜଗତି
ରବି ରଙ୍ଗାଜୀବ କି ଚର୍ହିଲା ହିଙ୍ଗୁଳେ
ଚଇଁଶ ରଚନ ମାର— କଲା କି ଏଣ୍ଡୁ ରୁଚିର
ଫଗୁଚୂର୍ଣ୍ଣ ପୂର୍ଣ୍ଣ ହୋଇ ଦିଶେ ସଙ୍କୁଳେ । ୩ ।

ଚଣ୍ଡାଳକୁ ଛୁଇଁ ଦିନ ସରସ୍ୱତୀ ଜଳେ ସ୍ନାନ
ସାରି କି ନିଜ ମନ୍ଦିରେ ଉତ୍ସୁକେ ଗମେ
ଚଞ୍ଚୁକୁ ଦ୍ୱିହାନ୍ତ ଜୀର ଷର୍ଗିଲା ଲଭି ଏ ଦର
ସଂସାର ରଙ୍ଗ ହେବାରୁ ଭ୍ରମ ଜନମେ । ୪ ।

ଚରରଙ୍ଗ ପାଟଶାଢ଼ୀ ପିନ୍ଧି କି ଅଛୁ ସଜାଡ଼ି
ବାରୁଣୀ ତରୁଣୀ ଶିବ କି ପଥପ୍ୟରେ
ଚକା ହୋଇ କି ସୁନ୍ଦର ଚତା ଲଲାଟେ ସୁନ୍ଦର
ସବିତାମଣ୍ଡଳ ଦିଶେ ସେହି ପ୍ରକାରେ । ୫ ।

ଚଣ୍ଡାଂଶୁ ଚମ୍ପା ନାଗର ଦିଗଦନ୍ତୀ ସଜପଦର
ମଦନ ହେବାକୁ ତୋର ଜଗଜ୍ଜସ୍ତକୁ
ଚର୍ମ ଲଗୁଡ଼ କାରଣ ଏ ଭ୍ରମେ ମାନନୀଗଣ
ମାନକୁ ଗ୍ରୁଞ୍ଜ ରସିଲେ ଲଭି ଦରକୁ ।

× × ×

ଚକ୍ରବାକୀ ମୁଖେ ଚୁମ୍ବ ଦେଇ ରଥାଙ୍ଗକଦମ୍ବ
ଧ୍ୱନି କରି ଅନ୍ତର ଏ କାଳ ଅନାଇ
ମେରୁ ନେହ ପାଶରୁ ଯେମନ୍ତ ରାହୁ ନାଶରୁ
ଚନ୍ଦ୍ରୁକର ଉପପତି ଝଧୁର ହୋଇ
ଗ୍ରନ୍ଥଙ୍ଗି ପଟ୍ଟବେଶେ ସୁର ମଦେ ନାସା ପୁଂସେ
କେ କେତେ ରୂପେ
ଅବଶେ ବରଚ ରଙ୍ଗ ଚନ୍ଦ୍ରେ ଉପଇନ୍ଦ୍ର ଭଞ୍ଜ
ଯାହାକୁ ବନ୍ଦିଲେ କଞ୍ଜ—
ନେହୀ ସୀତା କରୁଁ ଶିବ ପିନାକ ଭଙ୍ଗ ।

ଉପରୋକ୍ତ ବର୍ଣ୍ଣନାରୁ ଭଞ୍ଜଙ୍କ ସୌନ୍ଦର୍ଯ୍ୟପ୍ରୀତି, ରସିକତା ଓ ଅସାମାନ୍ୟ କଳ୍ପନାବିଳାସର ପରିଚୟ ମିଳେ । ଲବଙ୍ଗବତୀରେ ଭଞ୍ଜ ନିଶିବର୍ଣ୍ଣନାରେ କହୁଛନ୍ତି—

ଏଥୁ ଅନନ୍ତେ ଶୁଣ ରସ ଶୀଘ୍ରମେ ନିଶି ପ୍ରବେଶ
ଉଦୟ ତାରା ଜାବେଶ ହେଲେ ଆକାଶେ
ଚନ୍ଦ୍ର ପୁଷ୍ପ ଚନ୍ଦ୍ର-ନନ୍ଦ ଛେଦନେ ହାରକଚନ୍ଦ
ଫିଙ୍ଗିଛି ତାଡସିଙ୍କିରେ କାମ କ ରୋଷେ ?
ବେଶ ହେବ କ ରାଜବାଳୀ
ସ୍ଫଟିକ ପେଟିରେ କବା କସ୍ତୁରୀ ଦଳି ।
ଆଜ ଚନ୍ଦ୍ର ବରବର କ ହୋଇବ ବରବର କ
ମଲ୍ଲୀମାଳା ଦେଇ ବାନ୍ଧୁ କରଣେ ମଣି
ଏ ବଚନ ସ୍ୱୟମ୍ବର ନାୟିକ ବରଲ୍ଲ ବର
ଏତେକାଳେ ଦେଖାଗଲ୍ଲ ଏକଥା ପୁଣି
ରବକରେ ମହୀମହିଳା । ତାପି ହୋଇଥିଲ୍ଲ କ ଚନ୍ଦନ ଲେପିଲ୍ଲ ।

କି ସୁନ୍ଦର କବିତ୍ୱପୂର୍ଣ୍ଣ ଓ କଳ୍ପନା । ସନ୍ଧ୍ୟାବର୍ଣ୍ଣନାରେ ଭକ୍ତଶିରୋମଣି ବନ୍ଦଗଧ କବି ଅଭିମନ୍ୟୁ ଆହୁରି ଚମତ୍କାରିତା ଦର୍ଶାଇଅଛନ୍ତି ଓ ଭଞ୍ଜଙ୍କଦ୍ୱାରା ପ୍ରଭାବିତ ହୋଇଅଛନ୍ତି ।

କବି ଗାଇଲେ—

"ଏ ଉତ୍ତରୁ ସୁବିଦୂତ   ସାବଧାନେ ଘେନ ରତ
ଜଣିମୁଖେ ଆଗମନ ଦିବସ ଶେଷ
ବାରୁଣୀବିଳାସୀ ରବି   ପୂର୍ବେ ଉଦେ ଶଶିଛବି
ରଙ୍ଗିମା ଶୁକ୍ଲିମା ମନୋହର ପ୍ରକାଶ
ସନ୍ଧ୍ୟାରେ ଶରଦକାଳ । ଋତୁମୁଖଜାତ ଧୃଥ ନାଶି ମଞ୍ଜୁଳ ।
ଚାନ୍ଦସିନ୍ଧିକ ବଳିବ   ବସୁରି କ କାମଦେବ
ମାଣିକ୍ୟ ହାସ୍ତ ରଥାଙ୍ଗ ପେଷି ଦେଇଛି
ବିଯୋଗୀ ସୁଖଦୁଃଖଦ   ସଂଯୋଗୀ ସୁଖଦୁଃଖଦ
ପରସ୍ପରେ ବିରୋଧାଭାସକୁ କରୁଛି ।
ତମ ନାଶନେ ତ ପ୍ରୟୋଗ
ତମେ ପଶେ ତମ୍ଭୁଁ ଆସେ, ଏ କି ସଂଯୋଗ ।
ଦନ୍ତିଦନ୍ତ ସମୁଦ୍‌ଗକ   ପ୍ରବାଳ ଓ କୁଣ୍ଡୀ ଚେକ
ହିଗବନିକ କି ଫେଡ଼ି ଭନ୍ନେ ଥୋଇଛି
ତାର ତାର ତର ମୋତି   ଗୋଟି ଗୋଟି କେ ଗଣନ୍ତି
କରୁଛି ପର୍ୱ ଅମ୍ବରେ ପ୍ରତେ ହେଉଛି ।
ସ୍ଥାନସ୍ଥିତ ନୀଳେନ୍ଦ୍ର ମଣି
ଗୋଟିଏ କି ଭ୍ରମ ଭାବେ କି ହେବ ଗଣି !"

ଏଠାରେ ଚନ୍ଦ୍ରଙ୍କ ଦେହରେ ନୀଳିମାକୁ ନୀଳେନ୍ଦ୍ରମଣି ବା କଳଙ୍କ ରୂପକ ଇନ୍ଦ୍ରନୀଳମଣି ବୋଲି କଳ୍ପନା କରାଯାଇଛି । ମାତ୍ର ଭଞ୍ଜ ସେହି ନୀଳିମାକୁ କଳଙ୍କ ରୂପେ ଗ୍ରହଣ କରି ନାହାନ୍ତି । ଭଞ୍ଜଙ୍କ ମତରେ ଚନ୍ଦ୍ର ରାତ୍ରିରୂପ ନାୟିକାକୁ ଆଲିଙ୍ଗନ କରିବାରୁ ସେ ନାୟିକା ସ୍ତନପ୍ରଦେଶରେ ଥିବା କସ୍ତୁରୀ ଓ ଅନ୍ୟାନ୍ୟ ଚିହ୍ନ ଚନ୍ଦ୍ରଙ୍କ ବକ୍ଷରେ ଲାଗି ରହିଛି । ସେହି କସ୍ତୁରୀର ଚିହ୍ନ ଏପରି କଳା କଳା ଦେଖାଯାଉଛି ।

ଜନକୁ କଲେ ବିନାଶ   ବାରୁଣୀରେ ହେଲେ ବଶ
ଦ୍ୟୁମଣି ଦ୍ୱିଦୋଷ ହେତେ ସିନ୍ଧୁମଜ୍ଜନ
ଜନତାପ ବିନାଶନ   ତମସକୁଳ ଖଣ୍ଡନ
ପୁଣ୍ୟରୁ ମାନ ପାଇଲେ ବିଧୁ ବଦନ
କର କୀର୍ତ୍ତି ଘୋଟିଲା ମହୀ, ରଜତ ସୃଷ୍ଟି ସର୍ଜକ ହେଲା କି ବିହି ।

ଭଞ୍ଜ ସୁଭଦ୍ରାପରିଣୟରେ ସୂର୍ଯ୍ୟାସ୍ତ ଓ ଚନ୍ଦ୍ରୋଦୟର ରମଣୀୟ ଶୋଭା ବର୍ଣ୍ଣନା କରିଅଛନ୍ତି । ଏଠାରେ ଚନ୍ଦ୍ରର କଳଙ୍କକୁ କଳଙ୍କ ବୋଲି କୁହାଯାଇ ନାହିଁ । ରାତ୍ରି ରୂପ

ନାୟିକାକୁ ଆଲିଙ୍ଗନ କରିବାଦ୍ୱାରା ସ୍ତନସ୍ଥିତ କସ୍ତୁରୀ ଓ ଅନ୍ୟାନ୍ୟ ଚନ୍ଦନ ଚନ୍ଦ୍ରଙ୍କ ବକ୍ଷରେ ଲାଗି ରହିଛି ।

ସମାପତ ହେଲା ଦିବସ ସେକାଳେ ସବିତା ମଣ୍ଡିଲେ ଚରମ
ସିନ୍ଧୁ ନବନୀତ ଉଦିତ ହେବାରେ ପୂର୍ବ ଦିଶିଲା ମନୋରମ
ଶୁଣ ସେ କାଳେ; ସୁଲକ୍ଷଣା ଉପକରମ
ସୁରେଶ ନରେଶ ବେନି ରାଜାଙ୍କର ମୋଦ ମାଣିକ୍ୟ ଛନ୍ଦରମ୍ୟ ।। (୧)

ସାରଣୀଯୁଗଳ ଶଙ୍ଖ ହିଙ୍ଗୁଳରେ ଶାଣିତ ହୋଇ ଶୋଭାକର
ସଂକଳିତ ହୋଇ କବା କରିଅଛି ତାହା ସୁରକାମିନୀ ବେନିକର
ସୂକ୍ଷ୍ମ ଉର୍ଦ୍ଧ୍ୱରେ, ସ୍ୱଭାବେ ଊର୍ଦ୍ଧ୍ୱମୁଖ କରି
ଶୂନ୍ୟବଳାସେ ଉଲ୍ଲାସ ଜାତ କରେ ଦେଖିଲେ ଶିଶୁଜନଙ୍କର । (୨)

ସିଂହୀ କରିଣୀ ପ୍ରସବ ଏକାବେଳେ କଲେ କି ନଭ ଅଟବୀରେ
ସାରସ କୁମୁଦବନ୍ଧୁ ଆମ୍ଭେ ବୋଲି ଚହ୍ଲାଇ ହୁଅନ୍ତି ଛବିରେ
ସଂପ୍ରତିତ ଏ ସେକାଳେ ହୁଅନ୍ତି କବିରେ
ସଖୀବେନି କି ଚର୍ଚ୍ଚରୀ ଖେଳୁଛନ୍ତି ମଳୟଜ ରଜ ଅମ୍ବରେ ।। (୩)

ସୁମନମାର୍ଗେ ଏମନ୍ତ ଉପମା ଲଭିଲେ ସେ ତାରା ଝଳକ
ଯୂଥପତି ହରି କରି ଆଲିଙ୍ଗନେ ହୋଇ ମଣ୍ଡିଛୁ କି ପଲଙ୍କ
ସଲେପନ ତା; ଶରୀର କସ୍ତୁରୀ ଝଳକ
ଶଶାବସ୍ତୁଁ ଚନ୍ଦ୍ର ହୃଦରେ ଲଗିଛୁ ନ ଜାଣି ବୋଲନ୍ତି କଳଙ୍କ ।୪।

କି ଚମତ୍କାର କଳ୍ପନାବିଳାସ ! ଧନ୍ୟ କବି ! ଧନ୍ୟ ତୁମର ସୃଷ୍ଟି ଶକ୍ତିମୟୀ କଳ୍ପନା !

ପୂର୍ବରୁ କୁହାଯାଇଅଛି ଯେ, ଭଞ୍ଜ ସଂସ୍କୃତ ସାହିତ୍ୟର ବର୍ଣ୍ଣନା ରୀତି ଦ୍ୱାରା ବିଶେଷ ପରିମାଣରେ ପ୍ରଭାବିତ ହୋଇଥିଲେ । ଏଠାରେ ସଂସ୍କୃତ ସାହିତ୍ୟରେ ରଚିତ ସନ୍ଧ୍ୟା ଓ ପ୍ରଭାତବର୍ଣ୍ଣନାର କେତେକ ଶ୍ଳୋକର ଉଦାହରଣ ନ ଦେଇ ଲେଖକ ରହିପାରୁ ନାହିଁ । କି ସଂସ୍କୃତ କି ଓଡ଼ିଆ ସମସ୍ତ ପ୍ରାଚୀନ ସାହିତ୍ୟର ସନ୍ଧ୍ୟା ଓ ପ୍ରଭାତ-ବର୍ଣ୍ଣନାର ନାୟକ-ନାୟିକାବର୍ଣ୍ଣନା ଓ ନଗରବର୍ଣ୍ଣନା ପ୍ରାୟ ଏକରୂପ । ସନ୍ଧ୍ୟା ବର୍ଣ୍ଣନାରେ ସଂସ୍କୃତ କବି ଉପମନ୍ୟୁ ଲେଖିଲେ—

ସାନ୍ଧ୍ୟରାଗରୁଧିରାରୁଣମାରା ନଷ୍ଟପାତ ରବିମଣ୍ଡଳ
କ୍ରୂରକାଳକରବାଳ ଖଣ୍ଡିତଂ ବାସରସ୍ୟମବଭ୍ରୌ
ସହସୈବ ଶିରୋନୁ (୧)

ସାନ୍ଧ୍ୟକାଳୀନ ଲୋହିତ ବର୍ଣ୍ଣବିଶିଷ୍ଟ ରବିମଣ୍ଡଳର ପ୍ରତିବିମ୍ବ ସମୁଦ୍ର ମଧ୍ୟରେ ପ୍ରବେଶ କରିବାରୁ ମନେହୁଏ ଯେ, କ୍ରୁର କାଳ ଖଡ଼୍‌ଗ ଦ୍ୱାରା ଦିବସର ମସ୍ତକ ଛିନ୍ନ କରିବାରୁ ସତେ ଅବା ଦିବସ ଆଜି ସମୁଦ୍ର ଗର୍ଭରେ ପଡ଼ିଅଛି । (୧)

ପୁନଶ୍ଚ—

ରମ୍ୟତାମୂପଗତେ ନଦ୍‌ନାନାଂ ଲୋହିତାପ୍ୟତି ସହସ୍ର ମରୀଚୌ-
ଆସସାଦ ବିରହସ୍ୟ ଧରନ୍ତୀଂ ଚକ୍ରବାକମିଥୁନାନ୍ୟଭିତାପଃ

(ଭାରବି)

ସୂର୍ଯ୍ୟ ଲୋହିତ ବର୍ଣ୍ଣ ହୋଇ ନୟନର ରମଣୀୟ ହେବା ଅବସ୍ଥାରେ ଧରଣୀକୁ ବିରହରେ ବୁଡ଼ାଇ ଚକ୍ରବାକଦମ୍ପତିମାନଙ୍କର ସନ୍ତାପ ବଢ଼ାଇଲା ।

କଂ ଯୋଗିନୀଯ୍ୟଂ ରଜନୀରଶଂ
ଯାମାଙ୍କବପୁଦ୍ମ ସମୂହଚ
ଯୋଗର୍ଦ୍ଧିମସ୍ୟା ମହିଗାମଲଗ୍ନ-
ମିଦଂ ବଦତ୍ୟମ୍ବରଚୁମ୍ବି କମ୍ବୁ । ସୁଭାଷିତାନି

(ବଲ୍ଲଭଦେବ)

ସନ୍ଧ୍ୟାକାଳର ଶଙ୍ଖଧ୍ୱନିକି ଲକ୍ଷ୍ୟ କରି କବି ଉତ୍ପ୍ରେକ୍ଷା କରି କହୁଛନ୍ତି ଯେ, ଏହି ରଜନୀ କିଏ ଯୋଗିନୀ କି ? ଯେହେତୁ ଏହି ରଜନୀ ନିଜର ଯୋଗବଳରେ ପରସ୍ପର ବିରୋଧୀ କାମର ଜୀବନଦାନ ଆଉ ପଦ୍ମମାନଙ୍କର ମୋହ ରୂପ ଦୁଇଟି କାର୍ଯ୍ୟ ନିଜର ବଡ଼ ଯୋଗବିଭୂତି ଦ୍ୱାରା ସମ୍ପାଦନ କରୁଅଛି । ଏହି କଥା ଆକାଶଚୁମ୍ବୀ ଶଙ୍ଖ ସତେ ଯେପରି କହୁଅଛି । ତୁଳନା ତେତେ ସୁଖକର ନୁହେଁ ।

ପ୍ରଭାତକାଳୀନ ଦୃଶ୍ୟ କିପରି ସଂସ୍କୃତ ସାହିତ୍ୟରେ ଲିପିବଦ୍ଧ ହୋଇଛି, ତାହା ବିଚାର୍ଯ୍ୟ । ମାଘ କବି ରଚିଲେ—

କୁମୁଦବନମପଶ୍ରି ଶ୍ରୀମଦମ୍ଭୋଜଷଣ୍ଡମ୍
ତ୍ୟଜତି ମୁଦମୁଲୂକଃ ପ୍ରୀତିମାଂଶ୍ଚକ୍ରବାକଃ
ଉଦୟମୁଦିତ ଦୀଧିତିର୍ଯାତି ଶୀତାଂଶୁ ରସ୍ତଂ
ହତବିଧିଲସିତାନାଂ ହି ବିଚିତ୍ରୋ ବିପାକଃ

ପ୍ରଭାତ ହେବାରୁ କୁମୁଦବନ ସୌନ୍ଦର୍ଯ୍ୟହୀନ ହେଲା । ପଦ୍ମ ବିଶେଷ ଶୋଭା ଧାରଣ କଲା । ଉଲୂକ ଆନନ୍ଦ ଅନୁଭବ କଲା ନାହିଁ । ଚକ୍ରବାକ ପ୍ରୀତିଯୁକ୍ତ ହେଲା । ସୂର୍ଯ୍ୟ

ଉଦିତ ହେଲେ । ଚନ୍ଦ୍ର ଅସ୍ତାଚଳଗାମୀ ହେଲେ । ଯେହେତୁ ହତ ବିଧାତାର ବଳସିତର ବିଚିତ୍ର ପରିଣତି ଅଟେ ।

ଉପରୋକ୍ତ ପ୍ରକୃତିବର୍ଣ୍ଣନା ଦ୍ୱାରା ପ୍ରଭାବିତ ହୋଇ ଭଞ୍ଜ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଅନୁରୂପ ପ୍ରକୃତିବର୍ଣ୍ଣନା କରିଅଛନ୍ତି ।

ପୁନଶ୍ଚ :—

ନବନଖପଦମଙ୍ଗଂ ଗୋପୟସ୍ୟଂ ଶୁକେନ
ସ୍ଥଗୟସି ମୁହୁରୋଷ୍ଠଂ ପାଣିନା ଦନ୍ତଦଷ୍ଟମ୍
ପ୍ରତିଦିଶମପରସ୍ତ୍ରୀସଂଗଶଂସୀ ବିସର୍ପନ୍
ନବ ପରିମଳଗନ୍ଧଃ କେନ ଶକ୍ୟୋ ବରୀତୁମ୍ ।
ସୁଭାଷିତାବଳୀ (ବଲ୍ଲଭଦେବ)

ସଖୀ ପ୍ରିୟାକୁ ଲକ୍ଷ୍ୟ କରି କହୁଅଛି—"ନୂତନ ନଖକ୍ଷତ ଅଙ୍ଗକୁ ବସ୍ତ୍ରଦ୍ୱାରା ଆବୃତ କରୁଅଛ ଓ ପ୍ରିୟ ଦନ୍ତକ୍ଷତ ଓଷ୍ଠକୁ ବାରମ୍ବାର ହସ୍ତଦ୍ୱାରା ଘୋଡ଼ାଉଅଛ । ଅପର ସ୍ତ୍ରୀ ସଂସର୍ଗସୂଚକ ଚାରିଆଡ଼େ ପ୍ରସରୁଥିବା ସୁଗନ୍ଧକୁ ଆବୃତ କରି ରଖିବା କାହାର ଶକ୍ତି ଅଛି ?

ପ୍ରକୃତିବର୍ଣ୍ଣନାରେ ଉପରୋକ୍ତ ଦୃଶ୍ୟର ବର୍ଣ୍ଣନା କେତେଦୂର ସଂଗତ, ତାହା ସେ ଯୁଗର କବିମାନଙ୍କର ବିଚାର୍ଯ୍ୟ । ଭଞ୍ଜ ଏହିପରି ବର୍ଣ୍ଣନା କରି ତାଙ୍କ କୋଟିବ୍ରହ୍ମାଣ୍ଡ ସୁନ୍ଦରୀରେ ଦେଖାଇ ଅଛନ୍ତି ।

ପୁରୁହୂତ ଦିଗଙ୍ଗନା ପ୍ରସୂତେ
ରବିମୁଦ୍ଧାମ ସୁତଂ ଚରାଦବେତି
ଅଳିନୋ ନଳିନୋଦରାଦ୍‌ବିମୁକ୍ତା
ପ୍ରିୟବାହୁଦ୍ୱୟବନ୍ଧନାନ୍ନବୋଢ଼ା— ସୁଭିଷିତାବଳୀ
(ବଲ୍ଲଭଦେବ)

ପୂର୍ବଦିଗରୂପିଣୀ ସ୍ତ୍ରୀ ରବିରୂପକ ଉଦ୍ଦାମ ସନ୍ତାନକୁ ଦୀର୍ଘକାଳ ପରେ ଅର୍ଥାତ୍ ଦୀର୍ଘରାତ୍ରି ଶେଷରେ ପ୍ରସବ କରୁଅଛି । ସୁତରାଂ ତଦୁପଲକ୍ଷେ ପଦ୍ମର ଗର୍ଭବନ୍ଧନରୁ ଭ୍ରମରମାନଙ୍କୁ ମୁକ୍ତ ଦିଆଗଲା ଏବଂ ପ୍ରିୟବାହୁବନ୍ଧନରୁ ନବୋଢ଼ାମାନଙ୍କୁ ମଧ୍ୟ ମୁକ୍ତ ଦିଆଗଲା—ଏଠାରେ ରସିକତା ପୂର୍ଣ୍ଣମାତ୍ରାରେ ବଳସିତ ହେଉଛି ।

ଏହିପରି ଅନେକ ଉଦାହରଣ ଦିଆଯାଇପାରେ । ଭଞ୍ଜସାହିତ୍ୟର ଆଲୋଚନା କଲେ ପ୍ରାଣରେ ଅପାର ଆନନ୍ଦ ସୃଷ୍ଟି ହୁଏ । ଜଣେ ସମାଲୋଚକଙ୍କ ମତରେ–"ଭଞ୍ଜଙ୍କର ଅଫୁରନ୍ତ ପ୍ରାଣ ଶକ୍ତିର ଅସରନ୍ତ ଉତ୍ସ ଯେଉଁ ଦିବ୍ୟ କାବ୍ୟାମୃତର ଧାରା ଉତ୍କଳବାସୀର ସାହିତ୍ୟରେ ବୁହାଇ ଦେଇଛି, ତାହା ପ୍ରତ୍ୟେକ ଉତ୍କଳବାସୀର ଭୋଗ୍ୟ । ଭଞ୍ଜ କେଉଁଠାରେ ସନାତନ ଆର୍ଯ୍ୟ ଧର୍ମର ଆଦର୍ଶ ତଥା ଉତ୍କଳର ଜାତୀୟ ପରମ୍ପରାରୁ ବିଚ୍ୟୁତ ହୋଇ ନାହାନ୍ତି । ନିରଙ୍କୁଶ ନଗ୍ନ ଭୋଗମୟ ପ୍ରେମର ବିଚିତ୍ର ପ୍ରକାଶ ମଧ୍ୟରେ ଆଦର୍ଶର ସୂକ୍ଷ୍ମ ବ୍ୟଞ୍ଜନା ଭଞ୍ଜ ସାହିତ୍ୟର ଏକ ବିଶେଷତ୍ୱ । ମେଘମେଦୁର ଆକାଶର ଘନ କୃଷ୍ଣିମା ଭେଦକରି ସୂର୍ଯ୍ୟଙ୍କର କ୍ଷଣିକ ବିମଳ ପ୍ରକାଶ ସଦୃଶ ଭୋଗମୟ ପ୍ରେମଚିତ୍ରର ଅନ୍ତରାଳରେ ସେହି ଚିର ସଂଯତ ଆତ୍ମାର କ୍ଷଣିକ ଆଭାସ ଆତପ ଅତ୍ୟନ୍ତ ପ୍ରୀତିଦାୟକ । ସ୍ଥୂଳ ପ୍ରକୃତି ମଧ୍ୟରେ ପ୍ରାଣବସ୍ତୁର ସନ୍ଧାନ କରିବା ଗଭୀର ଦାର୍ଶନିକ ଭାବ ଓ ଅନ୍ତର୍ଦୃଷ୍ଟି ଦ୍ୱାରା ସମ୍ଭବ । ମାତ୍ର ଦୃଶ୍ୟମାନ ପଦାର୍ଥର ରୂପ ଓ ବର୍ଣ୍ଣବୈଚିତ୍ର୍ୟର ଧର୍ମ ଗ୍ରହଣ କରିବାରେ ଗଭୀର ଅନୁରକ୍ତି ଓ ବ୍ୟାପକ ଦୃଷ୍ଟିଭଙ୍ଗୀ ଆବଶ୍ୟକ । ଭଞ୍ଜଙ୍କ ପ୍ରକୃତି-ଅନୁରକ୍ତ ହୃଦୟ ପ୍ରକୃତିଚିତ୍ରଣରେ ନୂତନତ୍ୱ ପରିବେଷଣ କରିବା ଗୌରବର ଅଧିକାରୀ ହୋଇ ନାହିଁ, ଅଥଚ ଗତାନୁଗତିକ ଧାରାରେ ପ୍ରକୃତିର ଚିତ୍ରଣରେ ଯେଉଁ କଳାପାଟବ ପରିଦୃଷ୍ଟ ହୁଏ, ତାହା କବିଙ୍କ କାବ୍ୟ ସୌନ୍ଦର୍ଯ୍ୟକୁ ଯେ ଗୋଟିଏ ଦିଗରୁ ସମୃଦ୍ଧ କରୁଛି, ଏଥିରେ ସନ୍ଦେହ ନାହିଁ ।"

କବି ବୈଷ୍ଣବ ଧର୍ମ ସାହିତ୍ୟ, ବିଶେଷତଃ ଗୌଡ଼ୀୟ ବୈଷ୍ଣବ ଧର୍ମ ସାହିତ୍ୟ ପାଠ କରି ସତେ କି ଜଣେ ପ୍ରତିଦ୍ୱନ୍ଦ୍ୱୀଶୀଳ ହୋଇ ତାଙ୍କ କାଳ୍ପନିକ କାବ୍ୟ ନାୟକ ନାୟିକା ଚରିତ୍ରକୁ ପରିସ୍ଫୁଟନ କରିବାକୁ ଯାଇ ଅଶ୍ଳୀଳତାର ଆଶ୍ରୟ ନେଇଅଛନ୍ତି ଏବଂ ସମ୍ଭୋଗ ଓ ବିପ୍ରଲମ୍ଭ ପ୍ରେମ ବର୍ଣ୍ଣନାରେ ପ୍ରାୟ ସମସ୍ତ କବିଙ୍କୁ ସେ ଅତିକ୍ରମ କରିଯାଇଛନ୍ତି ।



# ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟରେ ବସନ୍ତ ବର୍ଣ୍ଣନା

ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟ ନାନା ବିଭବରେ ପରିପୂର୍ଣ୍ଣ । ନାନାପ୍ରକାର ଅଲଙ୍କାରପୂର୍ଣ୍ଣ ବର୍ଣ୍ଣନାତ୍ମକ କାବ୍ୟ, କବିତା ଓ ଛାନ୍ଦ, ଚଉପଦୀ, ଚଉତିଶାରେ ସେ ସାହିତ୍ୟଭଣ୍ଡାର ଦୀପ୍ତିମନ୍ତ । ଉକ୍ତ ଯୁଗର ସାହିତ୍ୟରଥୀମାନେ ଯୁଗୋପଯୋଗୀ ସାହିତ୍ୟ ସୃଷ୍ଟିରେ ଆତ୍ମନିୟୋଗ କରି ପାଠକଗୋଷ୍ଠୀର ଆନନ୍ଦ ବିବର୍ଦ୍ଧନ ସକାଶେ ଅଶେଷ ପ୍ରକାର ଉପାଦାନ ସଂଗ୍ରହ କରି ଜାତୀୟ ସାହିତ୍ୟକୁ ବିମଣ୍ଡିତ କରିଥିଲେ । ଜୀବନ ସହିତ ସାହିତ୍ୟର ଯୋଗସାଧନରେ ସେମାନେ ବ୍ରତୀ ହୋଇଥିଲେ । ତେଣୁ ସେ ସାହିତ୍ୟ ଯଥେଷ୍ଟ ପରିମାଣରେ ଲୋକପ୍ରିୟତା ଅର୍ଜନ କରିପାରିଥିଲା ଓ ଜନସାଧାରଣଙ୍କ ଚିତ୍ତକ୍ଷେତ୍ରରେ ଗୋଟିଏ ଦୃଢ଼ ଆସନ ଜମେଇ ବସିଥିଲା । କୃଷ୍ଣଲୀଳାର ମନୋମୁଗ୍ଧକର ବର୍ଣ୍ଣନା, ରାମସୀତାଙ୍କ ଅଧ୍ୟାତ୍ମିକ ଜୀବନଚରିତ, ଭକ୍ତପ୍ରେମର ମଧୁର ମିଳନ ଓ ଆଦିରସା-ଦିର ପ୍ରାଧାନ୍ୟରେ ଏଯୁଗ ସାହିତ୍ୟ ସମୃଦ୍ଧ ।

ଠିକ୍ ଏହି ଯୁଗର ସାହିତ୍ୟ ସହିତ ଆମେ ଯଦି ଅନ୍ୟାନ୍ୟ ପଡ଼ୋଶୀ ପ୍ରାଦେଶିକ ସାହିତ୍ୟକୁ ତୁଳନା କରୁଁ, ତାହେଲେ ଆମ ସାହିତ୍ୟ ଅଧିକ ଗୌରବଶାଳୀ ପ୍ରତିପନ୍ନ ହେବ । ଆଧୁନିକ ଭାରତୀୟ ସାହିତ୍ୟକ୍ଷେତ୍ରରେ ଆଜି ଯେଉଁ ବଙ୍ଗଳା ଓ ହିନ୍ଦି ସାହିତ୍ୟ ଅତି ଉନ୍ନତ ସାହିତ୍ୟ ବୋଲି ପ୍ରସିଦ୍ଧି ଲଭ କରିଛି, ସେ ସାହିତ୍ୟର ମଧ୍ୟଯୁଗରେ ଆମ ସାହିତ୍ୟ ପରି ରତ୍ନରାଜିପୂର୍ଣ୍ଣ ଉପାଦାନ ମିଳେ ନାହିଁ । ଆମ ସାହିତ୍ୟର ଆଦ୍ୟଯୁଗ ତଥା ପୌରାଣିକ ଯୁଗ ମଧ୍ୟ ସେ ସାହିତ୍ୟର ଆଦ୍ୟ ଯୁଗ ବା ପୌରାଣିକ ଯୁଗ ଅପେକ୍ଷା ଉନ୍ନତତର । ଏହି ଦୁଇ ଯୁଗର ସାହିତ୍ୟର ଅନ୍ତଃସ୍ଥଳରେ ଯେଉଁ ମହାମୂଲ୍ୟବାନ ରତ୍ନରାଜି ରହିଛି, ତା ଦିନେ ନା ଦିନେ ବିଶ୍ୱସାହିତ୍ୟର ଦରବାରରେ ଏକ ବିଶିଷ୍ଟ ସ୍ଥାନ ଅଧିକାର କରିବ । ଉକ୍ତ ଯୁଗର ଜାତୀୟ କବିମାନେ ଓଡ଼ିଆ ଜାତିର ପ୍ରାଣପ୍ରତିଷ୍ଠା କରି ସେ ଜାତିର ମୌଳିକ ଭାବସୃଷ୍ଟିକାରିଣୀ ଶକ୍ତିର ବିଶେଷ ପରିଚୟ ଦେଇଯାଇଅଛନ୍ତି । ପଞ୍ଚସଖା ସାହିତ୍ୟରେ ଉଚ୍ଚ କୋଟୀର ଦର୍ଶନ, ପିଣ୍ଡ ବ୍ରହ୍ମାଣ୍ଡ ତତ୍ତ୍ୱ, ଆତ୍ମା ପରମାତ୍ମାର ସ୍ୱରୂପ ନିର୍ଣ୍ଣୟ, ମହିମା ଧର୍ମର ବୈଶିଷ୍ଟ୍ୟ

ଦେଖିଲେ, ଯେକୌଣସି ଯୁଗର ଓ ଯେକୌଣସି ପ୍ରଦେଶର ସାହିତ୍ୟିକ ଏହାକୁ ପ୍ରଶଂସା ନ କରି ରହିପାରିବେ ନାହିଁ । ଏହି ପଞ୍ଚସଖାମାନଙ୍କ ପରବର୍ତ୍ତୀ ଯୁଗକୁ କେହି କେହି ଓଡ଼ିଆ ସାହିତ୍ୟର ମଧ୍ୟଯୁଗ ବୋଲି ନାମିତ କରିଅଛନ୍ତି । ଏ ଯୁଗରେ ବହୁ ବିଶିଷ୍ଟ ପ୍ରତିଭାବାନ୍ କବି ଜନ୍ମଗ୍ରହଣ କରି ସାହିତ୍ୟକ୍ଷେତ୍ରରେ ସେମାନଙ୍କ ଅସାମାନ୍ୟ ପ୍ରତିଭାର ନିଦର୍ଶନ ଦେଇଯାଇଅଛନ୍ତି । ସେମାନଙ୍କ ମଧ୍ୟରୁ ଦୁଇ ବିଶିଷ୍ଟ କବିଙ୍କ କାବ୍ୟରେ କିପରି ଭାବରେ ବସନ୍ତବର୍ଣ୍ଣନାର ପ୍ରକୃଷ୍ଟ ନିଦର୍ଶନ ଦିଆଯାଇଛି, ତାହା ବ୍ୟକ୍ତ କରିବା ଏ ପ୍ରବନ୍ଧର ଉଦ୍ଦେଶ୍ୟ । ପ୍ରଥମରେ ଭକ୍ତକବି ଦୀନକୃଷ୍ଣଙ୍କ ଅମର କାବ୍ୟ ରସକଲ୍ଲୋଳରେ କିପରି ଭାବରେ ବସନ୍ତବର୍ଣ୍ଣନା ଦିଆଯାଇଅଛି, ତାହା ବିଚାର କରାଯାଉ । ଏହି କାବ୍ୟଟି କି ଭାବ, କି ଭାଷା, କି ପଦଲାଳିତ୍ୟ, ସବୁ ବିଷୟରେ ଏକ ଅପୂର୍ବ ସୃଷ୍ଟି । ରସିକ କବି ଦୀନକୃଷ୍ଣ ବସନ୍ତର ମାଧୁରୀରେ ଆତ୍ମହରା ହୋଇ ବସନ୍ତକାଳୀନ ପ୍ରକୃତିକୁ ଜୀବନ୍ତ କରିଦେଇଛନ୍ତି । କବି ଲେଖିଛନ୍ତି—

କୁସୁମ ସମୟ ହୋଇଲା ଉଦୟ ଦକ୍ଷିଣ ପବନ ବହିଲା,
କାମଦେବ ଦୂତ ହୋଇ ମହାମତ୍ତ ପଞ୍ଚମ ସ୍ୱରରେ କହିଲା,
କନ୍ଦର୍ପ,— ଦର୍ପ ହୋଇଲା ଅତିଶୟ,
କୁସୁମ ବିଶିଖ କରିବାକୁ ଲକ୍ଷ କାମୀ କାମିନୀ କଲେ ଭୟ । ୧ ।

କମଳ, ରସାଳ, ନୀଳ ଉତ୍ପଳ, ନଆଳୀ, ଅଶୋକ ବିକାଶ,
କାମପଞ୍ଚବାଣ କାମୀ ପଞ୍ଚପ୍ରାଣ ଘେନିବାକୁ ହେଲେ ପ୍ରକାଶ,
କେତକୀ, କୁନ୍ଦ କି ହୋଇଲ ପ୍ରକଟ,
କାନ୍ତାକାନ୍ତ ଭେଟ ଅଭେଟ ହୋଇଲା ଜୀବ ଯିବା ହେଲା ନିକଟ । ୨ ।

କୁସୁମବନ୍ତ ମାଧବୀ ଧନୁଶୋଭା, ଭ୍ରମର-କଦମ୍ବ-ଗୁଣରେ
କଉତୁକ କରି କାମକୁ ବସନ୍ତ ଦେଇଅଛି ସଖାପଣରେ
କିଂଶୁକ, ପାଟ କରବାଳ ତାହାର,
କରିବାକୁ ରଙ୍ଗକୋଷ ତାହା ସଙ୍ଗ ସୁଖ ମୋହୁଅଛି କାହାର । ୩ ।

କେଶର କୁସୁମ ଅତି ମନୋହର କାମ ନୃପତି ଶ୍ୱେତଛତ୍ର —
କଶଳସୁପନ୍ତ ପତାକା ଉଡ଼ାନ୍ତ ବଶ କରନ୍ତ ମନମଥ,
କରୁଣା, କେଶର ମଲ୍ଲୀଗନ୍ଧାଧିପ,
କେଳିକଦମ୍ବେ ଶଙ୍ଖଧ୍ୱନି କରଇ ସଧୀରେ ଶଙ୍ଖୁଆ ମଧୁପ । ୪ ।

କୁସୁମ ସମୟ ଆଗମନରେ, ଦକ୍ଷିଣରୁ ମଳୟ ପବନ ବହିଲା । କାମଦେବଙ୍କ ଦୂତ ପିକ ପଞ୍ଚମ ସ୍ୱରରେ କହିଲା — କନ୍ଦର୍ପ ରାଜାର ଦର୍ପ ଅତିଶୟ ବୃଦ୍ଧିପ୍ରାପ୍ତ ହେଲା ।

କମଳ, ରସାଳ, ନୀଳୋତ୍ପଳ, ନାଆଲୀ, ଅଶୋକ ଏମାନେ ପ୍ରସ୍ଫୁଟିତ ହେଲେ । ଏମାନେ କାମର ପାଞ୍ଚବାଣ ସ୍ୱରୂପ । କାମଦେବ ନୃପତି କୌତୁକରେ ବସନ୍ତ ସଖାଙ୍କୁ ପଠାଇଅଛି କି ? କାମଦେବ ଯଦି ନୃପତି, ତାହାହେଲେ କେଶର କୁସୁମ ତାଙ୍କର ଶ୍ୱେତଛତ୍ର, କିଶଳୟପତ୍ର ପତାକା, କରୁଣୀ କେଶର, ମଲ୍ଲୀ ଗନ୍ଧାଧିପ, କେଳିକଦମ୍ବରେ ଶଙ୍ଖଧ୍ୱନି କରୁଥିବା ମଧୁପ ହେଉଛି ଶଙ୍ଖୁଆ । କି ସୁନ୍ଦର ଓ ମନୋହାରିଣୀ ଚିତ୍ର ! କି ରସିକତା କବିଙ୍କର ! ଅନୁରୂପ ବସନ୍ତ ବର୍ଣ୍ଣନା ସଂସ୍କୃତ ସାହିତ୍ୟରେ ଭୂରି ଭୂରି ଅଛି । କୃଷ୍ଣରାମ ଲେଖିଛନ୍ତି—

> ଆଜ୍ଞା, ମନ୍ମଥଚକ୍ରବର୍ତ୍ତି ନୃପତେସ୍ତ୍ୱଦାସ୍ତୁ ନିଃଶଙ୍କଧୀ—
> ଭ୍ରାମ୍ୟଦ୍‌ଭୃଙ୍ଗ ମହାଜନାନ୍ ପିକଗିର ସାକୂତମାକାରୟନ୍
> କୁଞ୍ଜାଙ୍କେ ଚୂତଚିତ୍ର ସନ୍ତରବତି ଶ୍ରୀମାନ୍ ବସନ୍ତୋଽଭିତଃ
> ବ୍ୟାପାରି ସୁମନୋମକରନ୍ଦବସ୍ତୁଭିର୍ବାଣିଜ୍ୟ ମାଲମ୍ବତେ ।”

“କନ୍ଦର୍ପ ରାଜାର ଆଜ୍ଞାଧୀନ ବସନ୍ତ ନିର୍ଭୀକ ହୋଇ ଭ୍ରମର ମହାଜନମାନଙ୍କ ସମେତ କୋକିଳ ବଚନରେ ସଙ୍କେତରେ କୁଞ୍ଜଦାଣ୍ଡରେ ସହକାର ଚିତ୍ର ଉପରେ ଫୁଲମାନଙ୍କର ରସ ଓ ସୁଗନ୍ଧରେଣୁଗୁଡ଼ିକୁ ବିକାକିଣା କରୁଅଛି ।” କବି ଦୀନକୃଷ୍ଣଙ୍କର କିପରି ସଂସ୍କୃତ ସାହିତ୍ୟରେ ପାଣ୍ଡିତ୍ୟ ଥିଲା, ତାହା ଉପରୋକ୍ତ ଉଦାହରଣରୁ ସହଜରେ ଅନୁମେୟ ହେବ । କନ୍ଦର୍ପଙ୍କୁ ରାଜା, ବସନ୍ତଙ୍କୁ ସଖା ପୁଣି ମଧୁପଙ୍କୁ ଶଙ୍ଖୁଆରୂପେ ବର୍ଣ୍ଣନା କରିବାର ଆଦର୍ଶ କବି ଉପରୋକ୍ତ ସଂସ୍କୃତ ଶ୍ଳୋକରୁ ପାଇଛନ୍ତି ।

କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ କାବ୍ୟରେ ମଧ୍ୟ ବସନ୍ତବର୍ଣ୍ଣନା ପରିପୂର୍ଣ୍ଣଭାବରେ ଆତ୍ମପ୍ରକାଶ କରିଛି । କବିକୁଳଚୂଡ଼ାମଣି ଭଞ୍ଜଙ୍କ ଚିତ୍ରଣନୈପୁଣ୍ୟ ଅସାମାନ୍ୟ । ତାଙ୍କର ଭାବରପ୍ରତିଭା ଅପୂର୍ବ ବସ୍ତୁ ନିର୍ମାଣ କରିବାରେ କ୍ଷମ ହୋଇଛି । କବିଙ୍କର ଅଲୌକିକ ଦୃଷ୍ଟି, ଅଗାଧ ପାଣ୍ଡିତ୍ୟ ସ୍ୱୀୟ କାବ୍ୟମୁକୁରରେ ପ୍ରତିବିମ୍ବିତ ହୋଇଛି । ତାଙ୍କର ବିଶେଷତ୍ୱ ଏହା ଯେ, କବି ଯେଉଁଠାରେ ସୁନ୍ଦର ମନୋମୁଗ୍ଧକର ଚିତ୍ର ପ୍ରକଟ କରିବାକୁ ପ୍ରୟାସୀ ହୋଇଅଛନ୍ତି, ସେଠାରେ ସେ ବିଶୁଦ୍ଧ ଓଡ଼ିଆ ଶବ୍ଦ ସାହାଯ୍ୟରେ ତାକୁ ଉଦ୍ଦୀପିତ କରିଅଛନ୍ତି । କବିଙ୍କର ସ୍ୱାଭାବିକ ଚିତ୍ରଣରେ ଭାଷାର ମୌଳିକତା ତଥା ନୈସର୍ଗିକତା ଦେଖିଲେ ଓଡ଼ିଆ ଭାଷାରେ ଅସାମାନ୍ୟ ସୃଜନଶକ୍ତିର ପରିଚୟ ମିଳେ । ଖାଣ୍ଟି ବିଶୁଦ୍ଧ ଓଡ଼ିଆ ଭାଷାରେ ସେ ବସନ୍ତ ବର୍ଣ୍ଣନା କରିଅଛନ୍ତି । ଅନୁରୂପ ବର୍ଣ୍ଣନାର ପରିଚୟ ସଂସ୍କୃତ ସାହିତ୍ୟରେ ଥିଲେ ମଧ୍ୟ କବି ନିଜର ମୌଳିକତା ବଜାୟ ରଖିବାକୁ ସଚେଷ୍ଟ ହୋଇ-ଅଛନ୍ତି । ସେ ସଂସ୍କୃତ ସାହିତ୍ୟରେ ପ୍ରସିଦ୍ଧ କାବ୍ୟ, ନାଟକ ପ୍ରଭୃତି ପାଠ କରି ବସନ୍ତ-

ବର୍ଣ୍ଣନାର ଗୋଟିଏ ଆଦର୍ଶ ପାଇ ଓଡ଼ିଆ ସାହିତ୍ୟରେ ଅବିକଳ ତାର ରୂପରେଖ ଦେଇ ଯାଇଅଛନ୍ତି । 'ବୈଦେହୀଶବିଳାସ'ରେ ବସନ୍ତ ବର୍ଣ୍ଣନା କରିବାକୁ ଯାଇ କବି ଲେଖିଅଛନ୍ତି—

ବସନ୍ତ ସମସ୍ତ ଅତି ରସମସ୍ତ ରଭସ ପ୍ରବେଶ ଆସି ଯେ
ବିଦ୍ରୁମ ଛବି ସୁଦ୍ରୁମଲତା ଶିବି ପଲ୍ଲବେ ସରାଗ ଦିଶ ଯେ
ବିକଶି, ବିକଶି ସୁମନମାନ ଯେ,
ବୋଲାଇଲେ କବି ନବପୁଷ୍ପବନ୍ତୀ ଶ୍ରବରସ କଲେ ଦାନ ଯେ ।୧।

ବାସନ୍ତୀ ମଲ୍ଲୀ ନଆଳୀ କୁରିଅନା ଯହିଁ ହେଲେ ଇଚ୍ଛାବନ୍ତୀ ଯେ,
ବାସକୁ ଆସି ଭ୍ରମରେ ଜାରେ ରସି ମଧୁମାଦକରେ ମାତି ଯେ,
ବସନ୍ତ, ବାଡି ବାସ ହରେ ଏକା ଯେ,
ବସାଇ ନ ଦିଏ ମଧୁପକୁ କେତକୀ ସନ୍ତାନାପ୍ତିକା ଯେ ।୨।

କି ରସିକତା କି ମନୋଜ୍ଞ ଶବ୍ଦ ! କି ହୃଦୟ ତୃପ୍ତିକର ବର୍ଣ୍ଣନା ! ଉପଯୁକ୍ତ ଶବ୍ଦବିନ୍ୟାସରେ ତାଙ୍କ ପଦ ରସାଣିତ ହୋଇଛି । ଉପଯୁକ୍ତ ଛନ୍ଦରେ ଏ ପଦ ମଧୁମୟ ହୋଇଛି । ପୁଣି ଉପଯୁକ୍ତ କଳ୍ପନାରେ ଏ ପଦ ହୃଦୟଗ୍ରାହୀ ହୋଇପାରିଛି । 'କୋଟିବ୍ରହ୍ମାଣ୍ଡସୁନ୍ଦରୀ'ରେ କବି କହିଛନ୍ତି –

"ଅତି ରସମସ୍ତ ବସନ୍ତ ସମସ୍ତ ବିଚକ୍ଷ ପ୍ରଶସ୍ତ ତାହାର
ମିତ୍ର ଅନଙ୍ଗକୁ ପ୍ରବଳ କରାଇ ଆଚରି ଚର୍ଚ୍ଚିତ ବିହାର,
ଆଗତେ, ଆରୋହିଲା ନାଗେଶ୍ୱରକୁ
ଋତୁରାଜ ପଦୁଁ ସେ ରଜ ପେଖିଲା ବୃନ୍ଦ ପ୍ରଫୁଲ୍ଲ କେଶରକୁ ।୧।

ଭୃଙ୍ଗପକ୍ଷ ସୂତ ଆଚରଣ ମଧ୍ୟେ ସାଧ୍ୱୀ ଗୁଣ ଘେନି ପଶିଲା
ନବପୁଷ୍ପବତୀ ସେବନ୍ତୀ ସଙ୍ଗରେ ରସି କ୍ରୀଡ଼ାକୁ ପ୍ରକାଶିଲା ।
ମନୋଜ, ତିଭୁବନ ମଧ୍ୟ ଚତ୍ୱରେ
ଉଦିତ କରାଇ ରତି ଅନୁରାଗ ଅଧିର ସେ ଖେଳେ ସତ୍ୱରେ ।୨।

ମଧୁ ବନ୍ଧୁପଣେ ମଳୟ ଶୀତଳ ଜଳସ୍ଥ ଅନିଳ ବହିଲା,
ସଲିଳେ ମର୍ଜ୍ଜି ପଦ୍ମିନୀ ବୃନ୍ଦକାନ୍ତ ଦକ୍ଷିଣ ସ୍ୱଭାବେ ମୋହିଲା,
ତା ଜାଣି, ନବ ଭବନେ ଯେ ଆବେଶ,
ତରୁଲତା ଶ୍ରେଣୀ ତରୁଣ ତରୁଣୀ ସମସ୍ତେ ସୁମନ ସୁବେଶ ।୩।

ପୁଣି ରସପଞ୍ଚକରେ କବି ବସନ୍ତ ବର୍ଣ୍ଣନା କରିଛନ୍ତି—

ଋତୁବର ବସନ୍ତ ପ୍ରବେଶ ହେଲା ଆସି,
ରହିଲା ରାଢରେ ଚଉ ଦହିଲା ବିଦେଶୀ ।
ରସାଳେ କୋକିଳ ବସି ଦମ୍ଭରୀ ନାଶେ,
ରବିକୁ ହୁଏ କରତ ତମ ନିଶି ଘୋଷେ ।
ରଖି ନ ହେଲା ମଳୟାଚଳେ ଅହି ଡର,
ରେବା ତୀରେ ବହିଲା ଦକ୍ଷିଣା ବାତ ଧୀର ।
ରଭସ ଆଶ୍ଳେଷ ପ୍ରକାଶିଲା ନାଗେଶ୍ୱର
ରତି ଗଦ ଗନ୍ଧ ସେହୁ କଲା ଉପକାର ।
ରୂପାରାକୁ ସଖାଗୁଣେ ମଧୁ ଋତୁ ମୋଦେ
ରାଜା ଅଭିଷେକ କଲା ଶୁକ ନାଦ ବେଦେ ।
ରାଜି ଉନ୍ମତ୍ତ କୁସୁମ-ମାଧୁର୍ଯ୍ୟ ମାଧୁର୍ଯ୍ୟ
ରୋଲମ୍ବ ମଲ୍ଲୀ ମୁକୁଳେ ଶଙ୍ଖ ନାଦ କରି ।

ବସନ୍ତ ଆଗମ ହେଲେ ଚାରିଆଡ଼େ ପୁଷ୍ପରାଜି ପ୍ରସ୍ଫୁଟିତ ହୁଅନ୍ତି । ଭ୍ରମର ପୁଷ୍ପରୁ ମଧୁ ଆହରଣ କରେ । ବସନ୍ତ ଆଗମନରେ ସମସ୍ତ ରସମୟ ହୋଇଯାଏ । ସ୍ତ୍ରୀ ଓ ପୁରୁଷ କାମବଶରେ ପୀଡ଼ା ଲାଭ କରନ୍ତି । ଏତିକ ବିଷୟକୁ କବି ଉପେନ୍ଦ୍ର ଭଞ୍ଜ କେତେ ପ୍ରକାର କଳ୍ପନା ଆଣି ନାୟକ ନାୟିକାମାନଙ୍କର ହୃଦୟର ଗଭୀରତମ ପ୍ରଦେଶରେ କି ଭାବରାଜି ଉଦିତ ହୁଏ, ତାର ରୂପରେଖ ଦେବାକୁ ପ୍ରୟାସ କରିଛନ୍ତି । ତାଙ୍କର ପ୍ରକୃତି ଚେତନ-ଶୀଳା; ସେ ପୁଣି ପ୍ରେମର ମହତ ରୂପେ । ସେ ସଖୀ ନାୟିକା । ସଂସ୍କୃତ ସାହିତ୍ୟ ପ୍ରତି ଦୃଷ୍ଟିପାତ କଲେ ଏହିପରି ବର୍ଣ୍ଣନା ପରିପୂର୍ଣ୍ଣ ମାତ୍ରାରେ ପରିଦୃଷ୍ଟ ହୁଏ । ସେସବୁ ବର୍ଣ୍ଣନା ଉତ୍ତମରୂପେ ପାଠ କରି ସେଥିରୁ ରସ ଆହରଣ କରି ଭଞ୍ଜ ଓଡ଼ିଆ ସାହିତ୍ୟରେ ତାର ପରିଚୟ ଦେଇଯାଇଅଛନ୍ତି ।

କବି କାଳିଦାସ ଋତୁସଂହାରରେ କହିଛନ୍ତି—

ଦ୍ରୁମା ସପୁଷ୍ପା ସଲିଲଂ ସପଦ୍ମଂ
ସ୍ତ୍ରିୟଃ ସକାମାଃ ପବନଃ ସୁଗନ୍ଧିଃ,
ସୁଖାଃ ପ୍ରଦୋଷା ଦିବସାଶ୍ଚ ରମ୍ୟାଃ ୧
ସର୍ବଂ ପ୍ରିୟେ ଚାରୁତରେ ବସନ୍ତେ ।

ସାହିତ୍ୟଦର୍ପଣକାର ବସନ୍ତ ବର୍ଣ୍ଣନା କରିବାକୁ ଯାଇ ଦକ୍ଷିଣା ପବନର ବର୍ଣ୍ଣନା କରୁଛନ୍ତି—

"ଲତାକୁଞ୍ଜଗୁଞ୍ଜନ୍ମଦବଦଳି ପୁଞ୍ଜଂ ଚପଲୟନ୍
ସମାଲିଙ୍ଗନ୍ନଙ୍ଗଂ ଦ୍ରୁତତରମନଙ୍ଗମ୍ ପ୍ରବଳୟନ୍
ମରୁନ୍ନନ୍ଦଂ ମନ୍ଦଂ ଦଳିତ ମକରନ୍ଦଂ ତରଳୟନ୍
ରଜୋବୃନ୍ଦଂ ବନ୍ଦନ୍ କରତ ମକରନ୍ଦଂ ଦ୍ୱିଶିଦ୍ୱିଶି ।"

ଲତାକୁଞ୍ଜରେ ଗୁଣ୍ଡୁଗୁଣ୍ଡୁ ଶବ୍ଦ କରୁଥିବା ଉନ୍ମତ୍ତ ଭ୍ରମରସମୂହକୁ ଚପଳ କରି ଅଙ୍ଗ ଆଲିଙ୍ଗନ କରି, ଶୀଘ୍ର ଅନଙ୍ଗକୁ ପ୍ରବଳ କରି, ଦଳିତ ମକରନ୍ଦକୁ ତରଳ କରି, ପୁଷ୍ପରେଣୁମାନଙ୍କୁ ମନ୍ଦ ମନ୍ଦଭାବରେ ଦିଗମାନଙ୍କରେ ବିତରଣ କରି ଏହି ଦକ୍ଷିଣା ପବନ ବହୁଅଛି ।

ଜନୈକ ସଂସ୍କୃତ କବି ଅନ୍ୟରି ଏକ ପ୍ରକାରରେ ବସନ୍ତ ବର୍ଣ୍ଣନା କରୁଅଛନ୍ତି –

"ଜଗୌ ବିବାହାବସରେ ବନସ୍ଥଲୀ
ବସନ୍ତୟୋଃ କାମହୁତାଶସାକ୍ଷୀଃ
ପିକଦ୍ୱିଜଃ ପ୍ରୀତମନାଃ ମନୋରମଂ
ମୁହୁର୍ମୁହୁର୍ମଙ୍ଗଳମନ୍ତ୍ରମାଦରାତ୍ ।"

ଆଜି ବସନ୍ତ ଆଗମନରେ ବନସ୍ଥଲୀ ଓ ବସନ୍ତ ଏ ଦୁହିଙ୍କ ବିବାହ ଅବସରରେ କାମଅଗ୍ନି ସାକ୍ଷୀ ହେଲା, କୋକିଳ ବ୍ରାହ୍ମଣ ଆନନ୍ଦମନରେ ବାରମ୍ବାର ମଙ୍ଗଳମନ୍ତ୍ର ପାଠ କରୁଅଛି ।

ମଧ୍ୟଯୁଗୀୟ ଦୁଇ ପ୍ରସିଦ୍ଧ ଓଡ଼ିଆ କବିଙ୍କ ଅସାମାନ୍ୟ କବିପ୍ରତିଭା, ବହୁ ଶାସ୍ତ୍ରଦର୍ଶିତା, କଠିନ ଅଧ୍ୟବସାୟ ସେମାନଙ୍କୁ ଯଶସ୍ୱୀ କରିଅଛି । କି ଶବ୍ଦଯୋଜନା, କି ପ୍ରକାଶଭଙ୍ଗୀ, କି ପ୍ରକୃତିର ଋତୁଚକ୍ରବର୍ଣ୍ଣନା, ସବୁଥିରେ ଏ ଦୁହେଁ ଅତୁଳନୀୟ । ସେମାନଙ୍କ କାବ୍ୟକୁ ଶ୍ରୁତିମଧୁର କରିଅଛି ସେମାନଙ୍କର ବର୍ଣ୍ଣନାଶକ୍ତି । ସର୍ବୋପରି ବସନ୍ତବର୍ଣ୍ଣନା ଏ ଦୁହିଙ୍କ ଲେଖନୀରେ ଅତି ସୁନ୍ଦର ଭାବରେ ଆତ୍ମପ୍ରକାଶ କରିଛି । ଏମାନଙ୍କର ଲେଖା ଓଡ଼ିଆମାନଙ୍କର ଗର୍ବର ଧନ ଓ ଜାତୀୟ ସମ୍ପଦ । ଚିରକାଳ ସବୁଯୁଗର ସର୍ବଶ୍ରେଣୀର ପାଠକଗୋଷ୍ଠୀ ଏପରି ବସନ୍ତବର୍ଣ୍ଣନା ପାଠ କରି ଆନନ୍ଦ ଅନୁଭବ କରିବେ—ଏଥିରେ ସନ୍ଦେହ ନାହିଁ । ବସନ୍ତବର୍ଣ୍ଣନାକୁ ଶ୍ରୁତିମଧୁର କରିବାକୁ ଯାଇ ଭଞ୍ଜ 'ବସନ୍ତ କୌଶିକ ରାଗର ବ୍ୟବହାର ଦେଖାଇ ଅଛନ୍ତି । ପ୍ରାୟ ସମସ୍ତ କବିଙ୍କ ବସନ୍ତବର୍ଣ୍ଣନା ଏକମୁଖୀ, କନ୍ଦର୍ପ, ପିକ, ଭ୍ରମର, ଦକ୍ଷିଣାପବନ, ଲତା, ତରୁ, ପୁଷ୍ପ ଏମାନଙ୍କର ବିଶେଷ ଉଲ୍ଲେଖ ପରିଲକ୍ଷିତ ହୁଏ । କିଏ ବା ବସନ୍ତକୁ ନୃପତି ଆଉ କିଏ ବା କନ୍ଦର୍ପକୁ ନୃପତି

ରୂପେ ପରିକଳ୍ପନାକରି ଅନ୍ୟମାନଙ୍କୁ ସଖାରୂପେ, ପାର୍ଶ୍ୱମନ୍ତ୍ରୀ ରୂପେ ବର୍ଣ୍ଣନା କରିଅଛନ୍ତି । କେଉଁଠାରେ ପିକ ବେଦପାଠକ ଦ୍ୱିଜ, କେଉଁଠାରେ ମଧୂପ ଶଙ୍ଖୂଆ, ଆଉ ବା କେଉଁଠାରେ ପିକ ବାଦକ ରୂପେ ଗୃହୀତ ହୋଇଅଛି । ଏହିପରି ନାନାପ୍ରକାର ବର୍ଣ୍ଣନା ଅତି ମଧୂମସ୍ତ ହୋଇଅଛି ।



# ପାରଳାଖେମଣ୍ଡିରେ ସଙ୍ଗୀତଚର୍ଚ୍ଚା

ପୂର୍ବେ ଗଞ୍ଜାମରେ ସାହିତ୍ୟ ଓ ସଙ୍ଗୀତର ଯଥେଷ୍ଟ ପ୍ରସାର ଏବଂ ପ୍ରଚାର ଥିଲା । ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ ସାହିତ୍ୟକୁ ଯେଉଁ ସାହିତ୍ୟ ରଥୀମାନେ ଅଭିନବ ସଙ୍ଗୀତାତ୍ମକ କାବ୍ୟ କବିତାରେ ଭୂଷିତ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ଗଞ୍ଜାମ-ବାସୀ । ଗଞ୍ଜାମର ଘୁମୁସର ରାଜବଂଶକୁ ଛାଡ଼ିଦେଲେ ପାରଳାଖେମଣ୍ଡିର କବିମାନେ ଓଡ଼ିଆ ସାହିତ୍ୟକୁ ଯେଉଁ ଉତ୍କୃଷ୍ଟ ସଙ୍ଗୀତସାହିତ୍ୟ ଦାନ କରିଛନ୍ତି ତାହା, ଅମୂଲ୍ୟ । ସେମାନେ କୃଷ୍ଣଭକ୍ତିରସ ସମୁଦ୍ରରେ ଅବଗାହନ କରି ଏ ଅଞ୍ଚଳକୁ ଅବଗାହିତ କରାଇ ଅଛନ୍ତି । ତେଣୁ ଆଜି ପାରଳାଖେମଣ୍ଡିରେ ଅଧିକାଂଶ କବି ଓ ସଙ୍ଗୀତଜ୍ଞ କୃଷ୍ଣ ଉପାସକ । ପାରଳାରେ ଥିବା ପ୍ରାୟ ସମସ୍ତ ମଠରେ ପ୍ରତ୍ୟହ ଶ୍ରୀକୃଷ୍ଣ ନାମକୀର୍ତ୍ତନ ହୁଏ । ଗୋସ୍ୱାମୀ-ବୃନ୍ଦ ନିତ୍ୟ ରାଧାକୃଷ୍ଣ ମନ୍ତ୍ର ଜପ କରି ରାଧାକୃଷ୍ଣ ପ୍ରେମ ବିଷୟକ ସଙ୍ଗୀତ ଗାନରେ ଅହରହ ହୋଇପଡ଼ନ୍ତି । ଏ ସ୍ଥାନର ସଙ୍ଗୀତ-ସାହିତ୍ୟ ଉନ୍ନତିରେ ପାରଳାର ନୃପବଂଶ ଯଥେଷ୍ଟ ସହାୟତା କରିଅଛନ୍ତି । ପାରଳାରେ ରାଜତ୍ୱ କରୁଥିବା ଗଙ୍ଗବଂଶ ରାଜାମାନଙ୍କ ପୃଷ୍ଠ-ପୋଷକତାରେ ଅନେକ କବି ଓ ସଙ୍ଗୀତଜ୍ଞ ପ୍ରଚୁର ଅବକାଶ ଓ ପ୍ରଚୁର ଅର୍ଥ ପାଇ ସେମାନଙ୍କର ସାରା ଜୀବନ ସଙ୍ଗୀତ ତଥା ସାହିତ୍ୟ ଚର୍ଚ୍ଚାରେ ଅତିବାହିତ କରିଥିଲେ । କପିଳେନ୍ଦ୍ର ଦେବଙ୍କ ଜ୍ୟେଷ୍ଠପୁତ୍ର କଳାମିହିର ବା କଳାହମ୍ବିରଦେବଙ୍କ ବଂଶଧର ସମୟରୁ ଏଠାରେ ସଙ୍ଗୀତ ଓ ସାହିତ୍ୟର ବିକାଶ ଘଟିଅଛି । ଶୁଣାଯାଏ, ଏହି କଳାମ୍ବିର ଦେବ ଯେତେବେଳେ ଏଠାକୁ ଆସିଲେ, ସେତେବେଳେ ପ୍ରବାଳଖେମଣ୍ଡ ନାମରେ ଜଣେ ଅନାର୍ଯ୍ୟ ରାଜା ଏଠାରେ ରାଜତ୍ୱ କରୁଥିଲେ । ତାଙ୍କୁ ହତ୍ୟାକରି କଳାହମ୍ବିର ଏଠାରେ ରାଜା ହେଲେ । ସେହି ପ୍ରବାଳଖେମଣ୍ଡ ନାମରୁ ଏ ସ୍ଥାନର ନାମ ହେଲା ପାରଳାଖେମଣ୍ଡି —ପ୍ରବାଳଖେମଣ୍ଡ—(ପ୍ରବାଳ ପରି ଯାହାଙ୍କର ଆଖି ଓ ମୁଣ୍ଡ ତେଜସ୍ୱାନ) । ତୁଚ୍ଛବିଂ ପ୍ରବାଳଖେମଣ୍ଡରୁ ଆସିଲା ପାରଳାଖେମଣ୍ଡି । ଆହୁରି କେହି କେହି କହନ୍ତି ଯେ, ଏଠାର କ୍ଷତ୍ରିୟ ସନ୍ତାନମାନେ ଖଣ୍ଡାମୁଠାରେ ରାଜ୍ୟ ଶାସନ କରୁଥିଲେ ବୋଲି ଏ ସ୍ଥାନଟି କ୍ଷେମଣ୍ଡି ନାମରେ ନାମିତ ହେଲା । ଯାହାହେଉ ପାରଳାର କବିତା ସଙ୍ଗୀତାଦିମାନଙ୍କ ବିଷୟ ଆଲୋଚନା କଲେ ସର୍ବାଗ୍ରେ ଉତ୍କଳସାହିତ୍ୟକୁଞ୍ଜକୋକିଳ ଭକ୍ତକବି ଗୋପାଳ-କୃଷ୍ଣଙ୍କ କଥା ମନେପଡ଼େ । ପାରଳାଖେମଣ୍ଡିରେ ଏପରି କୌଣସି ଗୃହ ନାହିଁ, ଯେଉଁଠି

ଗୋପାଳକୃଷ୍ଣଙ୍କ ପଦ୍ୟାବଳୀ ଗୀତ ଗାନ କରୁ ନଥାଏ । ତାଙ୍କର ସଙ୍ଗୀତଗୁଡ଼ିକ ଏତେ ପ୍ରସିଦ୍ଧ ଯେ, ଏଠାରେ ଅଧିକାଂଶ ବ୍ୟକ୍ତି ତାଙ୍କର ରାଧାକୃଷ୍ଣ ପ୍ରେମରସାତ୍ମକ ଗୀତ ଅବଲୀଳାକ୍ରମେ ଗାଇପାରନ୍ତି । କବିଙ୍କର ଅଣନାତି ଶ୍ରୀମାନ୍ ରାମକୃଷ୍ଣ ପଟ୍ଟନାୟକ ଓ ତାହାଙ୍କ ନାତିମାନେ ଏହି ବୃଦ୍ଧ ବୟସରେ ଗୋପାଳକୃଷ୍ଣଙ୍କ ଗୀତ ଗାଇ ଅଧମ ପ୍ରାଣରେ ଭକ୍ତିଭାବର ବନ୍ୟା ଖେଳାଇ ପାରନ୍ତି । କବିଙ୍କର ପଦ୍ୟାବଳୀର ମାଧୁର୍ଯ୍ୟ ଓ ଔଦାର୍ଯ୍ୟ ସଙ୍ଗେ ତାର ଲଳିତ୍ୟର ଏକତ୍ର ସମାବେଶ ଦେଖିଲେ ଭାବୁକ ତଥା ପାଠକ ଆତ୍ମହରା ହୋଇପଡ଼େ । ବିଦଗ୍ଧ କବି ଅଭିମନ୍ୟୁ, ଦୀନକୃଷ୍ଣ, କବିସୂର୍ଯ୍ୟ ବା ବଳଦେବ, ଭକ୍ତଚରଣଙ୍କ ବ୍ୟତୀତ ଆଉ କୌଣସି ପ୍ରତିଭାବାନ କବି ରାଧାକୃଷ୍ଣଙ୍କ ପ୍ରେମଚିତ୍ର ଦେବାରେ ଗୋପାଳକୃଷ୍ଣଙ୍କୁ ବଳିଯାଇ ନାହାନ୍ତି । ତାଙ୍କ ବିଶାଳ ଅନୁଭୂତିର ଗମ୍ଭୀରତା ଓ ତୀବ୍ରତା ଅତି ପ୍ରାଞ୍ଜଳଭାବରେ ଚର୍ଚ୍ଚିତ ହେବାର ଦେଖିଲେ ସେ ଯେ ଅତି ଉଚ୍ଚକୋଟୀ ପ୍ରତିଭାର ଅଧିକାରୀ ଥିଲେ, ତାହା ନିଃସନ୍ଦେହରେ କୁହାଯାଇପାରେ । ସର୍ବୋପରି ସରଳ ଭାଷାରେ ତାଙ୍କ ରସାଳ ଅନୁଭୂତିକୁ ସେ ଯେପରି ଭାବରେ ଅଭିବ୍ୟକ୍ତ କରିଛନ୍ତି, ତାହା ପାଠ କରିବା ସଙ୍ଗେ ସଙ୍ଗେ ସେ ଅନୁଭୂତି ପାଠକର ହୃଦୟରେ ସଂକ୍ରମିତ ହୁଏ । ଏବେ ମଧ୍ୟ ପାରଳାର ଗୋଟିପୁଅମାନେ କବିଙ୍କ ସଂଗୀତ ବୋଲୁଥିବାବେଳେ ଶ୍ରୋତା ଏପରିଭାବରେ ତନ୍ମୟ ହୋଇଯାଆନ୍ତି ଯେ, ସେମାନଙ୍କର ସର୍ବାଙ୍ଗ ପୁଲକରେ ରୋମାଞ୍ଚିତ ହୋଇଯାଏ । ଆଉ ଯେଉଁ ପାରଳାର କବି ଓ ସଙ୍ଗୀତଜ୍ଞମାନେ ଗୋପାଳକୃଷ୍ଣଙ୍କ ସମକକ୍ଷ ପ୍ରତିଭାର ଅଧିକାରୀ ହୋଇ ମଧ୍ୟ ଅବହେଳିତ ହୋଇ ରହିଯାଇଛନ୍ତି, ସେମାନଙ୍କ ପଦ୍ୟାବଳୀର ସାମାନ୍ୟ ପରିଚୟ ଦେଲେ ପାରଳାଖେମଣ୍ଡିରେ ଓଡ଼ିଆ ସଙ୍ଗୀତଚର୍ଚ୍ଚାର ଗୋଟାଏ ରୂପରେଖ ମିଳିବ । ଏମାନଙ୍କ ମଧ୍ୟରେ କବିଚନ୍ଦ୍ର ରଘୁନାଥ ପରିଚ୍ଛା, ପଦ୍ମନାଭ ପରିଚ୍ଛା, ଗୌରହରି ପରିଚ୍ଛା, କବି ନୀଳକଣ୍ଠ, ଚିତ୍ରକର ହରେକୃଷ୍ଣ ମହାପାତ୍ର, ହରେକୃଷ୍ଣ ବେବର୍ତ୍ତା ପ୍ରମୁଖ ମହାତ୍ମାମାନେ ପ୍ରଧାନ । ଏମାନେ ପାରଳାଖେମେଣ୍ଡିରେ ଜନ୍ମଗ୍ରହଣ କରି ଏ ସ୍ଥାନକୁ ପବିତ୍ରିତ କରିଛନ୍ତି । ଏମାନେ ଯେ କେବଳ କବି, ସଙ୍ଗୀତଜ୍ଞ ଥିଲେ, ଏପରି ନୁହେଁ; ଏକାଧାରରେ କବି, ବୈଷ୍ଣବ, ଧର୍ମପ୍ରଚାରକ, ସିଦ୍ଧଗାୟକ ଓ ବାଦକ ଥିଲେ । ଦୁଃଖର କଥା ଏପର୍ଯ୍ୟନ୍ତ ଏମାନଙ୍କର ସଙ୍ଗୀତ ଓ କବିତାଦି ପ୍ରସାର ଲାଭ କରିପାରି ନାହିଁ ।

ଉତ୍କଳ ସାହିତ୍ୟର ଇତିହାସରେ ଏ ପର୍ଯ୍ୟନ୍ତ ଏମାନେ ଯଥାଯୋଗ୍ୟ ସ୍ଥାନ ଅଧିକାର କରିପାରିନାହାନ୍ତି । ଏମାନଙ୍କ ରଚିତ କାବ୍ୟ କବିତା ଅପ୍ରକାଶିତ ଭାବରେ ରହିଯାଇଛି ।

ରଘୁନାଥ ପରିଚ୍ଛା—

କବିଚନ୍ଦ୍ର ରଘୁନାଥ ପରିଚ୍ଛାଙ୍କ କୃତ "ଲକ୍ଷଚେନ୍ଦ୍ରୋଦୟ" ଏ ପର୍ଯ୍ୟନ୍ତ ଦିବାଲୋକକୁ ଆସିପାରିନାହିଁ । ତାଙ୍କକୃତ 'ରାଧାମାଧବ ବିଳାସ" ବି ଅପ୍ରକାଶିତ ଭାବରେ

ରହିଛି । ଏଗୁଡ଼ିକର ପ୍ରକାଶ ହେଲେ ଓଡ଼ିଆ ସାହିତ୍ୟର ଅଶେଷ କଲ୍ୟାଣ ସାଧିତ ହୁଅନ୍ତା । ଏହି କବିଙ୍କର କେତେକ ଗ୍ରନ୍ଥ ପ୍ରକାଶିତ ହୋଇଛି, ଯଥା ରାଧାକୃଷ୍ଣ ଲୀଳା, ଶ୍ରୀ ରାମାୟଣ, ଗୋପୀନାଥବଲ୍ଲଭ ନାଟକ, ତାଳସର୍ବସ୍ୱ ପ୍ରଭୃତି । ପୂର୍ବ ଉଲ୍ଲିଖିତ ଲକ୍ଷଣଚନ୍ଦ୍ରୋଦୟ ଅତି ଉପାଦେୟ ଗ୍ରନ୍ଥ । ଏଥିରେ କବିଚନ୍ଦ୍ର ପ୍ରଥମରୁ ଗଣନିରୂପଣ, ବର୍ଣ୍ଣନିରୂପଣ,ଅନୁପ୍ରାସ ଓ ଯତ୍ୟାଦି ନିରୂପଣ, ଗଦ୍ୟପଦ୍ୟ ନିରୂପଣ, ଛନ୍ଦନିରୂପଣ, ବୃତ୍ତି-ନିରୂପଣ, ପୁଣି ସ୍ୱର ନିରୂପଣ କରି ପୁସ୍ତକଟିକୁ ମନୋଜ୍ଞ କରିଅଛନ୍ତି । ଖାଲି ଏତିକି ନୁହେଁ, ସେଥିରେ ସ୍ୱରମାନଙ୍କର ଆଦ୍ୟ, ମଧ୍ୟ ଓ ପ୍ରାନ୍ତ ଦେବତା, ସେମାନଙ୍କର ବଂଶ, ଜନ୍ମସ୍ଥାନ, ଭୋଜନ ଓ ସେମାନଙ୍କର ବାହନ ଏବଂ ପତ୍ନୀ ଆଦିର ସବିଶେଷ ବର୍ଣ୍ଣନା ଅଛି । ଗ୍ରାମନିରୂ-ପଣରେ କବିଚନ୍ଦ୍ର ସିନ୍ଧୁଡ଼ା, ମାଳବ, ଧନାଶ୍ରୀ, ମାଳଶ୍ରୀ, ରାମକେରୀ ଇତ୍ୟାଦି ରାଗର ଚିତ୍ର ଦେଇଛନ୍ତି । ଏ ତ ଗଲା ତାଳ ସ୍ୱର ରାଗ ସମ୍ବନ୍ଧରେ ତାଙ୍କର ପାଣ୍ଡିତ୍ୟର ନମୁନା ତାଙ୍କ 'ରାଧାମାଧବବିଳାସ' ପାଠ କଲେ ତାଙ୍କର କବିତ୍ୱ ଶକ୍ତିର ପରିଚୟ ମିଳେ । ସେ ଯେ ଜଣେ ପ୍ରତିଭାବାନ କବି ଥିଲେ, ତାହା ତାଙ୍କ କବିତାରୁ ପ୍ରମାଣ ମିଳେ । 'ରାଧା-ମାଧବ ବିଳାସ'ର ଦ୍ୱିତୀୟ ଛାନ୍ଦରେ ବସନ୍ତ ବର୍ଣ୍ଣନାରେ କବି କହୁଛନ୍ତି—"ଭଙ୍ଗ ଶ୍ଳେଷ, ରାଗ ଆଷାଢ଼ଶୁକ୍ଳ ।"—

ନିଆଳି ଅଶୋକ ପାଟଳୀ ତିଲ କୁମୁଦ ମନ୍ଦାର ନୀଳ ଉତ୍ପଳ
ବନ୍ଧୁଜୀବ କୁନ୍ଦ ଶିରୀଷ ବାଣ ଶ୍ରୀଅଙ୍ଗଯାକରେ କରି ପ୍ରକାଶ
ମାଧବୀ ସଜନୀ;
ବେଷ୍ଟିତ ହେଲେ ନାନା ଶୋଭା ଘେନି ।

ପୁଣି କୃଷ୍ଣଙ୍କ ରୂପଟିକୁ ବର୍ଣ୍ଣନାରେ କବିଚନ୍ଦ୍ର ରଘୁନାଥ କହୁଛନ୍ତି—

"ପଞ୍ଚମଛାନ୍ଦ—ରାଗ କାମୋଦୀ"

କାମନା ମନା କରି          ବିରସ ରସ ଧରି
ନକରୁ କରୁଣା ନିରତେ
ମୁଁ ମାର ମାରଣରେ          ସୁଭାଷି ! ଭାସିଲି ଟରେ
ସେବାରେ ବାରେ ରଖ ମୋତେ ରେ
ଜୀବବନ୍ଧୁ;
ବିପଦ ପଦକରେ ସାର,   କଂଚରେ ଚନ୍ଦ୍ରେ ଭାବ ଧର
ହାସ ରସର ସୁଧା          ପ୍ରସରୁ ସରୁମଧା
ଭରସା ରସାଳସା କର ରେ
ଜୀବବନ୍ଧୁ । ୧ ।

ଅନ୍ତ୍ୟାନୁପ୍ରାସର ଏ ଯେଉଁ ନିଦର୍ଶନ, ଏହା କ୍ୱଚିତ୍‌ ଅନ୍ୟାନ୍ୟ କାବ୍ୟ କବିତାରେ ମିଳେ । ଏହି ଦୁଇଖଣ୍ଡ ପୁସ୍ତକ ଏପର୍ଯ୍ୟନ୍ତ କଟକାସ୍ଥ ସାହିର ପଣ୍ଡିତ ଶ୍ରୀ କୃଷ୍ଣଚନ୍ଦ୍ର ଚନ୍ଦ୍ରାସ୍ଥଙ୍କ ନିକଟରେ ଅଛି । ଉକ୍ତ ମହାଶୟ ଯତ୍ନର ସହିତ ଏହାକୁ ରଖି ଅଛନ୍ତି । କବିଚନ୍ଦ୍ର ରଘୁନାଥ ପ୍ରାୟ ୧୫୦ ବର୍ଷ ତଳର କବି । ପାରଳା କଟକାସ୍ଥ ସାହିରେ ତାଙ୍କର ଜନ୍ମ । ପଦ୍ମନାଭ ପରିଚ୍ଛା ବୋଲି ଆଉ ଏକ ବିଶିଷ୍ଟ ସଙ୍ଗୀତଜ୍ଞ ଏହି ପାରଳା କଟକାସ୍ଥ ସାହିରେ ଜନ୍ମଗ୍ରହଣ କରିଥିଲେ । ଏ କବି ରାଧାକୃଷ୍ଣ ପ୍ରେମବିଷୟକ ଅନେକ ସଙ୍ଗୀତ ରଚନା କରିଅଛନ୍ତି । ଏ କବି ସର୍ବପ୍ରଥମେ ଦକ୍ଷିଣରୁ ତେଲଙ୍ଗା ସଙ୍ଗୀତ ଓଡ଼ିଶାକୁ ବିଶେଷତଃ ପାରଳାକୁ ଆଣିଥିଲେ । ତେଲୁଗୁ ସଙ୍ଗୀତର କୃତି ପଲ୍ଲବୀ ରାଗର ଅବଲମ୍ବନରେ ସେ ଓଡ଼ିଆ ସଙ୍ଗୀତ ଲେଖିବାକୁ ଆରମ୍ଭ କଲେ । ଏହାଙ୍କ ରଚିତ ସଂଗୀତ—

"ଭିନେ ଆଜ ଟିଭା ସ୍ୱଭରେ,
ପଙ୍କଜନୟନା, ମାନେ ବଳିଛି ମତରେ ।
ମାରମାରଣାକୁ ବାରଣ ମୋର ବୁଦ୍ଧି"

ଇତ୍ୟାଦି ଖୁବ୍‌ ଆଦର ଲାଭ କରିଛି । ଏକାଧାରରେ କବିତ୍ୱ ଓ ସଙ୍ଗୀତମଧୁରିତ୍ୱ ତାଙ୍କର ରଚନାକୁ ସୁଖପାଠ୍ୟ ଓ ସୁଶ୍ରାବ୍ୟ କରିଅଛି ।

ତାଙ୍କ ରଚିତ "ଗୀତରତ୍ନାକର"ରେ ଏହିପରି ବହୁ ସଙ୍ଗୀତ ଅଛି । ତାଙ୍କ ସଙ୍ଗୀତରେ ଲୋକପ୍ରିୟତା ସାରା ପ୍ରଦେଶରେ ବ୍ୟାପିଯାଇଛି । ଏହାଙ୍କ ସମୟରେ ଏଠାରେ ଜଳତରଙ୍ଗିଣୀ ବ୍ୟବସ୍ଥା ଥିଲା । ଏ କବି ଅନେକ ଚଉପଦୀ ଲେଖିଯାଇଅଛନ୍ତି ଏବଂ ଚଉତିଶା ଆକାରରେ ରାଧା କୋଇଲି ଲେଖି ପ୍ରସିଦ୍ଧି ଲାଭ କରିଅଛନ୍ତି । ତାଙ୍କ ରାଧାକୋଇଲିରୁ ଗୋଟିଏ ଉଦାହରଣ ନ ଦେଇ ରହିହେଉ ନାହିଁ । କବି ରାଧାଙ୍କ ମୁଖରେ କହିଛନ୍ତି—

କୋଇଲି, କୃଷ୍ଣବିନୁ ନ ସରଇ ଦିନ
ଆଲୋ, କାହାଗେ କହିବି ଯାଇ ଏ ମୋର କଦନ ଲୋ କୋଇଲି ।
କୋଇଲି, ଖଣ୍ଡିଲା ଦଇବ ମୋର ସୁଖ
ଆଲୋ, ଖଣ୍ଡ ଖଣ୍ଡ ଦେହ କରେ କୁସୁମ ବିଶିଖ ଲୋ କୋଇଲି ।

ନାୟିକାର ମନୋଭାବ କି ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି ! ଏଠାରେ ଶବ୍ଦାଡ଼ମ୍ବର ନାହିଁ, ଭାବର ସାବଲୀଳ ଗତି ଅଛି । ଶୁଣାଯାଏ କବିସୂର୍ଯ୍ୟ ପାରଳାଖେମଣ୍ଡିକୁ ଆସିଲାବେଳେ ଏ କବିଙ୍କର ସଙ୍ଗୀତ ଶୁଣି ବିମୁଗ୍ଧ ହୋଇଥିଲେ ଏବଂ ତାହାଙ୍କ ରଚନାକୁ

ଖୁବ୍ ପ୍ରଶଂସା କରିଥିଲେ । ମନୋମୁଗ୍‌ଧକର ସୁଶ୍ରାବ୍ୟ ସଙ୍ଗୀତ ଲେଖିବାରେ ଏ କବି ଅଦ୍ୱିତୀୟ ଥିଲେ ।

ଗୌରହରି ପରିଚ୍ଛା—

ଆଉ ଏକ ପ୍ରତିଭାବାନ୍ କବି ଏହି ପାରଳାର ଗୌରବ ବୃଦ୍ଧିରେ ଯଥେଷ୍ଟ ସହାୟତା କରିଯାଇଅଛନ୍ତି । ଏହାଙ୍କ ନାମ ଗୌରହରି ପରିଚ୍ଛା । ଏହାଙ୍କ ରଚନାରୁ ମନେହୁଏ ଯେ, ସେ ଜଣେ ଅତି ଉଚ୍ଚକୋଟୀର ସଙ୍ଗୀତଜ୍ଞ ଥିଲେ । ସେ ୯୫ ବର୍ଷ ବୟସରେ ସ୍ୱର୍ଗାରୋହଣ କରିଥିଲେ । ମଞ୍ଜୁଷାର ସ୍ୱର୍ଗୀୟ ରାଜା ଜଗନ୍ନାଥ ରାଜମଣି ଅତି ଗୌରବରେ ତାଙ୍କୁ ପାଳନ କରିଥିଲେ । ସଙ୍ଗୀତ ଶାସ୍ତ୍ରରେ ତାଙ୍କର ଅସାମାନ୍ୟ ପ୍ରତିଭା ଦେଖି ତତ୍କାଳୀନ ରାଜାମାନେ ତାଙ୍କୁ ନାନା ପାରିତୋଷିକରେ ଭୂଷିତ କରିଥିଲେ । ଏ କବି ପ୍ରଥମରେ ଗୀତଗୋବିନ୍ଦ ଓଡ଼ିଆରେ ଅନୁବାଦ କଲେ । ଗୋସ୍ୱାମୀମାନଙ୍କର ଅଷ୍ଟକାଳୀନ ସେବାଗ୍ରନ୍ଥ ଅନୁବାଦ କରି ନିଜର ପାଣ୍ଡିତ୍ୟର ପରିଚୟ ଦେଇଥିଲେ । ରାଧାକୃଷ୍ଣ ପ୍ରେମ-ରହସ୍ୟାକ ସଙ୍ଗୀତ ଏହାଙ୍କ ଲେଖନୀରୁ ବହୁଳ ପରିମାଣରେ ଜନ୍ମଲାଭ କରିଥିଲା । ଏହାଙ୍କ ନାମ ଶୁଣିଲେ ଆଜି ମଧ୍ୟ ବହୁତ ଲୋକ ଅବାଧରେ ହାତ ଯୋଡ଼ି ଭକ୍ତି କରନ୍ତି । ଜଣେ ନିଷ୍ଠାପର ବ୍ରାହ୍ମଣ, ବୈଷ୍ଣବଧର୍ମ ପ୍ରଚାରକ, ଉଚ୍ଚକୋଟୀର ସଙ୍ଗୀତଜ୍ଞ ହିସାବରେ କବି ଗୌରହରି ଏ ଅଞ୍ଚଳରେ ଯଶସ୍ୱୀ ହୋଇଯାଇଛନ୍ତି । ସ୍ୱର୍ଗୀୟ ବ୍ୟାସକବି ଫକୀରମୋହନ 'ଉତ୍କଳ ଭ୍ରମଣ'ରେ ଗୌରହରିଙ୍କ ସଙ୍ଗୀତର ଗୌରବ ଶୁଣି ଲେଖିଅଛନ୍ତି—

"ଓଡ଼ିଶା ଦକ୍ଷିଣ ସୀମା—ପାରଳା ଖେମେଣ୍ଡି
ଧନେ ମାନେ କିଏ ଆଉ ଅଛି ତାକୁ ବଳି
କବିତ୍ୱ ଗୌରବ ସ୍ଥାନ ନ ଦେଖେ ସେପରି
ଗାଉଥିଲେ ବସି ଗୀତ ଯହିଁ ଗୌରହରି ।"

ଗୌରହରିଙ୍କ ସଙ୍ଗୀତ କେବଳ ପାରଳାର ଗୌରବ ନୁହେଁ, ଏହା ଓଡ଼ିଶାର ଗୌରବ । ସଂଗୀତ ରଚନାରେ ଏ ଜଣେ ଯୁଗ-ପ୍ରବର୍ତ୍ତକ ଥିଲେ ଏବଂ ଗାୟକ ଓ ବାଦକ ହିସାବରେ ମଧ୍ୟ ଖୁବ୍ ଖ୍ୟାତି ଅର୍ଜନ କରିଥିଲେ । ଅନେକ କବି ଅଛନ୍ତି, ଯେଉଁମାନେ କି କେବଳ ସଂଗୀତ ରଚନା କରନ୍ତି, ମାତ୍ର ଗାଇବା ବଜାଇବାରେ ହୁଏତ ସେମାନଙ୍କର ସେତେ ଦକ୍ଷତା ନାହିଁ । ମାତ୍ର ପାରଳାର ଅଧିକାଂଶ କବି, ବିଶେଷ କରି ଗୌରହରି ପରିଚ୍ଛା ଜଣେ ଧୂରନ୍ଧର ଗାୟକ ଥିଲେ । କଥିତ ଅଛି, ପାରଳାଖେମଣ୍ଡିର ରାଧାକାନ୍ତ ମଠରେ ଥରେ ସେ ସଂଗୀତ ଗାନ କରୁଅଛନ୍ତି, ଏପରି ସମୟରେ ତାଙ୍କ ସଂଗୀତ ଶୁଣି ଗୋଟିଏ ଭୟଙ୍କର ବିଷଧର ସର୍ପକୁ ଦେଖି ଚମକପଡ଼ିଲେ । ସର୍ପଟି ବୀଣା ଉପରେ

ସମାନ୍ୟ ଆଘାତ କରି ଚାଲିଗଲା । ବହୁ କିମ୍ବଦନ୍ତୀ କବି ଗୌରହରିଙ୍କ ସମ୍ବନ୍ଧରେ ଅଦ୍ୟାପି ଲୋକମୁଖରେ ଶୁଣାଯାଏ । ସେ ବୃଦ୍ଧାବସ୍ଥା ପର୍ଯ୍ୟନ୍ତ ବୀଣାବାଦନ କରୁଥିଲେ । ତାଙ୍କ ପୁତ୍ର ଦାମୋଦର ଓ ଦୟାନିଧି ଉଭୟେ ସଂଗୀତ ଚର୍ଚ୍ଚା କରୁଥିଲେ ଏବଂ ବୀଣାବାଦନରେ ଯଥେଷ୍ଟ କୃତିତ୍ୱ ଅର୍ଜନ କରିଥିଲେ । ଦାମୋଦର ପରିଗ୍ରୁ ଓଡ଼ିଶାର ରାଜାମାନଙ୍କ ନିକଟରେ ସଂଗୀତ ଗାନ କରି କୁଣ୍ଡଳାଦି ଉପହାର ପାଇଥିଲେ । କବି ଗୌରହରି କେବଳ ଯେ ଜଣେ ପ୍ରତିଭାବାନ୍ କବି ଥିଲେ ତାହା ନୁହେ, ସେ ଜଣେ ସୁଧୀ ସାଧୁ ପ୍ରକୃତିର ଓ ଆଦର୍ଶ ବ୍ୟକ୍ତି ଥିଲେ । ଥରେ ମଞ୍ଜୁଷାର ରାଜା ତାଙ୍କୁ ରାମାନୁଜ ଧର୍ମାବଲମ୍ବୀ ହେବାକୁ ଅନୁରୋଧ କରି ରାମାନନ୍ଦୀ ଚିତା ଗ୍ରହଣ କରିବାକୁ ଆହ୍ୱାନ କଲେ । ମାତ୍ର କବି ନାସ୍ତିବାଣୀ ଶୁଣାଇଦେଇ ସେଠାରୁ ଅନ୍ୟତ୍ର ଚାଲିଗଲେ । ସେହି ଉପଲକ୍ଷ୍ୟରେ ରଚିତ କବିଙ୍କର ଗୋଟିଏ ସଂଗୀତ ଏଠାରେ ଉଲ୍ଲେଖଯୋଗ୍ୟ—

କେ ଭଜନ କରୁ କାହାକୁ
ମୋ ମନ ମଜ୍ଜିଲା କୃଷ୍ଣପଦକୁ । ପଦ ।
ପୁରନ୍ଦରମଣି ଜଣାବରଣ
କେବଳ ମାତ୍ର ମୋହର ଶରଣ
ଶ୍ରୀରାଧାଗୋବିନ୍ଦ ଦୁହିଙ୍କ ବିନାରେ
ସ୍ମରଣେ ଆଣିବି ନାହିଁ ଚଣ୍ଡିକୁ ।

ତାଙ୍କର ନୀରବ ପ୍ରାର୍ଥନା, ନିଷ୍କାମ ପ୍ରେମ, ଉଚ୍ଚ ଦାର୍ଶନିକ ଭାବ, ଆଧ୍ୟାତ୍ମିକ ପ୍ରେମର ଚିତ୍ର ତାଙ୍କ କବିତାର ଛନ୍ଦେ ଛନ୍ଦେ ପ୍ରକଟିତ ହୋଇଛି । ଏହାଙ୍କର ପ୍ରପୌତ୍ର ସ୍ୱର୍ଗୀୟ ପ୍ରତାପଚନ୍ଦ୍ର ପରିଗ୍ରୁ 'ଗୌରହରି ପ୍ରତିଭା' ନାମରେ ଗୋଟିଏ ପୁସ୍ତକ ପ୍ରଣୟନ କରି କବିଙ୍କ ବହୁମୁଖୀ ପ୍ରତିଭାର ନିଦର୍ଶନ ଦେବାକୁ ଚେଷ୍ଟା କରିଛନ୍ତି । ତାଙ୍କର ଗୋଟିଏ ସଂଗୀତ ଏଠାରେ ଆଲୋଚନା କଲେ କବିଙ୍କ ଦକ୍ଷତାର ପରିଚୟ ମିଳିବ । 'ହୃଟି ନ ବସ' ଗୀତରେ କବି ଗୌରହରି ରାଧାଙ୍କୁ ବୁଝାଇ ଅଛନ୍ତି—

ହୃଟି ନ ବସ ରେ କୁଟିଳାକ୍ଷି, ଗୃହିଁ କ୍ଷିତକ ( ଘୋଷା )
ତ୍ରୁଟିକ ମାତ୍ରକେ ସ୍ମର      ଘୋଟି ବାନ୍ଧିଦେଲେ ଶର
ଘଟିଯିବ ଅସି ମୁନ ଶୁଦ୍ଧକ । ୧ ।
ଅଶନ ବସନ ବାସ      ଭୂଷଣାଦି କରି ବଶ
ରୋଷରେ ଆବେଶ କରି ମତକ । ୨ ।
ପରମ ଦୟାଳୁ ବର      ପର ଜାଣି କଲେ ଦୂର
ଅରଜବୁ କ ଅବା ନୀରତ କ । ୩ ।

ନୀଳକଣ୍ଠ ଓ ହରେକୃଷ୍ଣ—

କବି ନୀଳକଣ୍ଠ ଏହି ଅଞ୍ଚଳରେ ଜନ୍ମଗ୍ରହଣ କରି ଲଳିତ ମଧୁର ପଦାବଳୀରେ ଅତି ଉତ୍କୃଷ୍ଟ ସଂଗୀତ ରଚନା କରିଯାଇ ଅଛନ୍ତି । ତାଙ୍କ ରଚିତ 'ବସନ୍ତପଞ୍ଚମୀ' ନାମକ କ୍ଷୁଦ୍ର କବିତା ଅତି ଉଚ୍ଚ ଧରଣର । ଏ କବି ୧୨ବର୍ଷ ବୟସରୁ କବିତା ଓ ସଂଗୀତ ରଚନା କରୁଥିଲେ ବୋଲି ପ୍ରବାଦ ଅଛି । ଏହାଙ୍କ ପରେ ଚିତ୍ରକର ହରେକୃଷ୍ଣ ବୋଲି ଆଉ ଏକ କୃଷ୍ଣଭକ୍ତ କବି ଏଠାରେ ଜନ୍ମଗ୍ରହଣ କରି ସଂଗୀତ ସାହିତ୍ୟ ସୃଷ୍ଟିରେ ମନ ବଳାଇଥିଲେ । ସେ ଜାତିରେ ଚିତ୍ରକାର ଥିଲେ । ଏହାଙ୍କ ବଂଶଧରମାନେ ଅଦ୍ୟାପି ପାରଳା ଚିତ୍ରକାର ସାହିରେ ଅଛନ୍ତି । ଏ କବି ଅନେକ ଚୌପଦୀ ରଚନା କରିଥିଲେ । ସେ ଶୁକ୍ଳସ୍ତ୍ରୀ ରାଗରେ ଏକାଦଶୀ ମହାତ୍ମ୍ୟ ରଚନା କରିଥିଲେ । ଶୁଣାଯାଏ ସେ ଥରେ ଜଗନ୍ନାଥ ମୂର୍ତ୍ତି ଗଠନ କରୁଥିବା ବେଳେ ତାଙ୍କ ପାଦରେ ତୀକ୍ଷ୍ଣ ଶସ୍ତ୍ର ବାଜି ରକ୍ତ ଧାରଧାର ହୋଇ ବହିର୍ଗତ ହେଲା, ମାତ୍ର ସେ ସଙ୍ଗେ ସଙ୍ଗେ ଗୋଟିଏ ସଙ୍ଗୀତ ପ୍ରଭୁଙ୍କ ନାମରେ ରଚନା କରି ଗାଇବା ସମୟରେ ରକ୍ତଧାର ବନ୍ଦ ହୋଇଗଲା । ଏଥିରୁ ତାଙ୍କର ପ୍ରଗାଢ଼ ଭକ୍ତିଭାବର ପରିଚୟ ମିଳେ । ଏ ସ୍ଥାନର ଅନ୍ଧ ଅପର୍ଣ୍ଣାଙ୍କ ସଙ୍ଗୀତ ସାରା ଓଡ଼ିଶାରେ ପରିଚିତ । ଅନ୍ଧ ଅପର୍ଣ୍ଣା ଅତି ଅଳ୍ପ ବୟସରେ ମୃତ୍ୟୁମୁଖରେ ପତିତ ହୋଇଛନ୍ତି । ସେ ଆଉ କିଛିଦିନ ବଞ୍ଚିଥିଲେ କେବଳ ଓଡ଼ିଶାରେ କାହିଁକି, ସମଗ୍ର ଭାରତରେ ପ୍ରସିଦ୍ଧିଲାଭ କରି ଯଶସ୍ୱୀ ହୋଇଥାନ୍ତେ । ଏହି ସ୍ୱର୍ଗତ ଅନ୍ଧ ଗାୟକଙ୍କ ପ୍ରତିଭାରେ ମୁଗ୍ଧ ହୋଇ କବି ବୈକୁଣ୍ଠନାଥ ତାଙ୍କ କାବ୍ୟସଞ୍ଚୟନରେ 'ବନ୍ଦୀ ଅପର୍ଣ୍ଣା' ଶୀର୍ଷକ କବିତାରେ କହିଛନ୍ତି—

"ଦରିଦ୍ର ଦେଶର ଶିଳ୍ପୀ ଦୃଷ୍ଟି ଅନ୍ତରାଳେ,
ଜନମି ମୁଦିଲ ଆଖି ଲେଖାଥିଲା ଭାଲେ ।
ଲେଖିଲା ବା ନାହିଁ କାଳ ଅମର ଅକ୍ଷରେ
ତୁମ୍ଭ କୀର୍ତ୍ତିଗାଥା, କେହି ନ ପୁଛିବେ ଥରେ ।"

× × × ×

ଆହୁରି ଅନେକ ଅଖ୍ୟାତନାମା ସଙ୍ଗୀତଜ୍ଞ ଅଛନ୍ତି, ଯେଉଁମାନଙ୍କ ନୀରବ ସାଧନା ଏ ସ୍ଥାନରେ ସଙ୍ଗୀତଚର୍ଚ୍ଚାକୁ ଖୁବ୍ ଉଚ୍ଚସ୍ତରବିଶିଷ୍ଟ କରିପାରିଛି । କି ସାହିତ୍ୟ, କି ସଙ୍ଗୀତ, କି ଚିତ୍ରକଳା, ସବୁଦିଗରେ ପାରଳାଖେମଣ୍ଡି ଓଡ଼ିଶାରେ ବିଶିଷ୍ଟ ସ୍ଥାନ ଅଧିକାର କରିଛି । ସାହିତ୍ୟ ସଙ୍ଗୀତର କେନ୍ଦ୍ରସ୍ଥଳ ଥିଲା ଏହି ପାରଳାଖେମଣ୍ଡି । ବହୁଦିନରୁ ଏଠାରେ ଗୋଟିଏ ରଂଗାଳୟ ଥିଲା । ପାରଳାର ବର୍ତ୍ତମାନ ମହାରାଜଙ୍କ ପିତୃବ୍ୟ ସ୍ୱର୍ଗୀୟ ପଦ୍ମନାଭ ଦେବଙ୍କ ନାମାନୁସାରେ ସେ ରଂଗାଳୟର ନାମ ଥିଲା—ପଦ୍ମନାଭ ରଂଗାଳୟ ।

ପାରଳାର କବି ବା ସଙ୍ଗୀତଜ୍ଞମାନେ କେବଳ ଯେ ସଙ୍ଗୀତସାହିତ୍ୟ ଚର୍ଚ୍ଚା କରୁଥିଲେ ଏପରି ନୁହେଁ, ପରନ୍ତୁ ସେମାନେ ଚିକିତ୍ସାଶାସ୍ତ୍ର, ଗଣିତ ଓ ଜ୍ୟୋତିଷଶାସ୍ତ୍ରରେ ମଧ୍ୟ ପ୍ରବୀଣତା ଲାଭ କରିଥିଲେ । ଏହାର ମୂଳରେ ଅଛି ରାଜବଂଶର ସହଯୋଗ ଓ ସହାନୁଭୂତି । ଏଠାକାର ରାଜାମାନେ ପ୍ରାୟ ଅଧିକାଂଶ ସାହିତ୍ୟସେବୀ ଓ ସଙ୍ଗୀତପ୍ରେମୀ । ରାଜଧାନୀର ଅଧିକାଂଶ କବି ଓ ସଙ୍ଗୀତଜ୍ଞଙ୍କୁ ଏମାନେ ବହୁ ପାରିତୋଷିକ ଦେଇ ସଙ୍ଗୀତ ଚର୍ଚ୍ଚାରେ ସେମାନଙ୍କ ସମସ୍ତ ଅବବାହିତ କରିବାକୁ ଉତ୍ସାହ ଦେଉଥିଲେ । ପାରଳା ରାଜବଂଶର ଇତିହାସ ଦେଖିଲେ ସର୍ବାଗ୍ରେ ସର୍ବଜ୍ଞ ଜଗନ୍ନାଥ ନାରାୟଣ ଦେବଙ୍କ ଉପରେ ଆମର ଦୃଷ୍ଟି ପଡ଼େ । ଏ ଜଣେ ପ୍ରସିଦ୍ଧ ସଙ୍ଗୀତଜ୍ଞ ଥିଲେ ଓ "ସଙ୍ଗୀତରତ୍ନାକର" ନାମରେ ଅତି ଉପାଦେୟ ସଙ୍ଗୀତଗ୍ରନ୍ଥ ସଂସ୍କୃତ ଭାଷାରେ ରଚନା କରିଥିଲେ । ଦକ୍ଷିଣ ଭାରତରେ ଏ ଗ୍ରନ୍ଥ ଖୁବ୍ ଖ୍ୟାତି ଅର୍ଜନ କରିଛି । କର୍ଣ୍ଣାଟକ ସଙ୍ଗୀତ ବା ଦକ୍ଷିଣ ଭାରତୀୟ ସଙ୍ଗୀତକୁ ଏ ଗ୍ରନ୍ଥ ନିୟନ୍ତ୍ରିତ କରୁଛି । ପୂର୍ବେ ଦକ୍ଷିଣ ଭାରତ ସହିତ ଏ ଅଞ୍ଚଳର ପ୍ରତ୍ୟକ୍ଷ ସଂଯୋଗ ଥିଲା । ତେଣୁ ସର୍ବଜ୍ଞ ଜଗନ୍ନାଥ ନାରାୟଣଦେବ କର୍ଣ୍ଣାଟକ ସଙ୍ଗୀତରେ ନିଜେ ଯୋଗ୍ୟତା ଅର୍ଜନ କରି ସଙ୍ଗୀତରତ୍ନାକର ଲେଖିଲେ । ସଙ୍ଗୀତସାହିତ୍ୟରେ ଏ ଗ୍ରନ୍ଥ ଅତି ଉଚ୍ଚକୋଟୀର । ଏହାଙ୍କ ରାଜତ୍ୱକାଳ ସମ୍ବନ୍ଧରେ ଏବେ ବି ଅନୁସନ୍ଧାନ ଚାଲିଛି । ପାରଳା ଗଜପତିବଂଶରେ ଆଉ ଜଣେ କବି ଜଗନ୍ନାଥ ଗଜପତି ନାରାୟଣଦେବ ନାମରେ ଜନ୍ମ ଗ୍ରହଣ କରି ଏ ବଂଶର ମୁଖୋଜ୍ଜ୍ୱଳ କରିଯାଇଅଛନ୍ତି । ଏ ରାଜକବି 'ସଙ୍ଗୀତ ନାରାୟଣ' ଓ 'ବୃନ୍ଦାବନଚନ୍ଦ୍ର ବିହାର' ନାମକ ଦୁଇଟି କାବ୍ୟ ରଚନା କରିଥିଲେ । ସେଥି ମଧ୍ୟରୁ ବୃନ୍ଦାବନଚନ୍ଦ୍ର ବିହାରଟି ପ୍ରକାଶିତ ହୋଇଛି । କବି ପ୍ରଥମରୁ ଗୋକୁଳଚନ୍ଦ୍ର କୃଷ୍ଣଙ୍କର ବର୍ଣ୍ଣନା କରିଛନ୍ତି । ଏଥିରେ କୃଷ୍ଣଙ୍କର ବାଳଲୀଳା ଓ ରାସଲୀଳା ବିସ୍ତୃତଭାବରେ ବର୍ଣ୍ଣିତ ହୋଇଛି କବି କୃଷ୍ଣଉପାସକ ଥିଲେ ଓ ଗୌଡ଼ୀୟ ବୈଷ୍ଣବଧର୍ମମତର ସମର୍ଥକ ଥିଲେ । ଉକ୍ତ ଗ୍ରନ୍ଥର ପ୍ରକାଶକ ମୁଖବନ୍ଧରେ କବିଙ୍କ ପରିଚୟ ଦେବାକୁ ଯାଇ କହିଛନ୍ତି ଯେ, କବି ଜଗନ୍ନାଥ ନାରାୟଣଦେବ ଖ୍ରୀଷ୍ଟାବ୍ଦ ୧୭୬୦ରୁ ୧୮୦୦ ପର୍ଯ୍ୟନ୍ତ ପାରଳା ଗଜପତି ସିଂହାସନ ଅଳଂକୃତ କରିଥିଲେ; କିନ୍ତୁ ସର୍ବଜ୍ଞ ଜଗନ୍ନାଥ ନାରାୟଣଦେବ ଏହାଙ୍କ ପୂର୍ବରୁ ରାଜତ୍ୱ କରିଥିଲେ ବୋଲି ପାରଳା ଗଜପତିବଂଶ ଇତିହାସରୁ ମିଳେ ।

'ବୃନ୍ଦାବନଚନ୍ଦ୍ର ବିହାର'ର ରଚୟିତା ଜଗନ୍ନାଥ ନାରାୟଣ ଦେବଙ୍କ ପୂର୍ବରୁ ୪ ଜଣ ରାଜା ରାଜତ୍ୱ କରିଯାଇଅଛନ୍ତି । ଜଗନ୍ନାଥଙ୍କ ପୂର୍ବରୁ ପ୍ରତାପରୁଦ୍ରଦେବ ୧୮ ବର୍ଷ ରାଜତ୍ୱ କଲେ । ତାଙ୍କ ପୂର୍ବରୁ ବୀର ପଦ୍ମନାଭଦେବ ୧୯ ବର୍ଷ, ତାଙ୍କ ପୂର୍ବରୁ ନରହରି ଦେବ ୨୬ ବର୍ଷ ଓ ଏହାଙ୍କ ପୂର୍ବରୁ ସର୍ବଜ୍ଞ ଜଗନ୍ନାଥ ନାରାୟଣଦେବ ୧୬ ବର୍ଷ କାଳ ରାଜତ୍ୱ କରିଥିଲେ । ସୁତରାଂ 'ବୃନ୍ଦାବନଚନ୍ଦ୍ର ବିହାର' ରଚୟିତା ଜଗନ୍ନାଥ ନାରାୟଣ ଦେବଙ୍କ ୭୯ ବର୍ଷ ପୂର୍ବେ ସର୍ବଜ୍ଞ ନାରାୟଣଦେବ ରାଜତ୍ୱ କରୁଥିଲେ । ତାହାହେଲେ

ସର୍ବଙ୍କ ନାରାୟଣଦେବ ସପ୍ତଦଶ ଶତାବ୍ଦୀର କବି ଅଟନ୍ତି । ତାଙ୍କ ରାଜତ୍ୱକାଳ ୧୬୮୧ ଠାରୁ ୧୬୯୭ ପର୍ଯ୍ୟନ୍ତ ସ୍ଥାୟିତ୍ୱ ଲାଭ କରିଥିଲା ବୋଲି ଅନୁମାନ କରାଯାଇପାରେ ।

ସେ ସମୟରୁ ପାରଳାରେ ସଙ୍ଗୀତ ପ୍ରଚାର ଓ ପ୍ରସାର ହୋଇ ଆସୁଅଛି । ଠିକ୍ ଏହି ସମୟରେ ସର୍ବଙ୍କ ଜଗନ୍ନାଥ ନାରାୟଣଦେବଙ୍କ ସମସାମୟିକ ହିସାବରେ ଗୋପୀନାଥ କବିଭୂଷଣ ନାମରେ ଆଉ ଜଣେ ପ୍ରତିଭାବାନ୍ କବି ଜନ୍ମଗ୍ରହଣ କରି ଏ ଅଞ୍ଚଳକୁ ପବିତ୍ର କରିଅଛନ୍ତି ।

କବିଭୂଷଣ ଗୋପୀନାଥ ପାଣି ପାରଳାଖେମୁଣ୍ଡି ଅଙ୍କୁଯାଡ଼ିରେ ଜନ୍ମଗ୍ରହଣ କରିଥିଲେ ଏବଂ କବି ସପ୍ତଦଶ ଶତାବ୍ଦୀରେ ଜୀବିତ ଥିଲେ—ଏହା ଅନେକେ ଅନୁମାନ କରୁଅଛନ୍ତି । ତାଙ୍କ ରଚିତ 'କବିଚିନ୍ତାମଣି' ବୋଧହୁଏ ଏ ପର୍ଯ୍ୟନ୍ତ ଦିବାଲୋକକୁ ଆସି-ପାରି ନାହିଁ । 'କବିଚିନ୍ତାମଣି'ରେ କବିଭୂଷଣ ତାଳ, ନାଦ, ଲୟ, ସଙ୍ଗୀତ, ନୃତ୍ୟ, ଅଳଂକାରାଦିର ଲକ୍ଷଣ ନିର୍ଣ୍ଣୟ କରିଅଛନ୍ତି । ଏ ଗ୍ରନ୍ଥଟି ସଂସ୍କୃତ ଭାଷାରେ ଲିଖିତ ହୋଇ-ଥିବାରୁ ସଂସ୍କୃତ ଭାଷା ଓ ସଂସ୍କୃତ ସାହିତ୍ୟରେ କବିଙ୍କର ଗଭୀର ଜ୍ଞାନର ପରିଚୟ ଦେଉଛି । ଅଳଙ୍କାରଶାସ୍ତ୍ର ହିସାବରେ 'କବିଚିନ୍ତାମଣି' ପ୍ରସିଦ୍ଧି ଲାଭ କରିବ, ଏଥିରେ ସନ୍ଦେହ ନାହିଁ । ଏ ଗ୍ରନ୍ଥଟିକୁ ଛାଡ଼ିଦେଲେ କବିଭୂଷଣ 'ରାମଚନ୍ଦ୍ର ବିହାର' ବୋଲି ଗୋଟିଏ ଅତି ଉତ୍କୃଷ୍ଟ କାବ୍ୟ ରଚନା କରିଅଛନ୍ତି । ଏହାକୁ ମହାକାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ଉକ୍ତ କାବ୍ୟରେ କବି ରାମଚନ୍ଦ୍ରଙ୍କ ଜନ୍ମ, ବିବାହ, ରାବଣବଧ, ଅଭିଷେକ ପ୍ରଭୃତି ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଅଛନ୍ତି । ଉପେନ୍ଦ୍ର ଭଞ୍ଜଙ୍କ 'ବୈଦେହୀଶବିଳାସ'ର ଛାୟା ଉକ୍ତ କାବ୍ୟରେ ପଡ଼ିଛି ବୋଲି କେହି କେହି ମତ ପୋଷଣ କରନ୍ତି । ଏମାନଙ୍କ ମତରେ ଗୋପୀନାଥ କବିଭୂଷଣ ଭଞ୍ଜଙ୍କ ସମସାମୟିକ ବା ତାଙ୍କ ପରବର୍ତ୍ତୀ କବି ଅଟନ୍ତି । ପୁଣି କେହି କେହି କହନ୍ତି ଯେ, ଭଞ୍ଜ ଏହି ପାରଳାମଣ୍ଡିକୁ ଆସି 'ରାମଚନ୍ଦ୍ର ବିହାର' ଦେଖି-ବାର ସୁଯୋଗ ପାଇଥିଲେ ଏବଂ ଏହି କାବ୍ୟର ଛାୟାରେ 'ବୈଦେହୀଶ ବିଳାସ' ଲେଖିବାରେ ପ୍ରୟାସୀ ହୋଇ ତାଙ୍କ କାବ୍ୟକୁ ଅଧିକ ଉତ୍କୃଷ୍ଟତର ଓ ମଧୁମୟ କରିବାରେ ଯତ୍ନଶୀଳ ହେଲେ । 'ରାମଚନ୍ଦ୍ର ବିହାର' ଅଦ୍ୟାପି ଅପ୍ରକାଶିତ ଭାବରେ ପଡ଼ିରହିଛି । ଏହାର ପ୍ରକାଶନର ଆୟୋଜନ କଲେ ଏ କାବ୍ୟ ଅଚିରେ ଉତ୍କଳର ପ୍ରାଚୀନ ଓ ମଧ୍ୟଯୁଗୀୟ ଓଡ଼ିଆ କାବ୍ୟ ସାହିତ୍ୟରେ ଗୋଟାଏ ବିଶିଷ୍ଟ ସ୍ଥାନ ଅଧିକାର କରିବ । ଉପେନ୍ଦ୍ର ଭଞ୍ଜ ଯେତିକି ପଦରେ ସମଗ୍ର କାବ୍ୟଟିକୁ ସମାପ୍ତ କରିଛନ୍ତି, କବିଭୂଷଣ ତା'ଠାରୁ ଅଧିକ ପଦରେ ତାଙ୍କ କାବ୍ୟ 'ରାମଚନ୍ଦ୍ର ବିହାର'କୁ ପରିସମାପ୍ତ କରିଛନ୍ତି । ବୈଦେହୀଶ-ବିଳାସ ପରି ଏ କାବ୍ୟ ନାନା ପ୍ରକାର ଅଳଙ୍କାର ଓ ରାଗରାଗିଣୀ ପରିପୂର୍ଣ୍ଣ ଓ ନାନା ପ୍ରକାର ବନ୍ଧରେ ସୁଶୋଭିତ ହୋଇଛି । କବିଙ୍କର ବର୍ଣ୍ଣନାଶକ୍ତି, ପାଣ୍ଡିତ୍ୟ ତଥା କବିତ୍ୱ ଦେଖିଲେ ପାଠକ ଆଶ୍ଚର୍ଯ୍ୟାନ୍ୱିତ ହୁଏ । ଅନ୍ୟାନ୍ୟ ପ୍ରାଚୀନ କବିମାନଙ୍କ ସଦୃଶ ଏ

କାବ୍ୟର ପ୍ରାରମ୍ଭରେ ସାଧୁମାନଙ୍କର ଗୁଣକୀର୍ତ୍ତନ, ଅସାଧୁମାନଙ୍କର ନିନ୍ଦାବାଦ ସଙ୍ଗେ ସଙ୍ଗେ ସଙ୍ଗେ କାବ୍ୟ ଜପରି ନିର୍ବିଘ୍ନରେ ପରିସମାପ୍ତି ଲଭିବ, ସେଥିସକାଶେ ତାଙ୍କର ଆରାଧ୍ୟଦେବତା ନବଦୁର୍ବାଦଳଶ୍ୟାମ କୋଦଣ୍ଡଧାରୀ ଜାନକୀରମଣ ରାମଚନ୍ଦ୍ରଙ୍କର ଜୟଗାନ କରିଅଛନ୍ତି । ତାପରେ କବିମାନଙ୍କ ଗୁଣ ବର୍ଣ୍ଣନା କରି କବିତ୍ୱ-ପ୍ରକାର ନିର୍ଦ୍ଦେଶ କରିଅଛନ୍ତି । ଖାଲି ଏତିକି ନୁହେଁ, ପରନ୍ତୁ କବିଭୂଷଣ ତାଙ୍କ କାବ୍ୟର ପ୍ରାରମ୍ଭରେ ବିଷୟବସ୍ତୁ ବର୍ଣ୍ଣନା କରିବା ପୂର୍ବରୁ ତାଙ୍କ ମଙ୍ଗଳାଚରଣ ଛାନ୍ଦରେ କବିଲକ୍ଷଣ, କବିତ୍ୱ-ପ୍ରକାର, ଉପମାଉପମେୟ ଲକ୍ଷଣ, ସଙ୍ଗୀତର ଉତ୍ପତ୍ତି, ଗାୟକ ଲକ୍ଷଣ, ବାଦ୍ୟ ଲକ୍ଷଣ, ତାଳାଙ୍ଗ ଓ ତାଳକାଳ ସମ୍ବନ୍ଧରେ ନାନା ମତ ପୋଷଣ କରି ଏମାନଙ୍କର ସ୍ୱରୂପ ନିର୍ଣ୍ଣୟ କରିଅଛନ୍ତି । ନାନାବିଧ ଯମକ, ଅନୁପ୍ରାସ, ଶ୍ଳେଷ, ରୂପକ, ଉପମା ଓ ଅନ୍ୟାନ୍ୟ ଅଳଙ୍କାରରେ ତାଙ୍କ କାବ୍ୟ ସୁଶୋଭିତ ଓ ସୁଷମାମଣ୍ଡିତ ହୋଇଅଛି ।

ଗୋପୀନାଥ କବିଭୂଷଣ ଉଚ୍ଚକୋଟୀର ସଙ୍ଗୀତଜ୍ଞ, କବି, ଗାୟକ ଓ ବାଦକ ଥିଲେ । ତାଙ୍କ କାବ୍ୟର କିୟଦଂଶ ଉଦ୍ଧାର କରି ତାଙ୍କ ପାଣ୍ଡିତ୍ୟ ଓ କବିତ୍ୱ କିପରି ଥିଲା, ତାହା ପ୍ରକାଶ କରିବା ଉପଯୁକ୍ତ ହେବ ବୋଲି ବିଚାର କରି ମୁଁ ନିମ୍ନରେ କେତେକ ଉଦାହରଣ ଦେଲି । ସହୃଦୟ ପାଠକ ଧୈର୍ଯ୍ୟସହକାରେ ଉକ୍ତାଂଶମାନ ପାଠ କରି ମନକୁ ସରସ କରିବାରେ ଯତ୍ନଶୀଳ ହେବେ ବୋଲି ମୋର ଆଶା । ମୁଁ ପୂର୍ବରୁ କହିଛି ଯେ, କବିଭୂଷଣ ତାଙ୍କ ମହାକାବ୍ୟରେ ରାମଚନ୍ଦ୍ର ଓ ସୀତାଙ୍କ ଜନ୍ମ, ବିବାହ, ଅଯୋଧ୍ୟା-ପୁରୀ ବର୍ଣ୍ଣନା, ରାବଣବଧ ଓ ଅଭିଷେକ ପର୍ଯ୍ୟନ୍ତ ବର୍ଣ୍ଣନା କରିଅଛନ୍ତି । ଭାଷା ଅତି ସରଳ ଓ ପ୍ରାଞ୍ଜଳ, ଚିତ୍ତବିନୋଦନୀ ହୋଇଛି । ଉପେନ୍ଦ୍ର ଭଞ୍ଜଙ୍କ ବୈଦେହୀଶବିଳାସରେ କ୍ଲିଷ୍ଟ ଭାଷା ସହ କ୍ଲିଷ୍ଟ କଳ୍ପନା ସ୍ଥାନେ ସ୍ଥାନେ ଥିବାର ପରିଦୃଷ୍ଟ ହୁଏ; ମାତ୍ର ଏ କାବ୍ୟରେ ତାହା ସେତେଦୂର ନାହିଁ ।

କବିଭୂଷଣ ପ୍ରଥମ ଛାନ୍ଦରେ କବିଗୁଣମାନ ବର୍ଣ୍ଣନା କରିଅଛନ୍ତି । ଏଥିରେ ତାଙ୍କର ଅଗାଧ ପାଣ୍ଡିତ୍ୟର ନିଦର୍ଶନ ମିଳେ । ସେ କହୁଛନ୍ତି—

"ଏବେ ଶୁଣ ଅନୁକ୍ରମେ କବିଗୁଣମାନ,
ସର୍ବଜ୍ଞ, ଦୈବଜ୍ଞ, ପୁଣ ସୁକୁଳ ପ୍ରଧାନ ।
ନିର୍ମଳ, ଚତୁର, ଶାନ୍ତ, ସୁଜ୍ଞ, ସୁଚିକର,
ସୁହୃଦ, ସଦୟ, ଶେଷ, ନୃତବାକ୍ୟ, ଧୀର ।
ସୁବିଦ୍ୟାନିପୁଣ, କାମକଳାକଉତୁକୀ,
କାବ୍ୟରସେ ଦକ୍ଷ, ଛାନ୍ଦ ଗୁଣେ ବିବେକୀ ।
କୋମଳ ବଚନ ପଦକୃତ ଶୋଭାକର,
ଏମନ୍ତ ଗୁଣ ବିହିତ ଅଟେ ଯେଉଁ ନର ।

କବି ବୋଲି ସେ ଜନଙ୍କୁ ବୋଲନ୍ତି ଜଗତେ
ଚଉ ଭୋଷ କରି ବର୍ଣ୍ଣି କରନ୍ତି ତୁରିତେ ।
ଯେ ବଚନ ଆଡମ୍ବରେ କବିତ୍ୱ ରଚଇ,
ସେହି କବିନାମ ଜାଣ ବାଚକ ବୋଲଇ ।
ସ୍ୱମାନ ପରସରୁଚି ସଂଗଠକ ଯେନ,
କବିତ୍ୱକୁ ପ୍ରସ୍ତରଇ ଚୌରିକ ନାମନ ।
ଅର୍ଥ ଗଉରବ ନୃତ ଅଟଇ ସାର୍ଥକ
ଚିତ୍ରକାବ୍ୟ ଅଭିଳାଷୀ ନାମ ଯେ ଶିଳ୍ପିକ ।
ଅପେକ୍ଷିତ ଅର୍ଥ ସୁବଚନ ସ୍ୱବମସ୍ତ,
କବିତ୍ୱ କରଇ ସେ ମାଦବ ନାମୋଦସ୍ତୁ ।
ଶବ୍ଦଅର୍ଥ ଶାସ୍ତ୍ର ଅଦୃଷ୍ଟତା କାବ୍ୟକର୍ତ୍ତା
ସେ କବି ବିବେକ ନାମେ ଖ୍ୟାତ ପ୍ରେମରତା ।
ଗୁଣଙ୍କେ ସମତ ଅଳଙ୍କାର ସୁରଚିତ,
କବିତ୍ୱ କୃତ ଭୂଷାର୍ଥୀ ନାମରେ ବିଦିତ ।

ଗୋପୀନାଥ କବିଭୂଷଣ ଲେଖକମାନଙ୍କୁ କବି, ବାଚକ, ଚୌରିକ, ମାର୍ଦ୍ଦବ, ବିବେକ ଓ ଭୂଷାର୍ଥୀ ରୂପେ ବିଭେଦ କରି ପ୍ରକୃତ କବିର ସୁନ୍ଦର ଲକ୍ଷଣ ଦେଖାଇଅଛନ୍ତି—

କବିତ୍ୱ ବିଧିରେ ବେନି ପ୍ରକାର ଅଟଇ,
ଲକ୍ଷଣାନୁକ୍ରମେ ଏବେ ତାହା କହୁଥାଇଁ ।
କବିତ୍ୱ ଗୃହକ୍ଷ୍ମୀ ନାସ୍ତିବର ସ୍ତନବତ,—
ଅତି ପ୍ରକାଶିତ ନୋହି ହେବ ରସସ୍ଥିତ ।
ଦକ୍ଷିଣ କାମିନୀକୁଚମଣ୍ଡଳ ପରାସ୍ୟେ,
ଅତ୍ୟନ୍ତ ନିଗୂଢ଼ ଭାବ ନୋହିବ ଉଦୟେ ।
ମଧୁର ବଚନ ମନୋହର ଅର୍ଥଯୁତ,
ମରହଟ୍ଟା ନାରୀ ସ୍ତନ ପ୍ରାୟେ ପ୍ରକାଶିତ ।
କବିତ୍ୱ ଅଙ୍ଗ ଶବ୍ଦାର୍ଥ ରସାଦି ଜୀବନ;
ଗୁଣ ସୌନ୍ଦର୍ଯ୍ୟାପଣ ରୀତି ଅବସ୍ଥିବ ସ୍ଥାନ ।
ଏରୂପେ କବିତ୍ୱ ରୂପ ହୁଅଇ ପ୍ରକାଶ,
ସଦା ଅନିତ୍ୟ ଅଟଇ କର୍ଣ୍ଣକଟୁ ଦୋଷ ।
ଯେଉଁଠାରେ ଧ୍ୱନି ଅର୍ଥ ପ୍ରକାଶ ହୋଇବ,
କର୍ଣ୍ଣକଟୁ ଦୋଷକୁ ଚିତ୍ତରେ ନ ଘେନିବ !

ଏହାପରେ କବି ଉପମା, ଉପମେୟ, ଲକ୍ଷଣ, ତଦ୍ବ୍ରୂପକ ଅଳଙ୍କାର ନିର୍ଦ୍ଦେଶ, ବିରୋଧାଭାସ, ଅନୁପ୍ରାସ, ଯମକ ଇତ୍ୟାଦିର ଲକ୍ଷଣ ଦେଇ ସଂଗୀତର ଉତ୍ପତ୍ତି ଓ ଲକ୍ଷଣ ସମ୍ବନ୍ଧରେ ନିଜର ମତ ପ୍ରକାଶ କରିଅଛନ୍ତି ।

ଏବେ ଏକମନେ ଜନେ ଶୁଣ ତୋଷ ହୋଇ,
ସଂଗୀତ ଲକ୍ଷଣ ମତ ପ୍ରକାଶ କରଇଁ ।
ପୂର୍ବେ ଧାତା ଚାରିବେଦୁଁ ସାର ଉଦ୍ଧାରିଲେ,
ସଂଗୀତ ନାମେ ପଞ୍ଚମ ବେଦ ନିର୍ମିଣିଲେ ।
ଋକ୍‌ବେଦରୁ ପାଠ୍ୟ ସାମବେଦରୁ ସଙ୍ଗୀତ;
ଯଜୁର୍ବେଦୁଁ ଅଭିନୟ ହୋଇଛି ସମ୍ଭୂତ ।
ଅଥର୍ବବେଦ ମଧ୍ୟୁଁ ଜାତ ହେଲା ରସ,
ଏମନ୍ତ ସଙ୍ଗୀତ ଭାବ ରଚିଲେ ଲୋକେଶ ।
ଗୀତ, ବାଦ୍ୟ, ନୃତ୍ୟ, ମିଶି ସଙ୍ଗୀତ ହୁଅଇ,
ମାର୍ଗ ଦେଶି ଭେଦେ ଦ୍ୱିପ୍ରକାର ହୁଅଇ ।
ସ୍ୱର୍ଗପୁରେ ମାର୍ଗଭୂଷିତ ତଳେ ଦେଶାଶ୍ରିତ,
ଏ ଭାବେ ସଙ୍ଗୀତକ୍ରମ ହୋଇଅଛି ସ୍ଥିତ ।
ନାଦ ଶ୍ରୁତି ସପ୍ତସ୍ୱର ମୂର୍ଚ୍ଛନା ଯେ ଗ୍ରାମ୍ୟ,
ଏମାନ କ୍ରମରେ ହୋଇଅଛନ୍ତି ଜନମ ।
ସପ୍ତସ୍ୱର ତିନିଗ୍ରାମ ମୂର୍ଚ୍ଛନା ଏକବିଂଶ,
ଶ୍ରୁତି ବାଇଶି ପ୍ରକାର ତାନ ଅଣଚାଶ ।
ଷଡଜ, ଋଷଭ, ଗାନ୍ଧାର, ମଧ୍ୟମ, ପଞ୍ଚମ,
ଧୈବତ, ନିଷାଦ—ସପ୍ତସ୍ୱର ଏହୁ କ୍ରମ ।
ବାଜିବ ଏ ସା, ରି, ଗା, ମା, ପା, ଧା, ନି କ୍ରମେଣ,
ଏହୁ ଗୋଟେ ଗୋଟେ ହୁଏ ସ୍ୱର ନିରୂପଣ ।
ନବ ପଞ୍ଚସ୍ୱର ମନ କରନ୍ତେ ରଞ୍ଜନ,
ତାହାକୁ ରାଗ ବୋଲନ୍ତି ସର୍ବ ମୁନିଜନ ।
ଷୋଳସହସ୍ର ରାଗ ଯେ ହୋଇଲେ ସଂଭୂତ
ଏଥିମଧ୍ୟେ ବୟାଳିଶ ରାଗ ପ୍ରକାଶିତ—,
ପୁରୁଷ ରାଗ ଅଟଇ ରାଗିଣୀ ଛତିଶ,
ଏମନ୍ତେ ଜଗତେ ରାଗ ହୋଇଲା ପ୍ରକାଶ ।
ବସନ୍ତ ରାଗ, ମାଳବ, ମଲ୍ହାର, ଶ୍ରୀରାଗ,
ହିନ୍ଦୋଳ, କର୍ଣ୍ଣାଟ ଏ ଅଟଇ ହଂସ ରାଗ,

ତୋଡ଼ି, ପଞ୍ଚମମଞ୍ଜରୀ, ବସନ୍ତ ଗୁର୍ଜରୀ,
ପଞ୍ଚମ, ଲଳିତ, ଯେ ମାଳଶ୍ରୀ, ରାମକେରୀ ।
ସିନ୍ଧୁଡ଼ା, ଧନାଶ୍ରୀ, ଭଇରବୀ, ଆଶାବରୀ,
ବେଲବଲ, ବରାଡ଼ି, ଗାନ୍ଧାରୀ, କୌମାରୀ (କଉମାରୀ)
ସୁଭଗା, ଗଉରୀ, ବେଲାଭଲ ଯେ କେଦାରୀ,
କନଡ଼ା, କୋଡ଼ା ପ୍ରବରା, ମାଧବୀ, ମୟୁରୀ ।
ମରହଟ୍ଟା, ବୈରାଡ଼ି, ଦୀପିକା, ଦେଶକାରୀ,
ପାହୁଡ଼ା, କାମୋଦୀ ଯେ କଲ୍ୟାଣୀ, ରାମକେରୀ ।
ଭୂପାଳ, ନାଟିକାପଡ଼ା—ଏମାନେ ରାଗିଣୀ
ଷଟ୍‌କ୍ରମେ ପୁରୁଷ ରାଗ ଏ ରମଣୀ—

କେଉଁ ସମୟରେ କେଉଁ ରାଗର ବ୍ୟବହାର କରଣୀୟ, ତାହାର ବ୍ୟାଖ୍ୟା ମଧ୍ୟ ସେ କରିଛନ୍ତି—

ଯେବଣ ରାଗ ଯେଉଁ ରାଗିଣୀ ଅଟଇ,
ସେ କ୍ରମରେ ରାଗ କଲେ ନିର୍ଦ୍ଦୋଷ ହୁଅଇ ।
ପ୍ରଥମ ପ୍ରହରେ ଗାନ ଲଳିତ ମହ୍ଲାର,
କାମୋଦୀ, ଗୁର୍ଜ୍ଜରୀ, ଭୂପାଳ, ବସନ୍ତର ।
ଦ୍ୱିତୀୟ ପ୍ରହରେ ରାମକେରୀ, ଆଶାବରୀ,
ମାଳୁଆ, ଭୈରବୀ, ତୋଡ଼ି, ପଞ୍ଚମମଞ୍ଜରୀ,
ଧନାଶ୍ରୀ, ବରାଡ଼ି, ନାରାୟଣୀ, କଉଶିକ,
ବେଲଭଲ, ଶଙ୍କରାଭରଣ ଯେ ଦେଶାକ୍ଷ ।
ତୃତୀୟ ପ୍ରହରେ କଲ୍ୟାଣୀ ଯେ ମୁଣ୍ଡକେରୀ,
ପୁରବୀ, ଦୀପକ, ଗଉଡ଼କା ଯେ ମୁଖାରୀ ।
ସାରଙ୍ଗ, ହିନ୍ଦୋଳ ପୁଣି ଆହାରୀ, ଗଉରୀ,
ତୃତୀୟ ପ୍ରହରେ ଏହି ରାଗଙ୍କୁ ବିସ୍ତାରି ।
ଚତୁର୍ଥ ପ୍ରହରେ କାଳୀ, ମାଳବ, କର୍ଣ୍ଣାଟ;
ଶ୍ରୀ ଚନ୍ଦ୍ରାଦେଶାକ୍ଷ, ଶ୍ରୀକେଦାର ପୁଣି ନଟ ।
ସର୍ବଦା ମଙ୍ଗଳ ରାଗ ଗାଇବ ସୁଜନ,
କେବଳ ଶରତକାଳେ ମାଳଶ୍ରୀ ଶୋଭନ ।
ଶ୍ରୀପଞ୍ଚମୀଠାରୁ ବିଷ୍ଣୁଶୟନ ପର୍ଯ୍ୟନ୍ତେ,
ବସନ୍ତ ରାଗ ଗାଇବ, ଭୈରବ ପ୍ରଭାତେ ।

ରାଗର ସମସ୍ତ ଲର୍ଦ୍ଧି ଗାନ କଲେ ଦୋଷ,
ନୃପତି ଆଜ୍ଞାରେ ନୃତ୍ୟଭୂତ ବେନି ଦୋଷ ।
ରାଗମାନଙ୍କର ବେଶ ଦେଶେ ଭିନ୍ନ ଭିନ୍ନ
ପଦ ବନ୍ଧୁ କରଣ ବର୍ତ୍ତିଲି ଉପକ୍ରମ ।

ତତ୍ପରେ କବିଭୂଷଣ ଗାୟକମାନଙ୍କର ଲକ୍ଷଣ ମଧ୍ୟ ଦେଇ ଅଛନ୍ତି—

"ଭୟାଳୁ ଅବ୍ୟକ୍ତ ପଦ ଶିର କ୍ୱଚଳିତ,
ସଂଦ୍ରଷ୍ଟ ରଦନ ବେନି ନେତ୍ର ନିମିଳିତ ।
କେତେବେଳେ ବକ୍ରଗଳ ସ୍ୱରାଳ୍ପ ବହୁଳ,
ନାନା ରାଗିଣୀ ଶ୍ରୀଅଙ୍ଗ କମ୍ପ ସଚଞ୍ଚଳ ।

× × ×

ବାଦ୍ୟ ଲକ୍ଷଣରେ କବି କହୁଅଛନ୍ତି—

ଏବେ ଶୁଣ ଚତୁର୍ବିଧ ବାଦ୍ୟ ଅନୁକ୍ରମ,
ତନ୍ତ୍ରି, ଶୁଷିର, ଆନଦ୍ଧ, ପୁଣ ଘନ ନାମ ।
ଦେବଙ୍କର ତନ୍ତ୍ରି ବାଦ୍ୟ ଗନ୍ଧର୍ବେ ଶୁଷିର,
ଅସୁରଙ୍କର ଆନଦ୍ଧ ଘନ ମାନବର ।
ବୀଣା ଆଦି ତନ୍ତ୍ର ବାଦ୍ୟ ନାମ ଯେ ହୁଅଇ,
ମୁରଜ ଆଦି ଯେ ବାଦ୍ୟ ଆନଦ୍ଧ ବୋଲାଇ ।
ବଂଶୀ ଆଦି ଶୁଷିର ନାମରେ ପ୍ରକାଶିତ,
କାଂଶ, ତାଳ ଆଦି ଘନ ନାମେଣ କଥିତ ।

ତାଲାଙ୍ଗ; ତାଲକାଳ, ତାଲମାନଙ୍କର ନାମ ଭେଦ ସମ୍ବନ୍ଧରେ କବି ନାନା ପ୍ରକାର ମତ ବ୍ୟକ୍ତ କରିଅଛନ୍ତି । ଖାଲି ତାଲ ନୁହେଁ, ପରନ୍ତୁ ନୃତ୍ୟର ଭେଦ ମଧ୍ୟ ସେ ଦେଖାଇଅଛନ୍ତି । ଏତଦ୍ଦ୍ୱାରା ତାଲ, ଲୟ, ବାଦ୍ୟ, ନୃତ୍ୟ, ସଙ୍ଗୀତ, କାବ୍ୟ, ଅଳଙ୍କାର, ରାଗ, ରାଗିଣୀ ସମ୍ବନ୍ଧରେ କବିଙ୍କ ପାଣ୍ଡିତ୍ୟର ନିଦର୍ଶନ କବିଙ୍କର ଅସାମାନ୍ୟ କବିତ୍ୱଶକ୍ତି କିପରି ଥିଲା, ତାହା ଗୋଟିଏ ମାତ୍ର ଉଦାହରଣରୁ ସୁସ୍ପଷ୍ଟ ହେବ । ଅଯୋଧ୍ୟା ବର୍ଣ୍ଣନାରେ ପ୍ରକାଶ କଲେ-

ରାଗ ଶ୍ରେଣି—ଶ୍ଳେଷାଲଂକାର ଓ ଅନୁପ୍ରାସ ଅଲଙ୍କାରର ସମାବେଶ—

"ଏଥୁଅନ୍ତେ ଶୁଣ ଜନେ ସାବଧାନେ ତୋଷ ମନେ
କୋଶଳଦେଶେ ଅଯୋଧ୍ୟା ନାମେ ନଗର,

ଭୁବ ଗଗନ ମଧ୍ୟର ଉଦୟେ ଅମୃତକର
ମନୋହର ତାରାଗଣ ସକଳପୁର
କି ସେ ସୁରଲୋକ ସମାନ
ଚନ୍ଦ୍ରରଥ ଗନ୍ଧବରେ ବିରାଜମାନ । ୧ ।
ମେଢ଼ ମଣ୍ଡପ ଜଗତୀ ଅଟ୍ଟାଳିକା ପନ୍ତପନ୍ତ
ସୁବର୍ଣ୍ଣ କୁମ୍ଭ ସୁକାନ୍ତ ପଡ଼େ ଗଗନ
କେଉଁ ମନ୍ଦିର ଶୋଭିତ ନିର୍ମିତ ମହାରଜତ
କାହିଁ ରଜତ ଘଟିତ ସଦନମାନ,
କେଉଁ ପୁର ରତ୍ନରେ କମ
କାହିଁ ଶୋଭା ଦିଶେ ନୀଳମଣି କୁଟ୍ଟିମ । ୨ । ଇତ୍ୟାଦି

କବି ଗୋମୂତ୍ର ବନ୍ଧ, କବାଟ ବନ୍ଧ, ନୌକାବନ୍ଧ, ଗୁଚ୍ଛବନ୍ଧ, ନୃତ୍ୟବନ୍ଧ ଓ ଅଭିନବ ବନ୍ଧାଦିରେ କାବ୍ୟଟିକୁ ମନୋଜ୍ଞ କରିଅଛନ୍ତି । ନାନା ପ୍ରକାର ରସର ସମାବେଶ ଦ୍ୱାରା କାବ୍ୟଟି ଅପୂର୍ବ ଶ୍ରୀମଣ୍ଡିତ ହୋଇଛି । ଏ କାବ୍ୟଟି ଲୋକଚକ୍ଷୁର ସମକ୍ଷକୁ ଆସିପାରିଲେ ଓଡ଼ିଆ ସାହିତ୍ୟର ଅଶେଷ କଲ୍ୟାଣ ସାଧିତ ହୁଅନ୍ତା ଓ ପ୍ରତିଭା ପୂଜାର ନିଦର୍ଶନ ପ୍ରଦର୍ଶନ କରିବାରେ ଜାତି କୃତକାର୍ଯ୍ୟ ହୁଅନ୍ତା ।

